VOL. L No. 7 UTKAL PRASANGA Regd. No. O—BN—05/90
Licence No. C.R.N.P. 5—Licensed to post without Pre-payment



ଭୁବନେଶ୍ୱରଠାରେ ଆୟୋଜିତ ସର୍ବଭାରତୀୟ ବାଚସ୍ପତି ସମ୍ମିଳନୀର ଉଦ୍‌ଘାଟନୀ ଉତ୍ସବରେ ଲୋକସଭା ବାଚସ୍ପତି ଶ୍ରୀ ଶିବରାଜ ପାଟିଲ ଉଦ୍‌ବୋଧନ ଦେଉଛନ୍ତି ।



ଭୁବନେଶ୍ୱରଠାରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଓ ବୀର ସୁରେନ୍ଦ୍ର ସାଏ ସ୍ମୃତି ସଂସଦ ଆନୁକୂଲ୍ୟରେ ବୀର ସୁରେନ୍ଦ୍ର ସାଏଙ୍କ ସ୍ମୃତି ଭବନରେ ଆୟୋଜିତ ରାଜ୍ୟସ୍ତରୀୟ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ, ବୀର ସୁରେନ୍ଦ୍ର ସାଏଙ୍କ ଫଟୋଚିତ୍ର ନିକଟରେ ପୁଷ୍ପାଞ୍ଜଳି ଅର୍ପଣ କରୁଛନ୍ତି ।

PRINTED AT ORISSA GOVERNMENT PRESS, CUTTACK-753010



ଭୁବନେଶ୍ୱରଠାରେ ଅନୁଷ୍ଠିତ ଆଦିବାସୀ ପ୍ରଦର୍ଶନୀରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ପ୍ରଦର୍ଶନୀ ମଣ୍ଡପମାନ ବୁଲି ଦେଖୁଛନ୍ତି ।



କେନ୍ଦୁପାଟଣାଠାରେ ନିର୍ମିତ କ୍ଷୁଦ୍ର ଜଳ ବିଦ୍ୟୁତ ପ୍ରକଳ୍ପକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍ଘାଟନ କରୁଛନ୍ତି ।

# ଉତ୍କଳ ପ୍ରସଙ୍ଗ

୫୦ ଭାଗ ୮ମ ସଂଖ୍ୟା ଫାଲ୍‌ଗୁନ ୧୯୧୫ ଶକାବ୍ଦ ମାର୍ଚ୍ଚ ୧୯୯୪

## ସମ୍ପାଦକ ମଣ୍ଡଳୀ

ମୁଖ୍ୟ ସମ୍ପାଦକ

**ଶ୍ରୀ ସତୀଶ ପାଢ଼ୀ**

ସହ ସମ୍ପାଦକ

ଡଃ ଶଶଧର ଦାସ

ସମ୍ପାଦନା ସହଯୋଗୀ

ଶ୍ରୀ ଶରତଚନ୍ଦ୍ର ସାମନ୍ତରାୟ

ପ୍ରଚ୍ଛଦପଟ୍ଟ

ବଳଦେବ ମହାରଥୀ

ମୁଦ୍ରଣ

ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦

ପ୍ରକାଶକ

**ଶ୍ରୀ ସୁରସେନ ଜେନା,** ନିର୍ଦ୍ଦେଶକ

ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା ସରକାର

ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦.୦୦

ପ୍ରତି ଖଣ୍ଡ : ଟ ୨.୦୦


*ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଯୋଜନା ଓ ଅନ୍ୟାନ୍ୟ ସରକାରୀ ତଥ୍ୟର ଭାଷିତ ବିବରଣୀ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ। ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ। ସେଭଳି ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୁଖପାତ ବୋଲି ଭାବିବା ଉଚିତ ନୁହେଁ।*

*"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ହେଁ ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ।*

# ସୂଚୀ



# ପ୍ରଗତିର ପଞ୍ଚମ ସୋପାନରେ ଓଡ଼ିଶା

ମାର୍ଚ୍ଚ ପାଞ୍ଚ ତାରିଖ । ଓଡ଼ିଶାବାସୀଙ୍କ ପାଇଁ ଏକ ସ୍ମରଣୀୟ ଦିବସ । ଠିକ୍ ଦୁଇ ବର୍ଷ ପୂର୍ବେ ୧୯୯୦ ମସିହା ମାର୍ଚ୍ଚ ପାଞ୍ଚ ତାରିଖରେ ଜନନେତା ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ବର୍ତ୍ତମାନର ଲୋକପ୍ରିୟ ସରକାର ଗଠନ ହୋଇଥିଲା । ଦେଖୁ ଦେଖୁ ଦୁଇ ବର୍ଷ ବିତିଗଲା, ଆମେ ଆଜି ପ୍ରଗତିର ପଞ୍ଚମ ସୋପାନରେ, ଓଡ଼ିଶା ଇତିହାସ ପାଇଁ ଏକ ନୂତନ ଅଧ୍ୟାୟ ।

ସ୍ୱାଧୀନତା ପରଠାରୁ ୧୯୯୦ ମସିହା ମଧ୍ୟରେ ଦୀର୍ଘ ୪୨ ବର୍ଷ ଭିତରେ ଓଡ଼ିଶାର ବିକାଶ ପାଇଁ ଯାହା ସବୁ ସମ୍ଭବ ହୋଇପାରି ନଥିଲା, ଏହି ଦୁଇ ବର୍ଷ ଭିତରେ ବିଜୁବାବୁଙ୍କ ଗତିଶୀଳ ନେତୃତ୍ୱ ଯୋଗୁଁ ସେ ସବୁ ସମ୍ଭବ ହୋଇପାରିଛି । ଭାରତର ଦରିଦ୍ରତମ ରାଜ୍ୟ ଭାବେ ପରିଚିତ ଓଡ଼ିଶାର ଶାସନ ଭାର ଗ୍ରହଣ କରି ଜନସାଧାରଣଙ୍କୁ ଘନ ଅନ୍ଧକାର ଭିତରୁ ଆଲୋକ ଆଲୋକ ଦିଗ୍‌ଦର୍ଶନ କରିବା କିଛି କମ୍ ଗୌରବ କଥା ନୁହେଁ ।

ଅବିସ୍ମରଣୀୟ ଏହି ଦୁଇ ବର୍ଷର ଗୌରବୋଜ୍ଜ୍ୱଳ ଇତିହାସକୁ ଐତିହାସିକମାନେ ସେମାନଙ୍କର ଲେଖନୀ ମୁନରେ ସ୍ଥାନ ଦେବାକୁ ଗଲେ ସେହି ଦୁଇ ବର୍ଷ ଅର୍ଥାତ୍ ୭,୩୨ ଦିନରେ ସାଫଲ୍ୟ ବର୍ଣ୍ଣନା ପାଇଁ ତାହା ଅନ୍ୟୂନ ୭,୩୨ ପୃଷ୍ଠାର ଏକ ଗ୍ରନ୍ଥରେ ପରିଣତ ହେବ । ତଥାପି ଆଜିର ଏହି ପବିତ୍ର ସ୍ମରଣୀୟ ଦିବସରେ ସେ ସବୁକୁ ସ୍ମରଣ କରିବା ବିଶେଷ, ସମୀକ୍ଷା କରିବା ଆବଶ୍ୟକ ।

ସର୍ବନିମ୍ନ ମଜୁରି ପଚିଶି ଟଙ୍କାକୁ ବୃଦ୍ଧି କରି ଯେଉଁ ଐତିହାସିକ ପଦକ୍ଷେପ ନେଲେ, ତାହା ସମଗ୍ର ଭାରତବାସୀଙ୍କ ଆଖି ଖୋଲି ଦେଇଛି । ଲୋକ ବିଦେଶରେ ପେଟିପୂରିଲା ଭଳି ରୁଟି ରୋଜି ପାଇଁ ଅନ୍ୟ ରାଜ୍ୟକୁ ଦୌଡ଼ିବାର ଆବଶ୍ୟକତା ଆଉ ନାହିଁ । ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରଚଳନ କରିବା ଫଳରେ କ୍ଷମତାର ବିକେନ୍ଦ୍ରୀକରଣ ହୋଇପାରିଛି । ଗ୍ରାମର ବିକାଶ ପାଇଁ ଗ୍ରାମାଞ୍ଚଳକୁ ସହର ରାଜଧାନୀକୁ ଦୌଡ଼ିବାର ଆବଶ୍ୟକତା ଆଉ ନାହିଁ । ଗ୍ରାମର ବିକାଶ ପାଇଁ ଗ୍ରାମର ସରପଞ୍ଚଙ୍କ ହାତରେ ପ୍ରଚୁର କ୍ଷମତା ଅର୍ପଣ କରାଯାଇଛି । ସେହିଭଳି ସହରାଞ୍ଚଳର ବିକାଶ ପାଇଁ ସହରର ନଗରପାଳଙ୍କ ହାତରେ କ୍ଷମତା ନ୍ୟସ୍ତ କରାଯାଇଛି ।

ସ୍ୱାଧୀନତା ପରଠାରୁ ଅବହେଳିତ ହୋଇ ପଡ଼ି ରହିଥିବା ଗ୍ରାମାଞ୍ଚଳର ବିକାଶ ପାଇଁ ନୂତନ ଭାବେ ଗ୍ରାମ୍ୟ ଉନ୍ନୟନ ବିଭାଗ ସୃଷ୍ଟି କରାଯାଇଥିବାରୁ ଆଜି ପ୍ରତ୍ୟେକ ଗାଁକୁ ରାସ୍ତା ନିର୍ମାଣ ହୋଇପାରିଛି । ପ୍ରତ୍ୟେକ ଗାଁକୁ ପିଇବା ପାଣିର ବ୍ୟବସ୍ଥା ଯୋଗାଇ ଦିଆଯାଇ ପାରିଛି । ହରିଜନ ଓ ଆଦିବାସୀମାନଙ୍କ ବିକାଶ ନିମନ୍ତେ ସ୍ୱତନ୍ତ୍ର ବିଭାଗ ସୃଷ୍ଟି କରି ସେମାନଙ୍କୁ ଗୁରୁତ୍ୱ ଦିଆଯାଇଛି । ନୂତନ ଜିଲ୍ଲାମାନ ଗଠନ ହେବା ଫଳରେ ପ୍ରଶାସନିକ ବ୍ୟବସ୍ଥାର ବିକେନ୍ଦ୍ରୀକରଣ କରିବା ସହିତ ନ୍ୟାୟ ଏବଂ ପ୍ରଶାସନକୁ ଜନସାଧାରଣଙ୍କ ଦ୍ୱାରଦେଶରେ ପହଞ୍ଚାଇ ଦିଆଯାଇ ପାରିଛି ।

ଏ ସମସ୍ତ ଉଲ୍ଲେଖନୀୟ ସାଫଲ୍ୟ ସହିତ ମହିଳାମାନଙ୍କ ପାଇଁ ସବୁ କ୍ଷେତ୍ରରେ ସ୍ଥାନ ସଂରକ୍ଷଣ ତଥା "ମହିଳା ବିକାଶ ନିଗମ" ଓ ମହିଳା ବ୍ୟାଙ୍କ ପ୍ରତିଷ୍ଠା କରିବା ଫଳରେ ଲୋକଲୋଚନ ଘର ମଧ୍ୟରେ ଆବଦ୍ଧ ଥିବା ନାରୀ ଆଜି ବିଭିନ୍ନ କ୍ଷମତାର ଅଧିକାରିଣୀ ହେବାର ସୌଭାଗ୍ୟ ଅର୍ଜନ କରିପାରିଛନ୍ତି । ସଂକ୍ଷେପରେ କହିବାକୁ ଗଲେ ମହିଳାମାନଙ୍କ ପାଇଁ ଏହା ଏକ ସୁବର୍ଣ୍ଣ ଯୁଗ ।

କେବଳ ସେତିକି ନୁହେଁ, ସାହିତ୍ୟ-ସଂସ୍କୃତି ସମାରୋହ ମାଧ୍ୟମରେ ଓଡ଼ିଆ ଭାଷାର ମହତ୍ତ୍ୱକୁ ବିଶ୍ୱ ଦରବାରରେ ଉପସ୍ଥାପନ କରି ପ୍ରତ୍ୟେକଙ୍କ ହୃଦୟରେ ମାତୃଭାଷାର ମମତା ଜାଗ୍ରତ କରିବା ସହିତ ଐତିହାସିକ ଗୋପବନ୍ଧୁଙ୍କ ସ୍ୱପ୍ନକୁ ସାକାର କରିପାରିଛନ୍ତି ।

ଓଡ଼ିଶାର ଗୌରବମୟ ସଂସ୍କୃତି ଓ ପରମ୍ପରାର ପୁନରୁଦ୍ଧାର କାର୍ଯ୍ୟ ଆଜି ବିଜୁବାବୁଙ୍କ ଯୋଗୁଁ ସମ୍ଭବ ହୋଇପାରିଛି । ଓଡ଼ିଆ ଜାତିର ଗୌରବର ନିଦର୍ଶନ "ପାଇକ ବାହିନୀ"ର ପୁନରୁଦ୍ଧାର ହୋଇପାରିଛି । ବୋଇତ ବାଣିଜ୍ୟ ପରମ୍ପରାକୁ ପୁନରୁଦ୍ଧାର କରି ପାରାଦ୍ୱୀପରୁ ବାଲିଦ୍ୱୀପ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିବା ବୋଇତ ଯାତ୍ରା ଫଳରେ ସମଗ୍ର ଭାରତବର୍ଷରେ ତଥା ଭାରତ ବାହାରେ ଓଡ଼ିଶାର ଗୌରବକୁ ପୁନଃ ପ୍ରତିଷ୍ଠିତ କରିପାରିଛନ୍ତି ।

ପରନ୍ତୁ କେବଳ ଏହି ଦୁଇ ବର୍ଷର ଗୌରବମୟ ଇତିହାସ ଭିତରେ ଆଉ ଏକ ଉଲ୍ଲେଖନୀୟ ଘଟଣା ଯେଉଁ ଉପସ୍ଥାପନ କରିବା କିଛି ଅପ୍ରାସଙ୍ଗିକ ହେବ ନାହିଁ । ପୁରୀ ଶ୍ରୀମନ୍ଦିର ହେଉଛି ଓଡ଼ିଶାର ସର୍ବଶ୍ରେଷ୍ଠ ଗର୍ବ ଓ ଗୌରବ । ସେହି ଶ୍ରୀମନ୍ଦିରର ଶୀର୍ଷଦେଶରୁ ଏକ ବିରାଟ ପଥରଖଣ୍ଡ ଖସି ପଡ଼ିଥିଲା । ଯାହାକି ପ୍ରତ୍ୟେକଙ୍କ ମନରେ ଆତଙ୍କ ସୃଷ୍ଟି କରିଥିଲା । ଶ୍ରୀଜଗନ୍ନାଥଙ୍କ ମନ୍ଦିର ଭୁଶୁଡ଼ି ପଡ଼ିବ ବୋଲି ସମସ୍ତେ ଭୟଭୀତ ହୋଇ ପଡ଼ିଥିଲେ । କିନ୍ତୁ ବିଜୁବାବୁଙ୍କ ପ୍ରତି ଶ୍ରୀଜଗନ୍ନାଥଙ୍କ ଅପାର କରୁଣା । ଶ୍ରୀଜଗନ୍ନାଥଙ୍କ କରୁଣା ବଳରେ ବିଜୁବାବୁ ସେହି ଦୁରୂହ କାର୍ଯ୍ୟକୁ ମଧ୍ୟ ସାଧନ କରିବାରେ ସକ୍ଷମ ହୋଇ ପାରିଲେ । ଅଳ୍ପ ସମୟ ଭିତରେ ମରାମତି କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ପାରିଲା ।

ସେହି ଶ୍ରୀଜଗନ୍ନାଥଙ୍କ କରୁଣାରେ ଆଗାମୀ ଦିନମାନଙ୍କରେ ଓଡ଼ିଆ ଇତିହାସରେ ଏହିଭଳି ଗୌରବୋଜ୍ଜ୍ୱଳ ପୃଷ୍ଠା ସୃଷ୍ଟି ହେଉ । ଏହି ସ୍ମରଣୀୟ ଦିବସରେ ଆମେ ସେ ସବୁ ଗୌରବୋଜ୍ଜ୍ୱଳ ପୃଷ୍ଠା ଲୋଡ଼ାଇବା କରି ନିଜକୁ ଧନ୍ୟ ମନେ କରିବୁ । ସେତିକି ହିଁ ଏହି ସ୍ମରଣୀୟ ଦିବସରେ ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା ।

(ସ୍ୱାକ୍ଷର)



ଭାରତରେ ଅଦ୍ୱିତୀୟ ୭୫ ଫୁଟ ଉଚ୍ଚ ବୀର ହନୁମାନ ମୂର୍ତ୍ତିକୁ ମୁଖ୍ୟମନ୍ତ୍ରୀ
ଶ୍ରୀ ବିଜୁ ପଟ୍ଟନାୟକ ରାଉରକେଲାଠାରେ
ତା ୨୩-୨-୧୯୯୪ ରିଖରେ ଉନ୍ମୋଚନ କରୁଛନ୍ତି ।

# ଓଡ଼ିଶା ବିଧାନ ସଭା ଅଧିବେଶନରେ
## ରାଜ୍ୟପାଳ
# ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀଙ୍କ
## ଅ ଭି ଭା ଷ ଣ



ବାଚସ୍ପତି ମହୋଦୟ ଓ ମାନ୍ୟବର ସଦସ୍ୟବୃନ୍ଦ,

ମୁଁ ଆଜିର ଏହି ମହନୀୟ ସଭା ଗୃହକୁ ସମ୍ବୋଧିତ କରିବା ସଙ୍ଗେ ସଙ୍ଗେ ବିଧାନ ସଭାର ୧୪ତମ ଅଧିବେଶନରେ ମାନ୍ୟବର ସଦସ୍ୟମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରିବାର ସୁଯୋଗ ପାଇଥିବାରୁ ବିଶେଷ ଆନନ୍ଦିତ । ଏହି ଅବସରରେ ଆପଣ ସମସ୍ତଙ୍କୁ ନବ ବର୍ଷ ନିମନ୍ତେ ମୋର ଅଭିନନ୍ଦନ ତଥା ଶୁଭେଚ୍ଛା ଜଣାଉଛି । ମୋ ସରକାରଙ୍କର ବଳିଷ୍ଠ ତଥା ପ୍ରଗତିଶୀଳ ନେତୃତ୍ୱରେ ୧୯୯୫ ମସିହା ଆର୍ଥିକ ବର୍ଷଟି ଓଡ଼ିଶାର ଜନସାଧାରଣଙ୍କ ନିମନ୍ତେ ସର୍ବାଙ୍ଗୀନ ସମୃଦ୍ଧି ଓ ପ୍ରଗତିର ବର୍ଷ ହେବ ବୋଲି ମୁଁ ବିଶେଷ ଆଶାୟୀ ।

୨। ସଭା କାର୍ଯ୍ୟର ପ୍ରାରମ୍ଭରେ ସର୍ବଶ୍ରୀ ପଦ୍ମଚରଣ ସାମନ୍ତ ସିଂହାର, ଗତିକୃଷ୍ଣ ସ୍ୱାଇଁ, ବସନ୍ତ ବେହେରା, ଭାଗେ ଗୋବର୍ଦ୍ଧନ, ନଗେନ୍ଦ୍ର ନାଥ ଚୌଧୁରୀ, ଶାନ୍ତନୁ କୁମାର ଦାସ, ମଦନ ମୋହନ ପ୍ରଧାନ ଓ ରାମ ଚନ୍ଦ୍ର ରାମ ପ୍ରମୁଖ ସଭା ଗୃହର ପୂର୍ବତନ ସଦସ୍ୟ ତଥା ଓଡ଼ିଶାର ପୂର୍ବତନ ରାଜ୍ୟପାଳ ସୟଦ ନୁରୁଲ୍ ହାସାନଙ୍କ ବିୟୋଗରେ ଶୋକ ପ୍ରକାଶ କରିବା ଲାଗି ମୁଁ ମାନ୍ୟବର ସଦସ୍ୟମାନଙ୍କୁ ଅନୁରୋଧ କରୁଅଛି । ତାଙ୍କର ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ସମବେଦନା ଜଣାଇବା ସଙ୍ଗେ ସଙ୍ଗେ ଓଡ଼ିଶାର ଜନସାଧାରଣଙ୍କୁ ସେମାନଙ୍କର ନିସ୍ୱାର୍ଥପର ସେବା, ଉତ୍ସର୍ଗୀକୃତ ମନୋଭାବ ଓ ଏହି ମହନୀୟ ସଭା ଗୃହରେ ବିଭିନ୍ନ ସମସ୍ୟା ସମ୍ପର୍କରେ ସେମାନଙ୍କର ସୁବିସ୍ତୃତ ଆଳାପ ଆଲୋଚନା ଯୋଗୁଁ ଏହି ସଭା ଗୃହ ସେମାନଙ୍କୁ ଏବୁଦିନ ପାଇଁ ସ୍ମରଣ କରୁଥିବ ।

୩। ଓଡ଼ିଶାର ରାଜ୍ୟପାଳ ଭାବେ ଦାୟିତ୍ୱ ଗ୍ରହଣ କରିବା ପରେ ଏହି, ମହନୀୟ ସଭା ଗୃହର ସଦସ୍ୟମାନଙ୍କୁ ପ୍ରଥମ ଥର ସମ୍ବୋଧନ କରୁଅଛି । ଏହି ମହନୀୟ ସଭା ଗୃହଟି ୧୯୯୫ ମସିହାରେ ପ୍ରଥମ ଥର ପାଇଁ ବସୁଥିବାରୁ ମୁଁ ପ୍ରଥମେ ଚଳିତ ଆର୍ଥିକ ବର୍ଷ ମଧ୍ୟରେ ମୋ ସରକାରଙ୍କର ସଫଳତା ସମ୍ପର୍କରେ ଏକ ବିବରଣୀ ମାନ୍ୟବର ସଦସ୍ୟମାନଙ୍କ ସମ୍ମୁଖରେ ଉପସ୍ଥାପନ କରିବା ସଙ୍ଗେ ସଙ୍ଗେ ୧୯୯୫ ମସିହା ଆର୍ଥିକ ବର୍ଷ ନିମନ୍ତେ ଯେଉଁ ସବୁ କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେବାକୁ ପ୍ରସ୍ତାବ ରହିଛି ତା'ର ଏକ ସଂକ୍ଷିପ୍ତ ବିବରଣୀ ପ୍ରଦାନ କରୁଛି । ଏହି ପରିପ୍ରେକ୍ଷୀରେ ମୋ ସରକାର ରାଜ୍ୟରେ ଛୋଟ ବଡ ଜିଲ୍ଲାମାନ ଗଠନ କରି ଜିଲ୍ଲା ପୁନର୍ଗଠନ କ୍ଷେତ୍ରରେ ଯେଉଁଳି ପ୍ରଶାସନିକ ସଫଳତା ହାସଲ କରିପାରିଛନ୍ତି, ସେଥିଯୋଗୁଁ ମୁଁ ଧନ୍ୟବାଦ ଦେଉଅଛି । ଅବିଭକ୍ତ ୧୩ଟି ଜିଲ୍ଲାକୁ ୩୦ଟି ଜିଲ୍ଲାରେ ପରିଣତ କରାଯିବା ଫଳରେ ପ୍ରଶାସନିକ ବ୍ୟବସ୍ଥାକୁ ଜନସାଧାରଣଙ୍କ ନିକଟତମ କରାଯାଇ ପାରିଛି ଓ ଜନସାଧାରଣଙ୍କ ବହୁ ଦିନର ଆଶା ଆକାଂକ୍ଷା ପୂରଣ ହୋଇ ପାରିଛି । ୧୯୯୩ ମସିହା ଓଡ଼ିଶା ଇତିହାସରେ ଏକ ଅବିସ୍ମରଣୀୟ ବର୍ଷ ହୋଇ ରହିବ ।

୪। କେନ୍ଦ୍ର ତଥା ରାଜ୍ୟ ସ୍ତରରେ ବ୍ୟାପକ ସମ୍ବଳର ଅଭାବ ପରିଦୃଷ୍ଟ ହେଉଥିବା ବେଳେ ମୋ ସରକାର ୧୯୯୫-୯୬ ମସିହା ବାର୍ଷିକ ଯୋଜନା ଲାଗି ବିପୁଳ ସମ୍ବଳ ସଂଗ୍ରହ କରିପାରିଥିବା ଯୋଗୁଁ ମୁଁ ବିଶେଷ ଖୁସି । ଚଳିତ ଆର୍ଥିକ ବର୍ଷ ନିମନ୍ତେ ୧,୪୫୦ କୋଟି ଟଙ୍କା ବ୍ୟୟ ବରାଦ ରଖାଯାଇଥିବା ସ୍ଥଳେ ୧୯୯୫-୯୬ ପାଇଁ ୧,୯୫୦ କୋଟି ଟଙ୍କା ଅନୁମୋଦନ ହୋଇଛି । ୧୯୯୫-୯୬ ମସିହା ଲାଗି କୃଷି ଓ ଗ୍ରାମ୍ୟ ଉନ୍ନୟନ, କର୍ମ ନିଯୁକ୍ତି ସୃଷ୍ଟି, ସ୍ୱାସ୍ଥ୍ୟ ସେବା, ସାକ୍ଷରତା, ଗ୍ରାମ୍ୟ ପାନୀୟ ଜଳଯୋଗାଣ ବ୍ୟବସ୍ଥା ଓ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ଭଳି ସର୍ବନିମ୍ନ ଚାହିଦା ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି । ସମାଜର ଜନସାଧାରଣଙ୍କ ଜୀବନଧାରଣର ଗୁଣାତ୍ମକ ମାନର ଅଭିବୃଦ୍ଧି ଲାଗି ବିଂଶସୂତ୍ରୀ କାର୍ଯ୍ୟକ୍ରମର ଗୁରୁତ୍ୱ ଅବ୍ୟାହତ ରହିବ । ଜନସଂଖ୍ୟା ବୃଦ୍ଧି ଯୋଗୁଁ ଜନସାଧାରଣଙ୍କର ଜୀବନ ଧାରଣର ମାନ ବିକାଶ ପାଇଁ ବହୁ ଅନ୍ତରାୟ ସୃଷ୍ଟି ହେବାର ପରିଲକ୍ଷିତ ହେଉଛି । ମାତ୍ର ମୋ ସରକାର ଜନସଂଖ୍ୟା ବୃଦ୍ଧି ନିୟନ୍ତ୍ରଣ କ୍ଷେତ୍ରରେ ଯେଉଁଳି ସାହସିକ ତଥା ପ୍ରଗତିଶୀଳ ପଦକ୍ଷେପମାନ ଗ୍ରହଣ କରି ଯେଉଁ ଉଲ୍ଲେଖନୀୟ ସଫଳତା ହାସଲ କରିପାରିଛନ୍ତି ସେଥି ନିମନ୍ତେ ବିଶେଷ ପ୍ରଶଂସାର ପାତ୍ର ହୋଇ ପାରିଛନ୍ତି । ଏ କ୍ଷେତ୍ରରେ ମୋ ସରକାର ଯେଉଁ ବଳିଷ୍ଠ ପଦକ୍ଷେପମାନ ଗ୍ରହଣ କରିଛନ୍ତି ସେଗୁଡ଼ିକ ହେଲା :

* ପରିବାର ନିୟୋଜନ କାର୍ଯ୍ୟକ୍ରମରେ ଗ୍ରାମ ପଞ୍ଚାୟତ ତଥା ପଞ୍ଚାୟତ ସମିତିଗୁଡ଼ିକୁ ସକ୍ରିୟ ଭାବେ ସଂଶ୍ଳିଷ୍ଟ କରିବା ।
* ଗ୍ରାମ ପଞ୍ଚାୟତ, ପଞ୍ଚାୟତ ସମିତି, ମ୍ୟୁନିସିପାଲିଟି ତଥା ସମବାୟ ସମିତିର ଯେଉଁ ସଦସ୍ୟମାନଙ୍କର ଦୁଇରୁ ଅଧିକ ସନ୍ତାନସନ୍ତତି ଥିବେ ସେମାନଙ୍କର ସଦସ୍ୟ ପଦ ରଦ୍ଦ କରିବା ।
* ଯେଉଁମାନଙ୍କର ଦୁଇଟି ସନ୍ତାନସନ୍ତତି ଥିବେ ସେମାନଙ୍କୁ ସରକାରୀ ଚାକିରିରେ ନିଯୁକ୍ତି ଦେବା ଓ ପଦୋନ୍ନତି ଦେବା ।

* ଯେଉଁ ଜନସାଧାରଣ ସବୁଜ ପତ୍ରିକାଧାରୀ ହୋଇଥିବେ ସେମାନଙ୍କୁ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ପରିକଳ୍ପନାର ଶତକଡା ୨୫ ଭାଗ ହିତାଧିକାରୀଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ କରାଯିବ ।
* ଯେଉଁ ବ୍ୟକ୍ତିମାନଙ୍କର ଦୁଇଟି ସନ୍ତାନସନ୍ତତି ଥିବେ ସେମାନଙ୍କୁ ବାଣିଜ୍ୟ ପ୍ରତିଷ୍ଠାନ ଲାଗି ଅଗ୍ରାଧିକାର ଭିତ୍ତିରେ ଲାଇସେନ୍ସ ପ୍ରଦାନ କରାଯିବ ।
* ଯେଉଁମାନଙ୍କର ଦୁଇରୁ ଅଧିକ ସନ୍ତାନସନ୍ତତି ଥିବେ ସେମାନଙ୍କ ପିଲାମାନଙ୍କୁ ମାଗଣା ପାଠ୍ୟପୁସ୍ତକ ଓ ଛାତ୍ରବୃତ୍ତି ଦିଆଯିବ ନାହିଁ ।
* ପରିବାର ନିୟୋଜନ ପ୍ରକ୍ରିୟାରେ ସମସ୍ତ ସରକାରୀ ବିଭାଗ, ନିମ୍ନସ୍ତରୀୟ କାର୍ଯ୍ୟାଳୟ ସମୂହ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକୁ ସଂପୃକ୍ତ କରିବା ।

୫.୧ । ମାନ୍ୟବର ସଦସ୍ୟମାନେ ଅବଗତ ଥିବେ ଯେ ମୋ ସରକାର ଯୋଜନା ପ୍ରକ୍ରିୟାକୁ ବିକେନ୍ଦ୍ରୀକରଣ କରିବା ଲାଗି ବହୁ ପଦକ୍ଷେପ ଗ୍ରହଣ କରିଛନ୍ତି ଓ ଏହା ଫଳରେ ପ୍ରଶାସନର ନିମ୍ନ ସ୍ତରରେ ବିଶେଷ ସୁଫଳ ମିଳିବା ସଙ୍ଗେ ସଙ୍ଗେ ଜନସାଧାରଣ ଓ ସେମାନଙ୍କ ପ୍ରତିନିଧିମାନଙ୍କୁ ଉକ୍ତ ପ୍ରକ୍ରିୟାରେ ସଂଶ୍ଳିଷ୍ଟ କରାଯାଇ ପାରିବ । ପ୍ରତ୍ୟେକ ଜିଲ୍ଲାରେ ଜିଲ୍ଲା ଯୋଜନା ଓ ଉନ୍ନୟନ ବୋର୍ଡମାନ ଗଠନ କରାଯାଇଛି ଏବଂ ଏଥିରେ ଜଣେ ମନ୍ତ୍ରୀଙ୍କୁ ଅଧ୍ୟକ୍ଷ ପଦରେ ଦାୟିତ୍ୱ ଆରୋପ କରାଯାଇଛି । ଏହା ଛଡ଼ା ସଂପୃକ୍ତ ପାର୍ଲାମେଣ୍ଟ ସଦସ୍ୟ ଓ ବିଧାନ ସଭା ସଦସ୍ୟ, ପଞ୍ଚାୟତ ସମିତିର ଅଧ୍ୟକ୍ଷ ଓ ସ୍ଥାନୀୟ ପୌର ସଂସ୍ଥାର ଅଧ୍ୟକ୍ଷମାନଙ୍କୁ ସଦସ୍ୟ ଭାବେ ଗ୍ରହଣ କରାଯାଇଛି । ରାଜ୍ୟର ସାମାଜିକ ପରିବର୍ତ୍ତନ, ଅର୍ଥନୈତିକ ଉନ୍ନୟନ ଓ ପ୍ରଶାସନିକ କ୍ଷେତ୍ରରେ ମହିଳାମାନଙ୍କୁ ସଂଶ୍ଳିଷ୍ଟ କରାଯାଇ ସେମାନଙ୍କୁ ଯେଉଁ ମାନ୍ୟତା ପ୍ରଦାନ କରାଯାଇଛି, ତାହା ମୋ ସରକାରଙ୍କର ଏକ ଉଲ୍ଲେଖନୀୟ ସଫଳତା କହିଲେ ଅତ୍ୟୁକ୍ତି ହେବ ନାହିଁ । ମାନ୍ୟବର ସଦସ୍ୟମାନେ ଅବଗତ ଥିବେ ଯେ, ୨୮,୦୬୮ ଜଣ ମହିଳା, ପଞ୍ଚାୟତ ରାଜ ପ୍ରତିଷ୍ଠାନମାନଙ୍କରେ ବିଭିନ୍ନ ପଦପଦବୀରେ ନିର୍ବାଚିତ ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ଅନେକ ପଞ୍ଚାୟତ ସମିତି ଓ ପଞ୍ଚାୟତଗୁଡ଼ିକର ଅଧ୍ୟକ୍ଷା ରୂପେ କାର୍ଯ୍ୟ କରୁଛନ୍ତି । ସେହିଭଳି ଅନେକ ନିର୍ବାଚିତ ମହିଳା ସଦସ୍ୟ ସରକାରଙ୍କର ପୌର ସଂସ୍ଥାଗୁଡ଼ିକରେ ଅଧ୍ୟକ୍ଷା ଓ ଉପାଧ୍ୟକ୍ଷା ଭାବେ କାର୍ଯ୍ୟ ତୁଲାଉଛନ୍ତି । ଏହା ବ୍ୟତୀତ ପଞ୍ଚାୟତି ରାଜ ଓ ସ୍ଥାନୀୟ ପୌର ସଂସ୍ଥାଗୁଡ଼ିକରେ ମହିଳାମାନଙ୍କ ପାଇଁ ଶତକଡ଼ା ୩୦ ଭାଗ ପଦବୀ ସଂରକ୍ଷିତ ରଖା ଯାଇଥିବା ବେଳେ ସରକାରୀ ଚାକିରିରେ ମହିଳାମାନଙ୍କ ପାଇଁ ଶତକଡ଼ା ୩୦ ଭାଗ ଖାଲିଥିବା ପଦବୀ ମଧ୍ୟ ସଂରକ୍ଷିତ ରଖା ଯାଇଛି । ରାଜ୍ୟ ମହିଳା କମିଶନ୍ ସକ୍ରିୟ ଭାବେ ତାଙ୍କର କାର୍ଯ୍ୟ ଆରମ୍ଭ କରି ପାରିଛନ୍ତି ଓ ଦୁଃସ୍ଥ ମହିଳାମାନଙ୍କର ସାମାଜିକ ତଥା ଅର୍ଥନୈତିକ ଅବସ୍ଥା ସୁଧାରିବା ଲାଗି ଉପଯୁକ୍ତ କର୍ତ୍ତୃପକ୍ଷଙ୍କୁ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ ପାଇଁ ସୁପାରିଶ କରିଛନ୍ତି । ଗ୍ରାମାଞ୍ଚଳ ତଥା ଆଦିବାସୀ ଅଞ୍ଚଳଗୁଡ଼ିକରେ ମହିଳାମାନେ ଯେଉଁ ସବୁ ସମସ୍ୟାଗୁଡ଼ିକର ସମ୍ମୁଖୀନ ହେଉଛନ୍ତି ସେସବୁ ସମ୍ପର୍କରେ ମୁଖ୍ୟମନ୍ତ୍ରୀଙ୍କୁ ଅବଗତ କରାଇବା ଲାଗି ଓ ସମସ୍ୟାଗୁଡ଼ିକୁ ସୁଧାରିବା ନିମନ୍ତେ ମୁଖ୍ୟମନ୍ତ୍ରୀଙ୍କୁ ପରାମର୍ଶ ଦେବା ଉଦ୍ଦେଶ୍ୟରେ ଆଦିବାସୀ ମହିଳାମାନଙ୍କୁ ନେଇ ଏକ ଉପଦେଷ୍ଟା କମିଟି ଗଠନ କରାଯାଇଛି । ରାଜ୍ୟ ସମାଜ ମଙ୍ଗଳ ବୋର୍ଡର ଭୂମିକା ତଥା କାର୍ଯ୍ୟ ଧାରାକୁ ବିଶେଷ ଭାବେ ସକ୍ରିୟ କରାଯାଇଛି । ଚାକିରି କରିଥିବା ମହିଳା ଓ ଚାକିରି ଅନ୍ୱେଷଣ କରୁଥିବା ମହିଳାମାନଙ୍କୁ ଉକ୍ତ ବୋର୍ଡ ବିଶେଷ ଭାବେ ସାହାଯ୍ୟ କରି ଆସୁଛି ।

କାରଖାନା ପରିଚାଳକ, ଶ୍ରମିକ ନେତା ଓ ଶ୍ରମ ଅଧିକାରୀମାନଙ୍କୁ ତାଲିମ ଦେବା ପାଇଁ ମୋ ସରକାର ପ୍ରଥମ ଥର ପାଇଁ ରାଜ୍ୟ ଶ୍ରମ ତାଲିମ ଅନୁଷ୍ଠାନ ପ୍ରତିଷ୍ଠା କରିଛନ୍ତି । ଏହି ଅନୁଷ୍ଠାନ ଦ୍ୱାରା ଶ୍ରମ ସମ୍ପର୍କିତ ଗବେଷଣା, ଶ୍ରମିକ ସମସ୍ୟା ଆଦି ବିଷୟରେ ପ୍ରକାଶନମାନ ବାହାର କରିବାର ପରିକଳ୍ପନା ରହିଛି ।

୫.୨ । ମୋ ସରକାର ସାମାଜିକ ତଥା ଶିକ୍ଷାଗତ ଅନଗ୍ରସର ଶ୍ରେଣୀର ଜନସାଧାରଣଙ୍କ ସମେତ ସମାଜର ଦୁର୍ବଳ ଶ୍ରେଣୀ ଲୋକମାନଙ୍କ ଉନ୍ନତିକଳ୍ପେ ସଂକଳ୍ପବଦ୍ଧ । ସାମାଜିକ ତଥା ଶିକ୍ଷାଗତ ସ୍ତରରେ ଅନଗ୍ରସର ଥିବା ୮୮୯ଟି ଶ୍ରେଣୀକୁ ଅନୁସୂଚିତ କରାଯାଇଛି ଓ ପରୀକ୍ଷା ନିରୀକ୍ଷା କରି କେଉଁମାନଙ୍କୁ ଏହି ଶ୍ରେଣୀଭୁକ୍ତ କରାଯିବ ଓ କେଉଁମାନଙ୍କୁ ଉକ୍ତ ଶ୍ରେଣୀରୁ ଅନ୍ତର କରାଯିବ ସେଥିପାଇଁ ସୁପାରିଶ କରିବା ପାଇଁ ଏକ କମିଶନ୍ ଗଠନ କରାଯାଇଛି । ସାମାଜିକ ତଥା ଶିକ୍ଷାଗତ ସ୍ତରରେ ଅନଗ୍ରସର ଥିବା ଏହି ଜନସାଧାରଣଙ୍କୁ ସରକାରୀ ଚାକିରି ଯୋଗାଇ ଦେବା ନିମନ୍ତେ ଶତକଡ଼ା ୨୭ ଭାଗ ପଦବୀ ସଂରକ୍ଷିତ କରାଯାଇଛି । ଅନ୍ୟାନ୍ୟ 'ଅନଗ୍ରସର ଶ୍ରେଣୀର ଜନସାଧାରଣ ଯେପରି ଆତ୍ମ ନିଯୁକ୍ତି ପାଇପାରିବେ ଓ ଆୟ ଉପାର୍ଜନ ପ୍ରକଳ୍ପର ପରିସରଭୁକ୍ତ ହୋଇପାରିବେ ସେଥିପାଇଁ ଅନ୍ୟ ଏକ ରାଜ୍ୟ — ଅନଗ୍ରସର ଶ୍ରେଣୀ ଉନ୍ନୟନ ନିଗମ ଗଠନ କରାଯିବା ଲାଗି ନିଷ୍ପତ୍ତି କରାଯାଇଛି ।

୫.୩ । ସଂଗଠିତ କ୍ଷେତ୍ରରେ ବେକାର ଯୁବକମାନଙ୍କୁ ନିଯୁକ୍ତି ଦେବା କ୍ଷେତ୍ରରେ ସୀମିତ ସମ୍ବଳ ତଥା ସାଧାରଣ ବେକାର ସମସ୍ୟାକୁ ବିଚାରକୁ ନେଇ ମୋ ସରକାର ଗ୍ରାମ ତଥା ସହରାଞ୍ଚଳଗୁଡ଼ିକରେ ଆତ୍ମ ନିଯୁକ୍ତି ସୁବିଧା ସୁଯୋଗ ସୃଷ୍ଟି କରିବା ଦିଗରେ ବିହିତ ପଦକ୍ଷେପମାନ ଗ୍ରହଣ କରିଛନ୍ତି । ବେକାର ଯୁବକମାନଙ୍କୁ ଆତ୍ମ ନିଯୁକ୍ତି ଦେବା ପାଇଁ ବିଭିନ୍ନ ଧରଣର ପରିକଳ୍ପନା ଓ କାର୍ଯ୍ୟକ୍ରମ ଚିହ୍ନଟ କରାଯାଇଛି । ଆତ୍ମ ନିଯୁକ୍ତି କାର୍ଯ୍ୟକ୍ରମଗୁଡ଼ିକୁ ତ୍ୱରାନ୍ୱିତ କରିବା ଲାଗି ରାଜ୍ୟ ତଥା ଜିଲ୍ଲା ସ୍ତରରେ ଦୁଇଟି କମିଟି ଗଠନ କରାଯାଇଛି । ବିଭିନ୍ନ ବିଭାଗର କାର୍ଯ୍ୟକଳାପରୁ ଯାହା ଜଣାପଡୁଛି ଅଷ୍ଟମ ପଞ୍ଚ–ବାର୍ଷିକ ଯୋଜନାର ଅବଶିଷ୍ଟ ସମୟ ସୀମା ମଧ୍ୟରେ ୬.୩୪ ଲକ୍ଷ ବେକାର ଯୁବକ ଯୁବତୀମାନଙ୍କୁ ଆତ୍ମ ନିଯୁକ୍ତି ଯୋଗାଇ ଦିଆଯାଇ ପାରିବ । ୧୯୯୨–୯୩ ମସିହା ମଧ୍ୟରେ ୯୭,୦୯୬ ବେକାର ଯୁବକ ଯୁବତୀମାନଙ୍କ ଲାଗି

ଆସ ନିଯୁକ୍ତି ସୁବିଧା ସୁଯୋଗ ସୃଷ୍ଟି କରାଯାଇଥିଲା । ୧୯୯୩-୯୪ ମସିହା ମଧ୍ୟରେ ଅର୍ଥାତ୍ ୧୯୯୩ ମସିହା ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ୩୬,୮୯୨ ଜଣ ବେକାର ଯୁବକ ଯୁବତୀମାନଙ୍କୁ ଆସ ନିଯୁକ୍ତି ଦିଆଯାଇଥିଲା ଓ ଚଳିତ ଆର୍ଥିକ ବର୍ଷ ମଧ୍ୟରେ ୧,୫୫,୬୭୩ ଜଣ ବେକାର ଯୁବକ ଯୁବତୀମାନଙ୍କୁ ଆସ ନିଯୁକ୍ତିର ସୁବିଧା ସୁଯୋଗ ଯୋଗାଇ ଦେବା ଲାଗି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

୪.୪ । ଚାଉଳ, ଗହମ, ଚିନି ଓ ପେଟ୍ରୋଲଜାତ ସାମଗ୍ରୀଗୁଡ଼ିକର ଦର ବୃଦ୍ଧି ହେବା ଫଳରେ ମୋ ସରକାର ବିଶେଷ ବିବ୍ରତ ଓ ଉଦ୍‌ବିଗ୍ନ ରହିଥିବା ବିଷୟ ମୁଁ ଏଠାରେ ଉଲ୍ଲେଖ କରିବାକୁ ଚାହେଁ । ଖାଦ୍ୟ ପଦାର୍ଥରେ ଶତକଡ଼ା ୨୦ ଭାଗ ଦର ବୃଦ୍ଧି ହେବା ଫଳରେ ସାଧାରଣ ବଣ୍ଟନ ବ୍ୟବସ୍ଥା ଉପରେ ନିର୍ଭର କରୁଥିବା ସବୁ ଶ୍ରେଣୀର ଖାଉଟୀମାନେ ବିଶେଷ ଭାବେ ସମ୍ମୁଖୀନ ହୋଇଛନ୍ତି । ଦିନ ମଜୁରିଆ ଓ ଭୂମିହୀନ କୃଷି ଶ୍ରମିକମାନଙ୍କ ଭଳି ଗରିବ ଜନସାଧାରଣ ଏଭଳି ଦର ବୃଦ୍ଧି ହେବା ଫଳରେ ବିଶେଷ ଅସୁବିଧାର ସମ୍ମୁଖୀନ ହେବେ । ମୋ ସରକାର ଭାରତ ସରକାରଙ୍କର ଏଭଳି ଦରଦାମ ନୀତିକୁ ବିଶେଷ ନିନ୍ଦା କରିଛନ୍ତି । କାରଣ ଏଭଳି ନୀତି ନିର୍ଦ୍ଧାରଣ ସମୟରେ ଉତ୍କଟ ଦାରିଦ୍ର୍ୟ ମଧ୍ୟରେ ବସବାସ କରୁଥିବା ଜନସାଧାରଣଙ୍କ ଉପରେ ଏହାର ପ୍ରଭାବ କିପରି ପଡ଼ିବ ଓ ଏହାର ପରିଣତି କ'ଣ ହେବ ସେ ସମ୍ପର୍କରେ ମୂଲ୍ୟାୟନ କରାଯାଇ ନଥିଲା । ସେହିପରି ଦେଶର ଅର୍ଥନୈତିକ ସଂସ୍କାର ଓ ଆନୁଷଙ୍ଗିକ ଢାଞ୍ଚାଗତ ବୁଝାମଣା କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ଫଳରେ ୨୦୦ ନିୟୁତ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଜନସାଧାରଣ ଉପକୃତ ହୋଇ ପାରିଛନ୍ତି । ଅବଶିଷ୍ଟ ଭାରତର ୬୦୦ ନିୟୁତ ଜନସାଧାରଣଙ୍କର ଚାହିଦା ଓ ଆବଶ୍ୟକତାକୁ ମେଣ୍ଟାଇବା ପାଇଁ ଉପସ୍ଥିତ ଦରଦାମ ପରିସ୍ଥିତି ସମ୍ପୂର୍ଣ୍ଣ ବିଫଳ ହୋଇଛି । ସେମାନଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର ଧରଣର ନୀତି ଓ କାର୍ଯ୍ୟକ୍ରମ ଉନ୍ନତି ବିଧାନ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକୁ କାର୍ଯ୍ୟକାରୀ କରିବା ଆବଶ୍ୟକ । ଏଥି ସଂକ୍ରାନ୍ତୀୟ ବିଷୟମାନ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ଯୁଗ୍ମ ଅଧିବେଶନରେ ବିଶଦଭାବେ ଆଲୋଚିତ ଓ ବିତର୍କିତ ହେବା ଲାଗି ମୋ ସରକାର ଦୃଢ଼ ମତ ପୋଷଣ କରିଛନ୍ତି ।

୪.୫ । ମାନ୍ୟବର ସଦସ୍ୟମାନେ ଜାଣି ଖୁସି ହେବେ ଯେ ମୋ ସରକାର ସଫଳତା ସହକାରେ ଶ୍ରୀଜଗନ୍ନାଥ ମନ୍ଦିରର ଗର୍ଭ ଗୃହର ମରାମତି କାର୍ଯ୍ୟ ସମ୍ପୂର୍ଣ୍ଣ କରି ପାରିଛନ୍ତି ଓ ଏଥିପାଇଁ ୧୪୦ ଲକ୍ଷ ଟଙ୍କା ବ୍ୟୟ କରାଯାଇଛି । ମନ୍ଦିର ଶୀର୍ଷ ଭାଗର ଅମଳକା ଓ ବାହ୍ୟ ଚଟାଣର ମରାମତି କାର୍ଯ୍ୟ ୧୯୯୪ ମସିହା ମଇ ମାସ ପ୍ରଥମ ସପ୍ତାହରେ ଶେଷ ହେବ ବୋଲି ଆଶା କରାଯାଏ ।

୫ । ଜନ ସେବାର ବିଭିନ୍ନ କ୍ଷେତ୍ରରେ ଚଳିତ ବର୍ଷ ମଧ୍ୟରେ ମୋ ସରକାର ବିଶେଷ ଉଲ୍ଲେଖନୀୟ ସଫଳତା ହାସଲ କରି ପାରିଛନ୍ତି । ୧୯୯୩ ମସିହା ଖରିଫ୍ ଋତୁରେ ୬୨.୨୦ ଲକ୍ଷ ଟନ୍ ଚାଉଳ ଉତ୍ପାଦନ କରାଯାଇ ପାରିଛି । ଏହାଛଡ଼ା ୪.୩ ଲକ୍ଷ ଟନ୍ ଡାଲି ଜାତୀୟ ଶସ୍ୟ, ୪.୮୯ ଲକ୍ଷ ଟନ୍ ଧାନ୍ୟାଦି ଶସ୍ୟ, ୩.୯୦ ଲକ୍ଷ ଟନ୍ ତୈଳବୀଜ (ତନ୍ମଧ୍ୟରୁ ୧.୮ ଲକ୍ଷ ଟନ୍ ଚିନାବାଦାମ) ଉତ୍ପାଦନ କରାଯାଇଛି । ୧୯୯୩-୯୪ ମସିହା ମଧ୍ୟରେ ୭୧ ଲକ୍ଷ ଟନ୍‌ର ଚାଉଳ, ଧାନ୍ୟାଦି ଶସ୍ୟ, ଡାଲି ଜାତୀୟ ଓ ତୈଳବୀଜ ଆମଦାନୀ କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଚଳିତ ବର୍ଷ ମଧ୍ୟରେ ୧୪.୨୫ ଲକ୍ଷ ଟନ୍ ଫଳ ଉତ୍ପାଦନ କରାଯାଇ ପାରିଛି । ଏହାଛଡ଼ା ପନିପରିବା ୩୦.୮୫ ଲକ୍ଷ ଟନ୍ ଓ ୨.୦୧ ଲକ୍ଷ ଟନ୍ ମରିଚ ଏବଂ ଯଥ ଆମଦାନୀ କରାଯାଇଛି । ୧୯୯୨-୯୩ ମସିହା ମଧ୍ୟରେ ୨୪,୨୯୦ ହେକ୍ଟର ଜମିରେ ଫଳ ଚାଷ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିବା ସ୍ଥଳେ ୪୦,୬୭୦ ହେକ୍ଟର ଜମିରେ ବିଭିନ୍ନ ଧରଣର ଫଳ ଚାଷ କରାଯାଇଥିଲା । ସମନ୍ୱିତ ଜଳ ବିଭାଜିକା ଉନ୍ନୟନ କାର୍ଯ୍ୟକ୍ରମ ଓ ବୃଷ୍ଟିପାତ ଅଞ୍ଚଳ ନିମନ୍ତେ ଜାତୀୟ ଜଳ ବିଭାଜିକା ଉନ୍ନୟନ କାର୍ଯ୍ୟକ୍ରମ ଅଧୀନରେ କାର୍ଯ୍ୟକାରୀ ହେଉଥିବା ମୃତ୍ତିକା ସଂରକ୍ଷଣ ପ୍ରକଳ୍ପଗୁଡ଼ିକରୁ ବିଶେଷ ସୁଫଳ ମିଳିପାରିଛି । ଏହାଛଡ଼ା କୋରାପୁଟ ଓ ମାଲ୍‌କାନଗିରି ଜିଲ୍ଲାଗୁଡ଼ିକରେ ଡାନିଡ଼ା ପ୍ରକଳ୍ପର ସହାୟତାକ୍ରମେ ଏକ ବ୍ୟାପକ ଜଳ ବିଭାଜିକା ଉନ୍ନୟନ କାର୍ଯ୍ୟକ୍ରମ ନାମକ ଏକ ନୂତନ କାର୍ଯ୍ୟକ୍ରମ ଚଳିତ ବର୍ଷ ସରକାର ହାତକୁ ନେଇଛନ୍ତି । ରାଜ୍ୟର ବିଭିନ୍ନ କୃଷି କାର୍ଯ୍ୟକ୍ରମ ନିମନ୍ତେ ୧୯୯୪-୯୫ ମସିହା ବାର୍ଷିକ ଯୋଜନାରେ ୫୬.୮୩ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଛି । ଯେଉଁ ପ୍ରକଳ୍ପଗୁଡ଼ିକ ଉପରେ ଗୁରୁତ୍ୱ ଆରୋପ କରାଯାଇଛି ସେଗୁଡ଼ିକ ମଧ୍ୟରେ ଫଳ ଉଦ୍ୟାନ, ହ୍ରାସ ଦରରେ କୃଷି ଉପକରଣ ତଥା ସାର, ପୋକମରା ଔଷଧ, କୃଷି ଯନ୍ତ୍ରପାତି, ବଳକା ଯନ୍ତ୍ରାଂଶ ଓ ବାୟୋସାର ଯୋଗାଣ, ମୟୂରଭଞ୍ଜ ଜିଲ୍ଲାର ଆଦିବାସୀମାନଙ୍କ ଉନ୍ନତିକଳ୍ପେ ସବାଇ ଉନ୍ନୟନ ନିଗମ ପ୍ରତିଷ୍ଠା ଓ ଉନ୍ନତ କୃଷି ଯନ୍ତ୍ରପାତିକୁ ଲୋକପ୍ରିୟ କରାଇବା ଭଳି ବିଭିନ୍ନ ପରିକଳ୍ପନା ଅନ୍ତର୍ଭୁକ୍ତ । ଏଥି ନିମନ୍ତେ ଉକ୍ତ ପରିକଳ୍ପନାଗୁଡ଼ିକ ଲାଗି କେନ୍ଦ୍ର ସରକାରଙ୍କ ତରଫରୁ ଯେଉଁ ଆର୍ଥିକ ସହାୟତା ମିଳିଛି ସେ ସବୁକୁ ବିଶେଷ ଭାବେ ଉପଯୋଗ କରି ବହୁ ସଂଖ୍ୟକ ଖାଦ୍ୟ ପ୍ରକ୍ରିୟାକରଣ ୟୁନିଟ୍‌ମାନ ବସାଇବା ପାଇଁ ପ୍ରସ୍ତାବ ରହିଛି ।

୬ । ପଶୁ ତଥା ଗୋ-ପାଳନ ଜରିଆରେ ଅତି ସ୍ୱଳ୍ପ ମୂଳଧନ ବିନିଯୋଗରେ ଗ୍ରାମାଞ୍ଚଳର ଯୁବକ ଯୁବତୀମାନଙ୍କୁ ଆସ ନିଯୁକ୍ତି ଯୋଗାଇ ଦିଆଯାଇ ପାରିବ । ୧୯୯୪-୯୫ ମସିହା ମଧ୍ୟରେ ୨୦୦ଟି ଗୋ-ପାଳନ କେନ୍ଦ୍ର ଓ ୧୯୭ଟି କୁକୁଡ଼ା ପାଳନ କେନ୍ଦ୍ର ପ୍ରତିଷ୍ଠା କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏହା ଫଳରେ ବେକାର ଯୁବକ ଯୁବତୀମାନଙ୍କୁ ଆସ ନିଯୁକ୍ତି ଦିଆଯାଇ ପାରିବ । ରାଜ୍ୟରେ ଲୁଣି ପାଣିରେ ଚିଙ୍ଗୁଡ଼ି ଚାଷ କରିବାର ବିଶେଷ ସମ୍ଭାବନା ରହିଛି । ୮,୯୦୭ ହେକ୍ଟର ଲୁଣା ଅଞ୍ଚଳକୁ ଉନ୍ନତ କରାଯାଇ ଚିଙ୍ଗୁଡ଼ି ଚାଷ ଲାଗି ଯୋଗ୍ୟ ପ୍ରସ୍ତୁତ କରାଯାଇଛି । ଏହା ଦ୍ୱାରା ୬,୮୮୧ ହିତାଧିକାରୀ ଉପକୃତ ହୋଇ ପାରିଛନ୍ତି ଓ ୨,୬୭୪ ଧୀବରଙ୍କୁ ତାଲିମ ପ୍ରଦାନ କରାଯାଇଛି । ଚନ୍ଦ୍ରଭାଗାଠାରେ ଏକ ଚିଙ୍ଗୁଡ଼ି ଜାଆଁଳ ଉତ୍ପାଦନ କେନ୍ଦ୍ରର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ଓ ଏହା ନିକଟରେ କାର୍ଯ୍ୟକାରୀ

ହେବ । ଗୋପାଳପୁର ଓ ଅସ୍ତରଙ୍ଗଠାରେ ଦୁଇଟି କ୍ଷୁଦ୍ର ମାଛ ଧରା ବନ୍ଦର ନିର୍ମାଣ କାର୍ଯ୍ୟ ଶେଷ ହୋଇଛି ଓ ଖରନାସି, ଜମ୍ବୁ ଓ ତାଳଚୁଆଠାରେ ମାଛ ଧରା ଜେଟିର ନିର୍ମାଣ କାର୍ଯ୍ୟ ଆଗେଇ ଚାଲିଛି ।

୬.୧ । ସ୍ୱିଜରଲ୍ୟାଣ୍ଡ ସରକାରଙ୍କ ସମ୍ପୂର୍ଣ୍ଣ ଆର୍ଥିକ ସହାୟତାରେ ପଶୁ ପାଳନର ବିକାଶ ଓ ଡେନ୍‌ମାର୍କ ସରକାରଙ୍କ ଆର୍ଥିକ ସହାୟତାରେ ପଶୁ ପାଳନ ପ୍ରକଳ୍ପ ରାଜ୍ୟର ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ କାର୍ଯ୍ୟ କରୁଛି ।

୭ । ଗ୍ରାମାଞ୍ଚଳର ବିକାଶ ପାଇଁ ମୋ ସରକାର ବିଭିନ୍ନ ପଦକ୍ଷେପମାନ ଗ୍ରହଣ କରିଛନ୍ତି । ସମନ୍ୱିତ ଗ୍ରାମ ଉନ୍ନୟନ ପ୍ରକଳ୍ପ, ଡକ୍ୱା ଓ ଟ୍ରାଇସେମ୍ ଭଳି କାର୍ଯ୍ୟକ୍ରମମାନ ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଥିବା ପରିବାରବର୍ଗଙ୍କ ବାର୍ଷିକ ଆୟ ବୃଦ୍ଧି କରିବା ପାଇଁ ଅଭିପ୍ରେତ । ଏହାଛଡ଼ା ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସମ୍ପ୍ରଦାୟର ଶତକଡ଼ା ୫୦ ଭାଗ ପରିବାରବର୍ଗ ଉକ୍ତ ପରିକଳ୍ପନାଗୁଡ଼ିକର ଯେପରି ପରିସରଭୁକ୍ତ ହୋଇପାରନ୍ତି ସେଥିପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ଓ ତନ୍ମଧ୍ୟରୁ ଶତକଡ଼ା ୬୦ ଭାଗ ମହିଳା ହିତାଧିକାରୀ ଯେପରି ଅନ୍ତର୍ଭୁକ୍ତ ହୋଇପାରିବେ ସେଥିପାଇଁ ଲକ୍ଷ୍ୟ ଧାର୍ଯ୍ୟ ରଖାଯାଇଛି । କୃଷି, କ୍ଷୁଦ୍ର ଜଳସେଚନ, ପଶୁପାଳନ, ମତ୍ସ୍ୟ ଚାଷ, କାରିଗରୀ କାର୍ଯ୍ୟକଳାପ, କୁଟୀର ଓ ଗ୍ରାମ୍ୟ ଶିଳ୍ପ ଓ ସେବାମୂଳକ ବ୍ୟବସାୟଗୁଡ଼ିକ ଲାଗି ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ପ୍ରକଳ୍ପର ସହାୟତା ଯୋଗାଇ ଦିଆଯାଇଥାଏ । ୧୯୯୩ ମସିହା ଡିସେମ୍ବର ମାସ ଶେଷ ସୁଦ୍ଧା ୫୫,୩୪୩ ଜଣ ବ୍ୟକ୍ତି ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ପ୍ରକଳ୍ପ ଦ୍ୱାରା ଉପକୃତ ହୋଇ ପାରିଛନ୍ତି ଓ ତନ୍ମଧ୍ୟରୁ ୧୩,୦୭୩ ଜଣ ତଫସିଲଭୁକ୍ତ ଜାତି, ୧୭,୦୯୦ ଜଣ ତଫସିଲଭୁକ୍ତ ସମ୍ପ୍ରଦାୟ ଓ ୨୦,୬୬୧ ଜଣ ମହିଳା ହିତାଧିକାରୀ ଅନ୍ତର୍ଭୁକ୍ତ । ୧୯୯୩-୯୪ ମସିହା ନିମନ୍ତେ ୧,୬୫,୪୭୯ ଜଣ ବ୍ୟକ୍ତି ଉକ୍ତ କାର୍ଯ୍ୟକ୍ରମ ଅନୁଯାୟୀ ଉପକୃତ ହେବେ ବୋଲି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଡକ୍ୱା ହେଉଛି ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ପ୍ରକଳ୍ପର ଏକ ଉପପରିକଳ୍ପନା ଓ ସମନ୍ୱିତ ଗ୍ରାମ୍ୟ ଉନ୍ନୟନ ପ୍ରକଳ୍ପ ପରିସରଭୁକ୍ତ ମହିଳା ହିତାଧିକାରୀଙ୍କ ଆୟ ବୃଦ୍ଧି କରିବା ହେଉଛି ଏହି ପ୍ରକଳ୍ପର ପ୍ରଧାନ ଲକ୍ଷ୍ୟ । ଏହି ହିତାଧିକାରୀମାନେ ଦାରିଦ୍ର୍ୟ ସୀମାରେଖା ତଳେ ବାସ କରୁଥିବା ଅନ୍ତର୍ଭୁକ୍ତ । ଜବାହର ରୋଜଗାର ଯୋଜନା ଅନୁଯାୟୀ ୧୯୯୩ ମସିହା ଡିସେମ୍ବର ମାସ ସୁଦ୍ଧା ଗ୍ରାମ୍ୟ ଶ୍ରମିକମାନଙ୍କ ପାଇଁ ୨୭୦.୭୧ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇ ପାରିଛି । ଇନ୍ଦିରା ଆବାସ ଯୋଜନା ଅନୁଯାୟୀ ଗ୍ରାମାଞ୍ଚଳରେ ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସମ୍ପ୍ରଦାୟ ବ୍ୟକ୍ତିମାନଙ୍କ ନିମନ୍ତେ ୯,୬୭୪ଟି ବାସଗୃହ ନିର୍ମାଣ ଲାଗି ଚଳିତ ବର୍ଷ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଗ୍ରାମାଞ୍ଚଳ ଶିକ୍ଷାର ପ୍ରସାର ପାଇଁ କଳାପଟା ଅଭିଯାନ ପରିକଳ୍ପନା ଅନୁଯାୟୀ ୧୯୯୪-୯୫ ମସିହା ମଧ୍ୟରେ ୧,୫୦୦ ବିଦ୍ୟାଳୟ ଗୃହ ନିର୍ମାଣ କରିବା ପାଇଁ ମୋ ସରକାର ସ୍ଥିର କରିଛନ୍ତି । ପଞ୍ଚାୟତିରାଜ ବିଭାଗ ଏହି ସମୁଦାୟ ବ୍ୟୟ ଅଟକଳର ୬୦ ଭାଗ ଅର୍ଥ ବହନ କରିବେ । ବିଗତ ୩ ବର୍ଷ ମଧ୍ୟରେ ମୋ ସରକାର ୨,୮୮୫ ପ୍ରାଥମିକ ବିଦ୍ୟାଳୟ ଗୃହ ନିର୍ମାଣ କରିଛନ୍ତି । ଚଳିତ ଆର୍ଥିକ ବର୍ଷ ଶେଷ ସୁଦ୍ଧା ଆଉ ଅଧିକ ୧,୫୦୦ଟି ପ୍ରାଥମିକ ବିଦ୍ୟାଳୟ ଗୃହ ନିର୍ମାଣ କରାଯିବାର ପ୍ରସ୍ତାବ ରହିଛି ଓ ଏଥି ନିମନ୍ତେ ପ୍ରତ୍ୟେକ ଏକ ଲକ୍ଷ ଟଙ୍କା ବ୍ୟୟ କରାଯିବା ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଗୋତି ଶ୍ରମିକଙ୍କ ଥଇଥାନ ନିମନ୍ତେ ଚଳିତ ଆର୍ଥିକ ବର୍ଷ ମଧ୍ୟରେ ୪ ଲକ୍ଷ ଟଙ୍କା ଯୋଗାଇ ଦିଆଯାଇଛି ଓ ଏହାର ଶତକଡ଼ା ୫୦ ଭାଗ ଟଙ୍କା ଭାରତ ସରକାର ବହନ କରିଛନ୍ତି । କେନ୍ଦ୍ରୀୟ ପ୍ରକଳ୍ପ ଅନୁଯାୟୀ ରିହାତି ଭିତ୍ତିରେ ନଳକୂପ ନିର୍ମାଣ କରି କ୍ଷୁଦ୍ର ତଥା ନାମମାତ୍ର କୃଷୀଙ୍କୁ ଜଳସେଚନ ସୁବିଧା ସୁଯୋଗ ଯୋଗାଇଦେବା ଥିଲା ସ୍ୱତନ୍ତ୍ର ଖାଦ୍ୟଶସ୍ୟ ଉତ୍ପାଦନ କାର୍ଯ୍ୟକ୍ରମର ମୂଳ ଲକ୍ଷ୍ୟ । ୧୯୯୩-୯୪ ମସିହା ଆର୍ଥିକ ବର୍ଷଠାରୁ କେନ୍ଦ୍ରୀୟ ସାହାଯ୍ୟ ବନ୍ଦ କରାଯିବା ଫଳରେ ରାଜ୍ୟ ସରକାରଙ୍କ ଆର୍ଥିକ ସହାୟତାରେ ଉକ୍ତ ପରିକଳ୍ପନାମାନ ଚାଲୁ ରଖିବା ପାଇଁ ମୋ ସରକାର ସ୍ଥିର କରିଛନ୍ତି । ଚଳିତ ଆର୍ଥିକ ବର୍ଷ ମଧ୍ୟରେ ୧୧,୧୧୭ଟି କୂପ ଖନନ କରାଯିବା ଲାଗି ସ୍ଥିର କରାଯାଇଛି ଓ ଏଥି ଲାଗି ଡି. ଆର୍. ଡି. ଏ. ପ୍ରକଳ୍ପ ଅଧୀନରେ ଥିବା ରାଶି ବ୍ୟୟ କରାଯିବ । ଗ୍ରାମାଞ୍ଚଳର ରାସ୍ତାଘାଟ ନିର୍ମାଣ ପାଇଁ ରାଜ୍ୟ ଯୋଜନା ଓ ଅଣଯୋଜନା ବ୍ୟୟ ଅଟକଳ ଯଥାକ୍ରମେ ୬୦୦ ଲକ୍ଷ ଓ ୫୭୦ ଲକ୍ଷ ଟଙ୍କା ଯୋଗାଇ ଦିଆଯାଇଛି । ୧୯୯୪-୯୫ ମସିହା ନିମନ୍ତେ ଜବାହର ରୋଜଗାର ଯୋଜନା ବାବଦରେ ଥିବା ବ୍ୟୟ ଅଟକଳରୁ ପର୍ଯ୍ୟାପ୍ତ ଅର୍ଥ ଯୋଗାଇ ଦିଆଯିବ ଓ ଏଥିରୁ ଗାଁ ଗହଳିର ରାସ୍ତାଘାଟର ଉନ୍ନତି ପାଇଁ ବ୍ୟୟ କରାଯିବ ।

୭.୧ । କେନ୍ଦ୍ରୀୟ ସମନ୍ୱିତ ଶିଶୁ ବିକାଶ ପରିକଳ୍ପନା ଅନୁଯାୟୀ ଶିଶୁମାନଙ୍କୁ ପୁଷ୍ଟିକର ଖାଦ୍ୟ ଯୋଗାଣ, ରୋଗ ନିରାକରଣ ବ୍ୟବସ୍ଥା, ସ୍ୱାସ୍ଥ୍ୟ ପରୀକ୍ଷା ଭଳି ସେବା ବ୍ୟବସ୍ଥାମାନ ଯୋଗାଇ ଦିଆଯାଇଥାଏ । ଅଦ୍ୟାବଧି ରାଜ୍ୟରେ ବିଶ୍ୱ ବ୍ୟାଙ୍କ୍ ଆର୍ଥିକ ସହାୟତାକ୍ରମେ ୧୯୧ଟି ପରିକଳ୍ପନା ଓ କେନ୍ଦ୍ରୀୟ ଆର୍ଥିକ ସହାୟତାକ୍ରମେ ୨୭ଟି ପରିକଳ୍ପନା କାର୍ଯ୍ୟ କରୁଛି । ମହିଳା କଲ୍ୟାଣ ନିମନ୍ତେ ମହିଳା ଉନ୍ନୟନ ନିଗମ—ମହିଳା ବିକାଶ ସମବାୟ ନିଗମ ପ୍ରତିଷ୍ଠା କରାଯାଇଛି । ଉକ୍ତ ନିଗମ ମହିଳାମାନଙ୍କର ଆୟ ଉପାର୍ଜନ ସମ୍ବନ୍ଧୀୟ ପରିକଳ୍ପନାମାନ କାର୍ଯ୍ୟକାରୀ କରୁଛନ୍ତି । ମହିଳା ସମିତି ଦ୍ୱାରା ପ୍ରସ୍ତୁତ ସାମଗ୍ରୀଗୁଡ଼ିକ ବିକ୍ରୟ କରି ଉକ୍ତ ନିଗମ ମହିଳାମାନଙ୍କୁ ଅର୍ଥନୈତିକ ଥଇଥାନ ଯୋଗାଇ ଦେଇଥାଏ । ଉକ୍ତ ନିଗମ ଯୌତୁକ ପ୍ରଥା ବିରୁଦ୍ଧରେ ଜନ ସଚେତନତା ସୃଷ୍ଟି କରିବା ସଙ୍ଗେ ସଙ୍ଗେ କର୍ମଜୀବୀ ମହିଳା ନିବାସ ନିର୍ମାଣ ଦାୟିତ୍ୱ ଗ୍ରହଣ କରିଥାଏ ।

୭.୨ । କୃଷି ଓ ଅଣକୃଷି କାର୍ଯ୍ୟରେ ଗ୍ରାମାଞ୍ଚଳର ୧୮ ରୁ ୩୫ ବର୍ଷର ଦାରିଦ୍ର୍ୟ ସୀମାରେଖା ତଳେ ଥିବା ଯୁବକମାନଙ୍କର ଆତ୍ମ ନିଯୁକ୍ତି ପାଇଁ ତାଲିମ ବ୍ୟବସ୍ଥା କରାଯାଉଛି । ଚଳିତ ୧୯୯୩ ମସିହା ଆର୍ଥିକ ବର୍ଷ ସୁଦ୍ଧା ୭,୨୦୮ ଜଣ ଗ୍ରାମୀଣ ଯୁବକମାନଙ୍କୁ ତାଲିମ ଦିଆଯାଇଅଛି ଓ ୫,୪୯୯ ଜଣ ଯୁବକଙ୍କୁ ଥଇଥାନ କରାଯାଇଛି ।

୭.୩ । ଓଡ଼ିଶା ଗ୍ରାମ୍ୟ ଉନ୍ନୟନ ଏବଂ ମାର୍କେଟିଂ ସୋସାଇଟି ଗଠନ କରାଯାଇ ବିକ୍ରୟ, କଞ୍ଚାମାଲ ଯୋଗାଣ ଓ ବୈଷୟିକ ସାହାଯ୍ୟ, ଆଇ.ଆର୍.ଡି.ପି., ଡକ୍ୱା, ଟ୍ରାଇସେମ୍ ଏବଂ ସ୍ୱେଚ୍ଛାସେବୀ ଅନୁଷ୍ଠାନର ଉତ୍ପାଦନକାରୀଙ୍କୁ ଯୋଗାଇ ଦିଆଯାଉଅଛି ।

୭.୪ । ବିକଳାଙ୍ଗ, ବୃଦ୍ଧ, ଅକ୍ଷମ, ବିଧବା ଓ ଅନ୍ୟମାନଙ୍କୁ ସାମାଜିକ ନିରାପତ୍ତା ଯୋଗାଇ ଦେବା ପାଇଁ ମୋ ସରକାର ବ୍ୟାପକ ଭତ୍ତା ଦେବା ଯୋଜନା ହାତକୁ ନେଇ ପ୍ରାୟ ୪.୮୦ ଲକ୍ଷ ଜଣ ହିତାଧିକାରୀଙ୍କୁ ଏହି ଯୋଜନାରେ ଅନ୍ତର୍ଭୁକ୍ତ କରିଛନ୍ତି ।

୭-୫। ଯେହେତୁ ମୁଁ ପୂର୍ବରୁ ସୂଚନା ଦେଇଛି ଯେ, ମୋ ସରକାର ଜିଲ୍ଲାଗୁଡ଼ିକର ପୁନର୍ଗଠନ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି, ସେଥିପାଇଁ ପଞ୍ଚାୟତ ସମିତିଗୁଡ଼ିକର ପୁନର୍ଗଠନ କାର୍ଯ୍ୟ ମଧ୍ୟ ହାତକୁ ନେଇଛନ୍ତି। ଅବସରପ୍ରାପ୍ତ ମାନ୍ୟବର ବିଚାରପତି ଶ୍ରୀ କେ: ପି: ମହାପାତ୍ରଙ୍କ ଅଧ୍ୟକ୍ଷତାରେ ଏକ କମିଶନ ଗଠନ କରାଯାଇଅଛି ଓ ଏ ସମ୍ବନ୍ଧରେ ରାଜ୍ୟ ସରକାରଙ୍କୁ ପ୍ରସ୍ତାବ ସୁପାରିଶ କରିବା ପାଇଁ ସ୍ଥିର କରାଯାଇଅଛି। ଏହି ପ୍ରକ୍ରିୟା ପାଇଁ ରାଜ୍ୟର ରାଜକୋଷରେ ପ୍ରଚୁର ପରିମାଣର ଅର୍ଥର ଆବଶ୍ୟକତା ରହିଛି ଏବଂ ମୋ ସରକାର ୧୦ମ ଅର୍ଥ କମିଶନ ନିକଟରେ ଆବଶ୍ୟକୀୟ ଅର୍ଥ ଯୋଗାଇବା ପାଇଁ ଦାବୀ ଉପସ୍ଥାପନ କରିଛନ୍ତି। ଉକ୍ତ ପ୍ରସ୍ତାବଗୁଡ଼ିକୁ ଯଦି କେନ୍ଦ୍ର ସରକାର ଅନୁମୋଦନ ନକରନ୍ତି, ତେବେ ରାଜ୍ୟର ଉନ୍ନୟନ କାର୍ଯ୍ୟ ଗୁରୁତର ଭାବେ ବାଧାପ୍ରାପ୍ତ ହେବ ବୋଲି ମୋର ଆଶଙ୍କା ରହିଛି।

୮। ଗ୍ରାମାଞ୍ଚଳର ଉନ୍ନୟନ କ୍ଷେତ୍ରରେ, କ୍ଷୁଦ୍ର ଜଳସେଚନ, ଉଠା ଜଳସେଚନ, ଗ୍ରାମାଞ୍ଚଳକୁ ପାନୀୟ ଜଳ ଯୋଗାଣ ଯୋଜନା ଅନ୍ୟ ଏକ ମୁଖ୍ୟ ଦିଗ। ପୋଲ ଓ ରାସ୍ତା ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରି ୧୯୯୩-୯୪ ବର୍ଷରେ ୧,୬୬୫ଟି ଗ୍ରାମକୁ ସବୁଦିନିଆ ଗମନାଗମନ ସୁବିଧା କରିଛନ୍ତି। ୧୯୯୪-୯୫ରେ ଏହି କାର୍ଯ୍ୟକ୍ରମକୁ ଅଧିକ ବ୍ୟାପକ କରାଯାଉଛି। ଗ୍ରାମ୍ୟ ପାନୀୟ ଜଳ ଯୋଗାଣ କାର୍ଯ୍ୟକ୍ରମ ଅନୁଯାୟୀ, ୧୯୯୪-୯୫ ବର୍ଷରେ ୨,୫୦୦ଟି ନଳ କୂପ ଖନନ ଓ ୧୫୬ଟି ପକ୍କା କୂପ ଖନନ କରାଯିବ। ଏ: ଆର: ଡବ୍ଲ୍ୟୁ: ଓ ଏସ: ପି: ଯୋଜନା ଦ୍ୱାରା ୧୯୯୪-୯୫ରେ, ଆହୁରି ୩,୫୦୦ଟି ନଳ କୂପ ଖନନ ଏବଂ ୧୦୦ଟି ପକ୍କା କୂପ ନିର୍ମାଣ କରାଯିବ। ୧୯୯୪-୯୫ରେ ଖରିଫ ଚାଷ ପାଇଁ ୧୩,୬୩୯ ହେକ୍ଟର ଓ ରବି ଚାଷ ପାଇଁ ୧,୪୯୯ ହେକ୍ଟର ଜମିରେ ଜଳସେଚନ ସୁବିଧା ଲାଗି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ପାଇଁ ୩୧ କୋଟି ୮୫ ଲକ୍ଷ ଟଙ୍କା ବ୍ୟବସ୍ଥା କରାଯାଇଛି। ଅବିଭକ୍ତ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ୨୮,୫୫୦ ହେକ୍ଟର ଜମିରେ ଜଳସେଚନ ପାଇଁ ୬୧୦ଟି ଉଠା ଜଳସେଚନ ପଏଣ୍ଟର କାର୍ଯ୍ୟ ହାତକୁ ନିଆଯାଇଛି। ଏହି ପ୍ରକଳ୍ପ ଲାଗି ଜର୍ମାନର କେ: ଏଫ୍: ଡବ୍ଲ୍ୟୁ: ଓ ରାଜ୍ୟ ସରକାରଙ୍କ ଦ୍ୱାରା ୧୧୦ କୋଟି ଟଙ୍କା ବ୍ୟୟ ଅଟକଳ କରାଯାଇଛି। ଗ୍ରାମାଞ୍ଚଳରେ ବସବାସ କରୁଥିବା ସବୁ ଶ୍ରେଣୀର ଲୋକଙ୍କ ପାଇଁ ବ୍ୟାପକ ଭାବେ ଗ୍ରହଣ କରାଯାଇଥିବା ବିଭିନ୍ନ କାର୍ଯ୍ୟକ୍ରମକୁ ପ୍ରଶଂସା କରାଯାଉଛି। ୧୯୯୪-୯୫ରେ ପ୍ରତି ନିର୍ବାଚନ ମଣ୍ଡଳୀ ପାଇଁ ୨୦ ଲକ୍ଷ ଟଙ୍କା ଧାର୍ଯ୍ୟ କରାଯାଇ ଥିବାରୁ ଏହି କାର୍ଯ୍ୟକ୍ରମକୁ ଅଧିକ ଜନ ସମର୍ଥନ ମିଳିବ। ମୋ ସରକାରଙ୍କର ଆଭିମୁଖ୍ୟ ହେଲା, "ଗାଁକୁ କାମ, ମା'କୁ ସମ୍ମାନ"।

୯। ଗ୍ରାମ୍ୟ କାରିଗରମାନଙ୍କର ଉନ୍ନତିକଳ୍ପେ ମୋ ସରକାର ବହୁ ସଂଖ୍ୟକ ପରିକଳ୍ପନା କାର୍ଯ୍ୟକାରୀ କରୁଛନ୍ତି। ଉକ୍ତ ଆର୍ଥିକ ସହାୟତା ହସ୍ତ ଶିଳ୍ପ ସମିତିଗୁଡ଼ିକୁ ସୁଧ ରିହାତି, ବିକ୍ରୟ ରିହାତି ଓ ସୋରୁମ୍ ତଥା ଗୋଦାମ ଘର ବ୍ୟବସ୍ଥା ଜରିଆରେ ଯୋଗାଇ ଦିଆଯାଇଥାଏ। ମୂଳ ଟଙ୍କା, ଗୃହ ତଥା କାରଖାନା ଗୃହ, ତାଲିମ୍, ଯନ୍ତ୍ରପାତି କ୍ରୟ, ପ୍ରଦର୍ଶନୀ ତଥା ପ୍ରସ୍ତୁର ଓ ଯନ୍ତ୍ରପାତିର ଆଧୁନିକୀକରଣ କରିବା ନିମନ୍ତେ ବ୍ୟକ୍ତିବିଶେଷ କାରିଗରମାନଙ୍କୁ ଆର୍ଥିକ ସହାୟତା ଯୋଗାଇ ଦିଆଯାଇଥାଏ। କାରିଗରୀ କ୍ଷେତ୍ରରେ ଆଗାମୀ ଦୁଇ ତିନି ବର୍ଷ ମଧ୍ୟରେ ୫୮ ହଜାର କର୍ମ ନିଯୁକ୍ତି ସମ୍ଭାବ୍ୟ ସୃଷ୍ଟି କରିବା ଲାଗି ପ୍ରସ୍ତାବ ରଖାଯାଇଛି। ଚଳିତ ବର୍ଷ ମଧ୍ୟରେ ଅନ୍ୟାନ୍ୟ ଯେଉଁ ସବୁ କାର୍ଯ୍ୟକଳାପମାନ ହାତକୁ ନିଆଯାଇଛି ତନ୍ମଧ୍ୟରେ ଗ୍ରାମାଞ୍ଚଳ ମହିଳାମାନଙ୍କ ନିମନ୍ତେ କାର୍ପେଟ୍ ବୁଣା ଜରିଆରେ କର୍ମ ନିଯୁକ୍ତି ସୃଷ୍ଟି କରିବା ହେଉଛି ଅନ୍ୟତମ। ଏହି କାର୍ପେଟ୍ ଉତ୍ପାଦନ କ୍ଷେତ୍ରରେ କୌଣସି ସ୍ତରରେ ଶିଶୁ ଶ୍ରମିକମାନଙ୍କୁ ସମ୍ପୃକ୍ତ କରାଯାଇ ନାହିଁ। ୧୯୯୩-୯୪ ମସିହା ମଧ୍ୟରେ ୧୦୦ଟି ତନ୍ତକୁ ଉତ୍ପାଦନକ୍ଷମ କରାଯାଇଛି ଓ ଏଥିରେ ୩୦୦ ଜଣ ମହିଳାଙ୍କୁ କର୍ମ ନିଯୁକ୍ତି ଦିଆଯାଇଛି। ଚଳିତ ଆର୍ଥିକ ବର୍ଷ ମଧ୍ୟରେ ୮୫୦ଟି ତନ୍ତକୁ କାର୍ଯ୍ୟକ୍ଷମ କରାଯାଇ ତହିଁରେ ପ୍ରାୟ ୨,୫୦୦ ଜଣ ମହିଳାଙ୍କୁ କର୍ମ ନିଯୁକ୍ତି ଯୋଗାଇ ଦିଆଯାଉଛି।

୧୦। ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିର ସର୍ବାଙ୍ଗୀନ ବିକାଶ ମୋ ସରକାରଙ୍କର ମୁଖ୍ୟ ଲକ୍ଷ୍ୟ। ସେମାନେ ରାଜ୍ୟର ମୋଟ ଜନସଂଖ୍ୟାର ଶତକଡ଼ା ୩୮.୪୧ ଭାଗ ହୋଇଥିବା ଦୃଷ୍ଟିରୁ ଆଦିବାସୀ ଉପ-ଯୋଜନା ଅଞ୍ଚଳରେ ବିଭିନ୍ନ କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ୨୧ଟି ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥା କାର୍ଯ୍ୟ କରୁଛି। ବିଭିନ୍ନ ବର୍ଗର ଆଦିବାସୀଙ୍କ ଉନ୍ନୟନ ଲାଗି ଅନେକ ଆୟକାରୀ ଯୋଜନାର ଭିତ୍ତିଭୂମି ପ୍ରସ୍ତୁତ ପାଇଁ ୧୭ଟି ଅଣଯୋଜନା ପ୍ରକଳ୍ପ କାର୍ଯ୍ୟ କରୁଛି। ଉପରୋକ୍ତ ଯୋଜନାର ପରିସରଭୁକ୍ତ ଆଦିବାସୀ ପରିବାରମାନଙ୍କୁ ବିଶେଷ ଆଦିବାସୀ ଉନ୍ନୟନ କାର୍ଯ୍ୟକ୍ରମ ଦ୍ୱାରା ସହାୟତା କରାଯାଉଛି। ୧୯୯୩-୯୪ ବର୍ଷରେ ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତିର ଚାକିରି କ୍ଷେତ୍ରରେ ସ୍ଥାନ ସଂରକ୍ଷଣ, ୧୯୭୫ ଆଇନର ସଂଶୋଧନ କରାଯାଇ ଉପରୋକ୍ତ ସମ୍ପ୍ରଦାୟଦ୍ୱୟର ମହିଳା ପ୍ରାର୍ଥିନୀଙ୍କ ପାଇଁ ଏକ-ତୃତୀୟାଂଶ ସଂରକ୍ଷିତ ରଖାଯାଇଛି। ସଂରକ୍ଷଣ ନୀତିର ଖିଲାପ କରୁଥିବା ବର୍ତ୍ତମାନ ଥିବା ୧,୦୦୦ ଟଙ୍କା ଜୋରିମାନା ପରିମାଣକୁ ୫,୦୦୦ ଟଙ୍କାକୁ ବୃଦ୍ଧି କରାଯାଇଛି। ଜାତି ପ୍ରମାଣପତ୍ର ଦେବା ପାଇଁ ମୋ ସରକାର ଜିଲ୍ଲାପାଳ, ଅତିରିକ୍ତ ଜିଲ୍ଲାପାଳ, ଉପ-ଜିଲ୍ଲାପାଳ, ତହସିଲଦାର ଓ ଅତିରିକ୍ତ ତହସିଲଦାରମାନଙ୍କୁ କ୍ଷମତା ପ୍ରଦାନ କରିଛନ୍ତି। ସେମାନେ ସାମାଜିକ ଓ ଶିକ୍ଷା କ୍ଷେତ୍ରରେ ପଛୁଆ ବର୍ଗର ପ୍ରାର୍ଥୀଙ୍କୁ 'କ୍ରିମିଲେୟର' ଗୋଷ୍ଠୀ ନୁହନ୍ତି ବୋଲି ମଧ୍ୟ ପ୍ରମାଣପତ୍ର ଦେବେ। ଜାତି ପ୍ରମାଣପତ୍ର ଦେବାବେଳେ ବିଳମ୍ବ ରୋକିବା ପାଇଁ ଦରଖାସ୍ତ ମିଳିବାର ଏକ ମାସ ମଧ୍ୟରେ ସେଗୁଡ଼ିକର ଫଇସଲା ପାଇଁ ସମୟ ଧାର୍ଯ୍ୟ କରାଯାଇଛି।

୧୦.୧। ଦରିଦ୍ର ଲୋକଙ୍କୁ ଆଇନ୍ ସହାୟତା ଓ ପରାମର୍ଶ ଯୋଜନାର ଯଥେଷ୍ଟ ସୁଫଳ ମିଳିଛି। ଆଇନ ସହାୟତା ପାଇଁ ୩,୨୩୮ ଆବେଦନକାରୀଙ୍କୁ ୫ ଲକ୍ଷ ୫୮ ହଜାର ୯୩୯ ଟଙ୍କାର ସହାୟତା ଦିଆଯାଇଛି। ରାଜ୍ୟର ବିଭିନ୍ନ ଆଇନ ସହାୟତା କମିଟି ଦ୍ୱାରା ୨୦୬ଟି ଲୋକ ଅଦାଲତ ଆୟୋଜନ କରାଯାଇ ୧,୯୧୬ଟି ଦେୱାନୀ, ୨୭,୪୫୫ଟି ଫୌଜଦାରୀ, ୩୨,୬୧୩ଟି ରାଜସ୍ୱ, ୯୭୪ଟି ମୋଟର ଦୁର୍ଘଟଣା ଓ ୨୨ଟି ଶ୍ରମିକ କ୍ଷତିପୂରଣ ମାମଲାର ଫଇସଲା କରାଯାଇଛି।

୧୧। ନୂତନ ପଦକ୍ଷେପରେ ଅଧିକ ପରିମାଣର ଅର୍ଥ ବିନିଯୋଗ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବା ମୋ ସରକାରଙ୍କ ଶିଳ୍ପ ନୀତିର ଅଭିମୁଖ୍ୟ। ରିପିକଲ୍ ସହାୟତାରେ ୪,୪୦୦ ଲୋକ ନିଯୁକ୍ତି ପାଇପାରିବା ଭଳି ପ୍ରକଳ୍ପର କାର୍ଯ୍ୟକାରିତା ବିଭିନ୍ନ ପର୍ଯ୍ୟାୟରେ ରହିଛି।

ଅଷ୍ଟମ ପଞ୍ଚବାର୍ଷିକ ଯୋଜନାରେ କୃଷି ଓ ଖଣିଜଭିତ୍ତିକ ଶିଳ୍ପଗୁଡ଼ିକୁ ଅଗ୍ରାଧିକାର ଦିଆଯାଇଛି । ଦୈନିକ ୨,୫୦୦ ଟନ୍ ପେଡ଼ିବା କ୍ଷମତାସମ୍ପନ୍ନ ୫ଟି ବୃହତ୍ ଚିନିକଳ ରାଜ୍ୟରେ ସ୍ଥାପନ କରାଯାଇଛି ଏବଂ ଏଗୁଡ଼ିକରେ ୪,୦୦୦ ବ୍ୟକ୍ତି ପ୍ରତ୍ୟକ୍ଷ ଭାବରେ ନିଯୁକ୍ତି ପାଇବାର ଆଶା କରାଯାଉଛି । ୧୯୯୩ ଡିସେମ୍ବର ଶେଷ ସୁଦ୍ଧା ୨୬ କୋଟି ୨୮ ଲକ୍ଷ ଟଙ୍କା ବିନିଯୋଗରେ ୧,୦୦୭ଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯାଇ ୬,୬୬୭ ଜଣଙ୍କ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯାଇଛି । ୧୯୯୪–୯୫ ବର୍ଷରେ ୨,୦୦୦ଟି ଏପରି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯାଇ ୧୬,୦୦୦ ଲୋକଙ୍କ ପାଇଁ ନିଯୁକ୍ତି ସୁବିଧା ସୃଷ୍ଟି କରିବାକୁ ପ୍ରସ୍ତାବ ରହିଛି । ବୈତରଣୀ ନିକଟବର୍ତ୍ତୀ କଳିଙ୍ଗ ନଗର ଉନ୍ନୟନ କର୍ତ୍ତୃପକ୍ଷ ଅଞ୍ଚଳରେ ଛଅଟି କମ୍ପାନୀ ଯଥା : କଳିଙ୍ଗ ଷ୍ଟିଲ୍ ଲିମିଟେଡ୍, ମେସ୍କୋ, ଏମ୍ଏମ୍‌ଟିସି–ଓସିଲ–ଇଲ୍‌ଡା ଓ ରାଜ୍ୟ ସରକାର କନ୍‌ସରଟିୟମ୍, ଓଡ଼ିଶା ଷ୍ଟିଲ୍ସ, ଭୂଷଣ ଷ୍ଟିଲ୍ସ ଏବଂ ଷ୍ଟ୍ରିପ୍ ଲିମିଟେଡ୍, ବ୍ରାହ୍ମଣୀ ଷ୍ଟିଲ୍ସ ଲିଃକୁ ଜମି ଦିଆଯାଇଛି । ମେସ୍କୋ ତାଙ୍କ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ଆରମ୍ଭ କରି ସାରିଛନ୍ତି ଏବଂ ୧୯୯୬ ଶେଷ ସୁଦ୍ଧା ଏହି ପ୍ରକଳ୍ପରୁ ୧ ନିୟୁତ ଟନ୍ ସମ୍ପୂର୍ଣ୍ଣ ଇସ୍ପାତ, ୦.୨୦ ନିୟୁତ ଟନ୍ ଲୌହପିଣ୍ଡ ଓ ୬୦,୦୦୦ ଟନ୍ ଷ୍ଟେନଲେସ୍ ଷ୍ଟିଲ୍ ଉତ୍ପାଦିତ ହେବ । ମାନ୍ୟବର ସଦସ୍ୟମାନଙ୍କୁ ସ୍ମରଣ କରାଇ ଦିଆଯାଇପାରେ ଯେ, ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟର ପ୍ରାରମ୍ଭିକ ଉତ୍ପାଦନ ଥିଲା ୧ ନିୟୁତ ଟନ୍ । ଏମ୍ଏମ୍‌ଟିସି–ଓସିଲ୍ କନ୍‌ସରଟିୟମ୍ ଓ କଳିଙ୍ଗ ଷ୍ଟିଲ୍ସ ଯଥାକ୍ରମେ ୧ ନିୟୁତ ଓ ୧.୫ ନିୟୁତ ଟନ୍ ଇସ୍ପାତ ଉତ୍ପାଦନ ପାଇଁ ସେମାନଙ୍କ ଯୋଜନା ଚୂଡ଼ାନ୍ତ କରି ବମ୍ବେସ୍ଥିତ ଭାରତୀୟ ଶିଳ୍ପ ଉନ୍ନୟନ ବ୍ୟାଙ୍କଠାରେ ସେମାନଙ୍କ ଋଣ ଦରଖାସ୍ତ ଦାଖଲ କରିଛନ୍ତି । ଏ ସମସ୍ତ ପ୍ରକଳ୍ପଗୁଡ଼ିକ ସମ୍ପୂର୍ଣ୍ଣ ହେଲେ କଳିଙ୍ଗ ନଗର କମ୍ପ୍ଲେକ୍ସରୁ ବାର୍ଷିକ ୫ ନିୟୁତ ଟନ୍ ସମ୍ପୂର୍ଣ୍ଣ ଇସ୍ପାତ ଉତ୍ପାଦିତ ହେବ । ନିର୍ମାଣାଧୀନ ବାଂଶପାଣି–ଦଇତାରୀ ରେଳ ସଂଯୋଗ ଦ୍ୱାରା ରାଜ୍ୟର ଖଣିଜ ସମ୍ପଦ ଅଞ୍ଚଳ ବିକାଶ ହେବା ସଙ୍ଗେ ସଙ୍ଗେ ଗନ୍ଧମାର୍ଦ୍ଦନ ଓ ମାଲାଂତୋଲିରେ ଗଚ୍ଛିତ ଲୁହା ପଥରର ଉପଯୋଗ ହୋଇପାରିବ । ଭାରତୀୟ ତୈଳ କର୍ତ୍ତୃପକ୍ଷଙ୍କ ଦ୍ୱାରା ଦୈତାରୀ ନିକଟରେ ସ୍ଥାପିତ ହେବାକୁ ଥିବା ପୂର୍ବାଞ୍ଚଳ ତୈଳ ବିଶୋଧନ ପ୍ରକଳ୍ପରୁ ବାର୍ଷିକ ୬ ନିୟୁତ ଟନ୍ ଅଶୋଧିତ ତୈଳକୁ ବିଶୋଧନ କରାଯାଇ ପାରିବ । ଏହି ପ୍ରକଳ୍ପ ନିର୍ମାଣଲାଗି ୪,୫୦୦ କୋଟି ଟଙ୍କା ବିନିଯୋଗ ହେବା ସଙ୍ଗେ ସଙ୍ଗେ ଏହାର ଆନୁଷଙ୍ଗିକ ଶିଳ୍ପ ପ୍ରତିଷ୍ଠା ବାବଦରେ ଆହୁରି ୧୦,୦୦୦ କୋଟି ଟଙ୍କା ବିନିଯୋଗ କରାଯିବ । ଫଳରେ ବୈଷୟିକ ଯୋଗ୍ୟତା ଥିବା ୨୦,୦୦୦ରୁ ଊର୍ଦ୍ଧ୍ୱ ଯୁବକ ଯୁବତୀମାନଙ୍କ ପାଇଁ ନିଯୁକ୍ତି ସୁବିଧା ସୃଷ୍ଟି ହୋଇ ପାରିବ । ମୋ ସରକାର ଏପରି ଯୋଗ୍ୟତାସମ୍ପନ୍ନ ବ୍ୟକ୍ତିଙ୍କୁ ତାଲିମ ଦେବାଲାଗି ରାଜ୍ୟରେ ଏକ ସ୍ୱତନ୍ତ୍ର ତାଲିମ ଅନୁଷ୍ଠାନ ସ୍ଥାପନ କରୁଛନ୍ତି । ପାରାଦ୍ୱୀପ ଫସ୍‌ଫେଟ କାରଖାନାରେ ନାଫ୍‌ଥା ଦ୍ୱାରା ପ୍ରସ୍ତୁତ ବିଶୋଧିତ ତୈଳ ବ୍ୟବହୃତ ହେବ । ଫଳରେ କମ୍ପାନୀର କ୍ଷତି ଭରଣା ହେବା ସଙ୍ଗେ ସଙ୍ଗେ ବିଦେଶୀ ମୁଦ୍ରାର ସଞ୍ଚୟ ହୋଇ ପାରିବ । ମୋ ସରକାର ଅଷ୍ଟ୍ରେଲିଆ ସରକାରଙ୍କ ସହାୟତାରେ ରାଜ୍ୟରେ ଭୂ–ତଳ ଜଳ ଓ ମୂଲ୍ୟବାନ ଧାତୁର ବାୟୁବିସ୍ଥ ଚୁମ୍ବକୀୟ ସର୍ବେକ୍ଷଣ କରିଛନ୍ତି । ବର୍ତ୍ତମାନ ସୁଦ୍ଧା ଫୁଲବାଣୀ, ବଲାଙ୍ଗୀର, କଳାହାଣ୍ଡି, କେନ୍ଦୁଝର ଓ ମୟୂରଭଞ୍ଜ ଜିଲ୍ଲାର ୨୮,୦୦୦ ବର୍ଗ କିଲୋମିଟର ଅଞ୍ଚଳରେ ସର୍ବେକ୍ଷଣ ହୋଇ ସାରିଛି । ପାଞ୍ଚ ବର୍ଷରୁ ଊର୍ଦ୍ଧ୍ୱ ସମୟ ମଧ୍ୟରେ ଏହି ପରିକଳ୍ପନା ବାବଦରେ ୪୦ କୋଟି ଟଙ୍କା ବିନିଯୋଗ ହେବାର ଲକ୍ଷ୍ୟ ରଖାଯାଇଛି ।

୧୧.୧ । ପ୍ରାକୃତିକ ଉତ୍ସ ଯଥା : ନଦୀ, ଝରଣା ଓ ପ୍ରାକୃତିକ ଜଳ ଉତ୍ସର ଜଳ ଶିଳ୍ପ ଓ ବ୍ୟବସାୟିକ ଉଦ୍ଦେଶ୍ୟରେ ବିନିଯୋଗ ଉପରେ ମୋ ସରକାର ପ୍ରଥମ ଥର ପାଇଁ ଆଇନଗତ କଟକଣା କରିଛନ୍ତି । ଭୂ–ପୃଷ୍ଠ ଜଳ ବିନିଯୋଗ ଓ ଜଳ ଶୁଳ୍କକୁ ଫଳପ୍ରଦ କରିବା ଲାଗି ସାମ୍ବିଧାନିକ ବ୍ୟବସ୍ଥା ଆବଶ୍ୟକ । ଏଥିପାଇଁ ମୋ ସରକାର ଓଡ଼ିଶା ଜଳସେଚନ (ସଂଶୋଧନ) ବିଲ୍, ୧୯୯୩କୁ ଅନୁମୋଦନ କରିଛନ୍ତି ।

୧୨ । ସବୁ କ୍ଷେତ୍ରରେ ରାଜ୍ୟ ଅର୍ଥନୀତିର ବିକାଶ ଦିଗରେ ମୋ ସରକାର ବିଜ୍ଞାନ ଓ କାରିଗରୀ କୌଶଳର ପ୍ରସାର ଓ ପ୍ରଚାର ପାଇଁ ସତର୍କ ଦୃଷ୍ଟି ଦେଉଛନ୍ତି । ଶକ୍ତି ଉପଯୋଗ ବର୍ଦ୍ଧିତ ଧୂପ ଚୁଲ୍ଲିକୁ ଅକ୍ଷୟ ଶକ୍ତି ବିକାଶ କାର୍ଯ୍ୟକ୍ରମ ବିଶେଷ ଗୁରୁତ୍ୱପୂର୍ଣ୍ଣ । ୧୯୯୩–୯୪ ବର୍ଷରେ ୧୩,୦୦୦ ଗୋବର ଗ୍ୟାସ ପ୍ଲାଣ୍ଟ ଓ ୧,୨୦,୦୦୦ଟି ଉନ୍ନତ ଚୁଲ୍ଲା ସ୍ଥାପନ କରିବାର ଲକ୍ଷ୍ୟ ରଖାଯାଇଛି । ଆଗାମୀ ବର୍ଷମାନଙ୍କରେ ଏହାକୁ ଆହୁରି ବ୍ୟାପକ କରାଯିବ । ଉନ୍ନତ ଭାଟିର ପ୍ରସ୍ତୁତିକରଣ ଫଳରେ କୋଇଲା ଶକ୍ତିର ଉତ୍ସ ହେବା ଦ୍ୱାରା ଶହଶହ ଟନ୍ ଜାଳେଣି କାଠର ଅପଚୟକୁ ରୋକାଯାଇ ପାରିବ । ଏହା ଦ୍ୱାରା ଶ୍ରୀଜଗନ୍ନାଥ ଓ ଶ୍ରୀଲିଙ୍ଗରାଜ ମନ୍ଦିରକୁ ମାଟି କୁଣ୍ଡୁଆ ଯୋଗାଉଥିବା ହଜାର ହଜାର କୁମ୍ଭକାର ଉପକୃତ ହେବେ । କାରିଗରୀ କୌଶଳ ସମ୍ପର୍କରେ ସଚେତନ ହେବାଲାଗି ଜାପାନୀ ଭାଷା ଶିକ୍ଷା ଦିଆଯାଉଛି । ରାଜ୍ୟରେ କ୍ଷିପ୍ର ଦୂର ସଞ୍ଚାର ଇଲେକ୍ଟ୍ରୋନିକ ଶିଳ୍ପ କଳା ପ୍ରତିଷ୍ଠା ପାଇଁ ଭିତ୍ତିଭୂମି ପ୍ରସ୍ତୁତ ଲାଗି ୧୯୯୪–୯୫ରେ ହାର୍ଡ ଓ ସଫ୍‌ଟଓ୍ୱାର୍ ପାଇଁ ଏକ ଇଲେକ୍ଟ୍ରୋନିକ ପାର୍କ ସ୍ଥାପନ କରାଯିବ ।

୧୨.୧ । ପ୍ରାକୃତିକ ପରିବେଶ ସ୍ଥାୟିତ୍ୱ ଓ ସୁରକ୍ଷାର ଗୁରୁତ୍ୱ ଉପଲବ୍ଧି କରି ମୋ ସରକାର ସାରା ରାଜ୍ୟରେ ଆଉ ଏକ ବର୍ଷ ପର୍ଯ୍ୟନ୍ତ ବୃକ୍ଷ ଛେଦନକୁ ନିଷିଦ୍ଧ କରିଛନ୍ତି । ଦ୍ୱୈତ ପରିଚାଳନାରେ ଅବକ୍ଷୟିତ ଜଙ୍ଗଲର ପୁନଃଉଦ୍ଧାରରେ ଗ୍ରାମବାସୀଙ୍କ ପୂର୍ଣ୍ଣ ସହଯୋଗ ମିଳିବାର ଆଶା କରାଯାଉଛି । ଜନସାଧାରଣଙ୍କ ଜାଳେଣି କାଠ, ଅନ୍ୟାନ୍ୟ ଗୃହୋପକରଣ ଚାହିଦା ପୂରଣ ଲାଗି ବ୍ୟାପକ ବୃକ୍ଷରୋପଣ କରାଯାଉଛି । ୧୯୯୪–୯୫ ବର୍ଷରେ ମୋ ସରକାର ଏକ ଲକ୍ଷ ହେକ୍ଟର ପରିମିତ ଅଞ୍ଚଳରେ ବୃକ୍ଷରୋପଣ ଲକ୍ଷ୍ୟ ରଖିଛନ୍ତି ।

୧୩ । ଅର୍ଥନୈତିକ ବିକାଶକୁ ତ୍ୱରାନ୍ୱିତ କରିବା ଲାଗି ଭିତ୍ତିଭୂମିର ବିକାଶ ଏକାନ୍ତ ଅପରିହାର୍ଯ୍ୟ । ଆଧୁନିକ କୃଷି କାରିଗରୀ କୌଶଳ ପାଇଁ ଜଳସେଚନର ମୁଖ୍ୟ ଭୂମିକା ରହିଛି । ରାଜ୍ୟରେ କୃଷି କାର୍ଯ୍ୟ ପ୍ରଗତି କ୍ଷେତ୍ରରେ ଅନିୟମିତ ଜଳବାୟୁର କୁପ୍ରଭାବକୁ ହ୍ରାସ କରିବା ନିମନ୍ତେ ଖରିଫ ଋତୁ ଲାଗି ବ୍ୟାପକ ଅଞ୍ଚଳରେ ଜଳସେଚନ ବ୍ୟବସ୍ଥା କରାଯାଇଛି । ରାଜ୍ୟର ମୋଟ ୬୫.୫୯ ଲକ୍ଷ ହେକ୍ଟର ଚାଷ ଜମି ମଧ୍ୟରୁ ୩୮.୫୯ ଲକ୍ଷ ହେକ୍ଟର ଜମିରେ ଜଳସେଚନ ହେବାର ଜଳ ସମ୍ପଦ ରହିଛି । ଆପାତତଃ ବୃହତ୍ ଓ ମଧ୍ୟମ ଜଳସେଚନ ପ୍ରକଳ୍ପ ଦ୍ୱାରା ଖରିଫ ଋତୁ ପାଇଁ ୯,୬୩,୦୦୦ ହେକ୍ଟର ଓ ରବି ଋତୁ ପାଇଁ ୪,୩୯,୬୭୦ ହେକ୍ଟର ଜମିରେ ଜଳସେଚନ ସୁବିଧା ସୃଷ୍ଟି କରାଯାଇଛି ।

ଚଳିତ ବର୍ଷ ଅର୍ଥାତ ୧୯୯୩–୯୪ରେ ଖରିଫ ଫସଲ ପାଇଁ ୨୨,୪୮୦ ହେକ୍ଟର ଓ ରବି ଗୁଷ ପାଇଁ ୧୯,୦୩୦ ହେକ୍ଟର ଜମିରେ ଜଳସେଚନ ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ବୃହତ ଓ ମଧ୍ୟମ ସେଚ ପ୍ରକଳ୍ପ ପାଇଁ ୨୬୦ କୋଟି ଟଙ୍କା ବ୍ୟୟ ବରାଦରେ ୧୯୯୪–୯୫ ବର୍ଷରେ ନିର୍ମାଣାଧୀନ ସେଚ ପ୍ରକଳ୍ପ, ଯଥା–ଅପର କୋଲାବ, ଅପର ଇନ୍ଦ୍ରାବତୀ, ପୋଟେରୁ, ବଡ଼ନାଳ, ଅପରଜଙ୍କ, ହରଭାଙ୍ଗି, ହରିହର ଯୋର ଏବଂ ବିରୂପା–ଗେଙ୍ଗୁଟି କାର୍ଯ୍ୟ ସମ୍ପୂର୍ଣ୍ଣ ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ପାଞ୍ଚ ବର୍ଷ ମଧ୍ୟରେ ଅର୍ଥାତ୍ ୧୯୯୪–୯୯ ସୁଦ୍ଧା ବିଶ୍ୱ ବ୍ୟାଙ୍କ୍ ସହାୟତାରେ ଜଳ ସମ୍ପଦ ଏକୀକରଣ ପାଇଁ ୬୦୦ କୋଟି ଟଙ୍କା ବିନିଯୋଗରେ ୧୯୯୪ରେ ବର୍ତ୍ତମାନ ଥିବା ୨-୫ ଲକ୍ଷ ହେକ୍ଟର ଜମିରେ ଜଳସେଚନ ସୁବିଧାର ଆଧୁନିକୀକରଣ କରାଯିବ । ୱାର୍ଲଡ୍ ବ୍ୟାଙ୍କ ନ୍ୟାସନାଲ୍ ହାଇଡ୍ରୋଲଜିକାଲ୍ ପ୍ରୋଜେକ୍ଟ ନାମକ ଅନ୍ୟ ଏକ ଯୋଜନା ଦ୍ୱାରା ରାଜ୍ୟରେ ଉପଲବ୍ଧ ହେଉଥିବା ଜଳ ସମ୍ପଦର ଅଟକଳ କରାଯାଉଛି । ବନ୍ୟା ନିୟନ୍ତ୍ରଣ ବାବଦରେ ଗତାନୁଗତିକ ୫ କୋଟି ଟଙ୍କା ବ୍ୟବସ୍ଥା ପରିବର୍ତ୍ତେ ୧୯୯୪–୯୫ରେ ଏଥିପାଇଁ ୧୫ କୋଟି ଟଙ୍କା ବ୍ୟବସ୍ଥା କରାଯାଇଛି ।

୧୪ । ଯେ କୌଣସି ମିତବ୍ୟୟିତାକୁ ଆକାର ଦେବା ପାଇଁ ଶକ୍ତିର ବ୍ୟବହାର ଓ ମିଳିବା ମୂଳ ଉତ୍ସ ଅଟେ । ଶକ୍ତି ଉତ୍ପାଦନ କ୍ଷେତ୍ରରେ ମୋ ସରକାର ବ୍ୟାପକ ପଦକ୍ଷେପ ଗ୍ରହଣ କରିଛନ୍ତି । ଶକ୍ତି ଉତ୍ପାଦନ ନିମନ୍ତେ ସ୍ଥିର ହୋଇଥିବା ଅପର ଇନ୍ଦ୍ରାବତୀ ଜଳ ବିଦ୍ୟୁତ୍ ଏବଂ ଇବ୍ ଥର୍ମାଲ୍ ଯୋଜନାକୁ ସମ୍ପୂର୍ଣ୍ଣ କରିବା ନିମନ୍ତେ ଅଗ୍ରାଧିକାର ଦିଆଯାଇଛି । ଏହି କ୍ଷେତ୍ରରେ ଘରୋଇ ଉଦ୍ୟୋଗର ବିନିଯୋଗ ପାଇଁ ସୁବିଧା ସୁଯୋଗ ଯୋଗାଇ ଦିଆଯିବ । ଇବ୍ ଥର୍ମାଲ୍ ପ୍ରକଳ୍ପରେ ୨୧୦ ମେଗାୱାଟ ଶକ୍ତି ଉତ୍ପାଦନ ନିମନ୍ତେ ଚଳିତ ୧୯୯୪ ମସିହା ଏପ୍ରିଲ ମାସରେ ପ୍ରଥମ ୟୁନିଟ୍ ଓ ଆସନ୍ତା ସେପ୍ଟେମ୍ବର–ଅକ୍ଟୋବର ମାସରେ ଦ୍ୱିତୀୟ ୟୁନିଟ୍ ସ୍ଥାପନ କରାଯିବ । ଯୁକ୍ତରାଷ୍ଟ୍ର ଆମେରିକାର AES Transpower ସଂସ୍ଥା ଇବ୍ ଥର୍ମାଲ୍ ପ୍ରକଳ୍ପରେ ତୃତୀୟ ଏବଂ ଚତୁର୍ଥ ୟୁନିଟ୍ ସ୍ଥାପନ ନିମନ୍ତେ ଅନେକଗୁଡ଼ିଏ ଫଳପ୍ରଦ ପଦକ୍ଷେପ ଗ୍ରହଣ କରିଛନ୍ତି । ଶକ୍ତି ଉତ୍ପାଦନକୁ ପୁନର୍ଗଠନ କରିବା ଓ ସଂଶୋଧନକୁ ସୁଦୃଢ଼ୀକରଣ କରିବା ଏବଂ ଏହାର ବିସ୍ତୃତ ବଣ୍ଟନ ସକାଶେ ରାଜ୍ୟରେ ବିଦ୍ୟୁତ୍ ଉତ୍ପାଦନ କରିବା ଓ ଏହାକୁ ଦକ୍ଷତାର ସହ ବଣ୍ଟନ କରିବା ପାଇଁ ଅଗ୍ରାଧିକାର ଭିତ୍ତିରେ କେତେକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି ।

୧୫ । ରାଜ୍ୟରେ ରାସ୍ତା ଓ ପୋଲ ଗଠନ ଏବଂ ଏହାର ପରିଚାଳନା ପାଇଁ ଗୁରୁତ୍ୱ ଆରୋପ କରାଯାଇଛି । ଅଷ୍ଟମ ଓ ନବମ ଯୋଜନା କାଳରେ ଓଡ଼ିଶାରେ ସମୁଦାୟ ୧,୬୨୪ କି: ମି: ଜାତୀୟ ରାଜପଥକୁ ୩,୧୧୪ କି: ମି:କୁ ବୃଦ୍ଧି କରିବା ପାଇଁ ଆଶା କରାଯାଉଛି । ଗୋପାଳପୁର–ବ୍ରହ୍ମପୁର–ରାୟପୁର ରାସ୍ତା, ପାଣିକୋଇଲିଠାରୁ କେନ୍ଦୁଝର ମଧ୍ୟ ଦେଇ ରାଉରକେଲା, ଭୁବନେଶ୍ୱରଠାରୁ ପୁରୀ ଏବଂ ବାଲେଶ୍ୱରଠାରୁ ଲକ୍ଷ୍ମଣନାଥ ଓ ଓଡ଼ିଶାର ଶେଷ ସୀମା ପର୍ଯ୍ୟନ୍ତ ରାସ୍ତାଗୁଡ଼ିକର ବିକାଶ କାର୍ଯ୍ୟ ହାତକୁ ନିଆଯାଇଛି ।

ଏହା ବ୍ୟତୀତ ମୋ ସରକାରର କେତେକ ଉଲ୍ଲେଖନୀୟ ସଫଳତା ହେଲା :–

(କ) ଚଳିତ ଆର୍ଥିକ ବର୍ଷର ଶେଷ ସୁଦ୍ଧା ଏସିଆନ ଉନ୍ନୟନ ବ୍ୟାଙ୍କର ୧୮୯.୩୫ କୋଟି ଟଙ୍କା ବ୍ୟୟ ଅଟକଳ ସହାୟତାରେ ସମ୍ବଲପୁରଠାରୁ ରାଉରକେଲା ପର୍ଯ୍ୟନ୍ତ ରାସ୍ତାର ପ୍ରଶସ୍ତି ଓ ସୁଦୃଢ଼ୀକରଣ କାର୍ଯ୍ୟ ସମ୍ପୂର୍ଣ୍ଣ ହେବ ବୋଲି ଆଶା କରାଯାଏ ।

(ଖ) ବିଶ୍ୱ ବ୍ୟାଙ୍କ୍ ସହାୟତାରେ ୪୪ କୋଟି ଟଙ୍କା ବ୍ୟୟ ଅଟକଳରେ ଗଞ୍ଜାମ ଜିଲ୍ଲାର ୬ ଗୋଟି ବୃହତ୍ ସେତୁର ନିର୍ମାଣ କାର୍ଯ୍ୟ ସମ୍ପନ୍ନ କରାଯାଇଛି ।

(ଗ) ସି: ଆର: ଏଫ୍: ସହାୟତାରେ ୧୫-୦୭ କୋଟି ଟଙ୍କା ବ୍ୟୟ ଅଟକଳରେ ସୋନପୁରଠାରେ ମହାନଦୀ ଉପରେ ସେତୁ ନିର୍ମାଣ କରାଯାଇଛି ।

(ଘ) କେନ୍ଦ୍ର ସରକାରଙ୍କ ସହାୟତାରେ ୧୫ କୋଟି ଟଙ୍କା ବ୍ୟୟ ଅଟକଳରେ ବଉଦ ନିକଟରେ ମହାନଦୀ ଉପରେ ଏକ ସେତୁ ନିର୍ମାଣ କରାଯାଇଛି ।

(ଙ) ବିଶ୍ୱ ବ୍ୟାଙ୍କ୍ ସହାୟତାରେ ୯୫ କୋଟି ଟଙ୍କା ବ୍ୟୟ ଅଟକଳରେ ୫ ନଂ ଜାତୀୟ ରାଜପଥର ରସୁଲଗଡ଼ଠାରୁ ଜଗତପୁର ପର୍ଯ୍ୟନ୍ତ ୪ ଲେନ୍ ବିଶିଷ୍ଟ କରାଯିବା ଏବଂ ଏହି ପଥରେ ଜଗତପୁରଠାରୁ ଚଣ୍ଡିଖୋଲ ପର୍ଯ୍ୟନ୍ତ ୩୩ କି: ମି: ରାସ୍ତାକୁ ୪ ଲେନ୍ ବିଶିଷ୍ଟ କରାଯିବା କାର୍ଯ୍ୟ ଚାଲିଛି ।

୧୬ । ଜନସାଧାରଣଙ୍କ ଯାତାୟତରେ ସୁବିଧାଲାଗି ମୋ ସରକାର କୋରାପୁଟ ଓ କଳାହାଣ୍ଡି ଜିଲ୍ଲାରେ ଏବଂ (କ) କଟକ/ ଭୁବନେଶ୍ୱରଠାରୁ ସମ୍ବଲପୁର ଦେଇ ରାଉରକେଲା, କେନ୍ଦୁଝର, ତାଳଚେର, ଦେବଗଡ଼; (ଖ) ବାଲେଶ୍ୱର/ବାରିପଦା– ରାଉରକେଲା; (ଗ) ଭୁବନେଶ୍ୱର–ଆସିକା; (ଘ) କଟକ/ଭୁବନେଶ୍ୱର–ବ୍ରହ୍ମପୁର; (ଙ) କଟକ/ଭୁବନେଶ୍ୱର–ବଲାଙ୍ଗୀର; (ଚ) କଟକ–ସମ୍ବଲପୁର ପାଇଁ ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମ ଦ୍ୱାରା ସ୍ୱତନ୍ତ୍ର ଭାବେ ବସ୍ ଚଳାଚଳ କରିବା ପାଇଁ ନିଷ୍ପତ୍ତି ନେଇଛନ୍ତି । ମାନ୍ୟବର ସଦସ୍ୟମାନେ ଜାଣି ଖୁସି ହେବେ ଯେ କୋରାପୁଟ–ରାୟଗଡ଼ା ରେଳ ସଂଯୋଗ କାର୍ଯ୍ୟ ଚଳିତ ବର୍ଷ ସମ୍ପୂର୍ଣ୍ଣ ହେବ । ୧୯୯୫ ମଧ୍ୟରେ ତାଳଚେର– ସମ୍ବଲପୁର ରେଳ ସଂଯୋଗ କାର୍ଯ୍ୟ ସମ୍ପୂର୍ଣ୍ଣ କରିବାକୁ ଲକ୍ଷ୍ୟ ରଖାଯାଇଛି ଏବଂ ରେଳବାଇ କର୍ତ୍ତୃପକ୍ଷ ଦୈତାରୀ–ବାଂଶପାଣି ରେଳ ସଂଯୋଗ କାର୍ଯ୍ୟ ହାତକୁ ନେଇଛନ୍ତି ।

୧୭। ଦେଶରେ ପର୍ଯ୍ୟଟନର ବିକାଶ ନିମନ୍ତେ ପ୍ରସ୍ତୁତ ହୋଇଥିବା ଜାତୀୟ କାର୍ଯ୍ୟକାରୀ ଯୋଜନାକୁ ଦୃଷ୍ଟିରେ ରଖି ମୋ ସରକାର
ମଧ୍ୟ ବଛା ବଛା ପର୍ଯ୍ୟଟନ କେନ୍ଦ୍ରଗୁଡ଼ିକର ଉନ୍ନତି ପାଇଁ ଅନୁରୂପ କାର୍ଯ୍ୟକାରୀ ଯୋଜନା ପ୍ରସ୍ତୁତ କରିଛନ୍ତି। ପୁରୀଠାରୁ କୋଣାର୍କ ମଧ୍ୟରେ
ଥିବା ୨,୨୨୭·୦୦ ଏକର ସମୁଦ୍ର ତଟକୁ ସ୍ୱତନ୍ତ୍ର ପର୍ଯ୍ୟଟନ ଅଞ୍ଚଳରେ ପରିଣତ କରିବା ପାଇଁ ଚିହ୍ନଟ କରାଯାଇଅଛି।

୧୮। ପ୍ରାଥମିକ ଶିକ୍ଷାକୁ ସାର୍ବଜନୀନ ବା ବ୍ୟାପକ କରିବା ପାଇଁ ମୋ ସରକାର ପ୍ରାଧାନ୍ୟ ଦେଉଛନ୍ତି ଏବଂ ଏହି କାର୍ଯ୍ୟ ୧୯୯୪–୯୫ ମସିହାରେ ମଧ୍ୟ ଚାଲୁ ରହିବ। "ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବା ଏବଂ ୨୦୦୦ ମସିହା ବେଳକୁ ପ୍ରାଥମିକ ଶିକ୍ଷାକୁ ସମସ୍ତଙ୍କ ନିକଟରେ ପହଞ୍ଚାଇବା କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ଏକ ସ୍ୱତନ୍ତ୍ର ପ୍ରକୋଷ୍ଠ ଗଠନ କରାଯାଇଅଛି। ରାଜ୍ୟରୁ ନିରକ୍ଷରତା ଦୂର କରିବା ପାଇଁ ପର୍ଯ୍ୟାୟକ୍ରମେ ସମସ୍ତ ଜିଲ୍ଲାକୁ ସମ୍ପୂର୍ଣ୍ଣ ସାକ୍ଷର ଯୋଜନାର ପରିସରଭୁକ୍ତ କରିବା ପାଇଁ ମୋ ସରକାର ସ୍ଥିର କରିଛନ୍ତି। ସମସ୍ତଙ୍କୁ ଶିକ୍ଷା ପ୍ରଦାନ କରିବା ପାଇଁ ରାଜ୍ୟରେ ୧୯୯୩–୯୪ ବର୍ଷରେ ୪୦୦ଟି ନୂତନ ନିମ୍ନ ପ୍ରାଥମିକ ଓ ୧୫୦ଟି ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଖୋଲିଅଛନ୍ତି। ଯେଉଁ ଗ୍ରାମଗୁଡ଼ିକରେ ବିଦ୍ୟାଳୟ ନାହିଁ, ସେହି ଗ୍ରାମର ବାଳିକା ସମେତ କାର୍ଯ୍ୟରତ ଛୋଟ ଛୋଟ ପିଲା ଏବଂ ଅଧାରୁ ପାଠ ପଢ଼ା ଛାଡ଼ିଥିବା ପିଲାମାନଙ୍କୁ ଶିକ୍ଷା ପ୍ରଦାନ କରିବା ପାଇଁ, ଉକ୍ତ ଗ୍ରାମରେ ଅଣ ଆନୁଷ୍ଠାନିକ ଶିକ୍ଷା କେନ୍ଦ୍ରମାନ ସ୍ଥାପନ କରାଯାଉଛି। ବର୍ତ୍ତମାନ ରାଜ୍ୟରେ ୧୩,୪୪୮ ଗୋଟି ଅଣଆନୁଷ୍ଠାନିକ କେନ୍ଦ୍ର କାର୍ଯ୍ୟ କରୁଅଛି। ୧୯୯୪–୯୫ ମସିହାରେ ମଧ୍ୟ ଏହି ପ୍ରଚେଷ୍ଟା ଚାଲୁ ରହିବ ଏବଂ ନୂତନ ବିଦ୍ୟାଳୟ ଓ ଶିକ୍ଷା କେନ୍ଦ୍ରମାନ ମଧ୍ୟ ସ୍ଥାପନ କରାଯିବ।

୧୮·୧। ରାଜ୍ୟର ବିଭିନ୍ନ ଜିଲ୍ଲାରେ ଥିବା ଗ୍ରାମ ପଞ୍ଚାୟତ, ଯେଉଁଠାରେ ଉଚ୍ଚ ବିଦ୍ୟାଳୟ ନାହିଁ ସେହି ପଞ୍ଚାୟତଗୁଡ଼ିକରେ ଥିବା ସରକାରୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ, ଉନ୍ନିତ ପ୍ରାଥମିକ ବିଦ୍ୟାଳୟ, ବିଦ୍ୟାଳୟଗୁଡ଼ିକୁ ଉନ୍ନିତ କରି ଉଚ୍ଚ ବିଦ୍ୟାଳୟରେ ପରିଣତ କରିଛନ୍ତି। ଏପରି ସର୍ବମୋଟ ରାଜ୍ୟରେ ୧୫୦ଟି ଉଚ୍ଚ ବିଦ୍ୟାଳୟ ସ୍ଥାପନ କରାଯାଇଛି। ଆସନ୍ତା ଆର୍ଥିକ ବର୍ଷରେ ମଧ୍ୟ ମୋ ସରକାର ନୂତନ ଉଚ୍ଚ ବିଦ୍ୟାଳୟ ଖୋଲିବା ପାଇଁ ଉଦ୍ୟମ ଅବ୍ୟାହତ ରଖିବେ। ଜାତୀୟ ମାର୍ଗଦର୍ଶୀ ନୀତିକୁ ଦୃଷ୍ଟିରେ ରଖି ସରକାରୀ ଉଦ୍ୟୋଗରେ ମହାବିଦ୍ୟାଳୟଗୁଡ଼ିକର ସମ୍ପ୍ରସାରଣକୁ ସୀମିତ କରାଯାଇଛି। ଉଚ୍ଚ ଶିକ୍ଷା ପାଇଁ ଉଦ୍ଦିଷ୍ଟ ବେସରକାରୀ ଓ ସରକାରୀ ଅନୁଷ୍ଠାନଗୁଡ଼ିକୁ ଯୋଗା ଯାଉଥିବା ସୁବିଧାକୁ ବୃଦ୍ଧି କରାଯାଇଅଛି। ୧୯୯୩–୯୪ ବର୍ଷରେ ରାଜ୍ୟରେ ୧୫ଟି ବେସରକାରୀ କନିଷ୍ଠ ମହାବିଦ୍ୟାଳୟ ଓ ୪ଟି ବେସରକାରୀ ସ୍ନାତକ ମହାବିଦ୍ୟାଳୟ ସ୍ଥାପନ କରିବା ପାଇଁ ଅନୁମତି ପ୍ରଦାନ କରାଯାଇଅଛି।

୧୯। ଜାତୀୟ ସ୍ୱାସ୍ଥ୍ୟ ନୀତି ଅନୁଯାୟୀ ୨୦୦୦ ମସିହା ସୁଦ୍ଧା ସ୍ୱାସ୍ଥ୍ୟ ସେବାକୁ ପ୍ରତ୍ୟେକ ଲୋକଙ୍କ ନିକଟରେ ପହଞ୍ଚାଇବା ପାଇଁ ଯେଉଁ ଲକ୍ଷ୍ୟ ରଖାଯାଇଅଛି, ତାକୁ ଦୃଷ୍ଟିରେ ରଖି ମୋ ସରକାର ବିଭିନ୍ନ ଚିକିତ୍ସା ପ୍ରଣାଳୀ, ଯଥା—ଡାକ୍ତରୀ ଚିକିତ୍ସା, ଆୟୁର୍ବେଦୀ ଚିକିତ୍ସା, ହୋମିଓପାଥି ଚିକିତ୍ସା ଓ ୟୁନାନୀ ଚିକିତ୍ସା କ୍ଷେତ୍ରରେ ସୁବିଧା ସୁଯୋଗ ଯୋଗାଇବା କାର୍ଯ୍ୟ ଆରମ୍ଭ କରିଛନ୍ତି। ସଂକ୍ରାମକ ରୋଗ ନିରାକରଣ, ମହାମାରୀ ପ୍ରତିଷେଧକ, କୁଷ୍ଠ ଓ ଗଳଗଣ୍ଡ ନିରାକରଣ କାର୍ଯ୍ୟ ଚାଲୁ ରହିବ। ୧୪ଟି ଉପଖଣ୍ଡ ଚିକିତ୍ସାଳୟକୁ ଜିଲ୍ଲା ସଦର ମହକୁମା ଚିକିତ୍ସାଳୟ ଭାବରେ ଘୋଷଣା କରାଯାଇଅଛି। ଅନ୍ଧତ୍ୱ ଦୂରୀକରଣ ପାଇଁ ବିଶ୍ୱ ବ୍ୟାଙ୍କ୍ ସହାୟତାରେ ୫୯ କୋଟି ଟଙ୍କାର ଏକ କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି। ଏହି କାର୍ଯ୍ୟକ୍ରମ ଆସନ୍ତା ଆର୍ଥିକ ବର୍ଷରୁ ୫ ବର୍ଷ ପାଇଁ କାର୍ଯ୍ୟକାରୀ ହେବ। ୧୯୯୩ ମସିହା ଅଗଷ୍ଟ ମାସରୁ କଟକସ୍ଥିତ ଏସ୍‌. ସି. ବି. ମେଡ଼ିକାଲ କଲେଜରେ ଏକ ଓପନ୍ ହାର୍ଟ ସର୍ଜରୀ ୟୁନିଟ୍ କାର୍ଯ୍ୟ ଆରମ୍ଭ କରିଅଛି।

୨୦। ଗ୍ରାମାଞ୍ଚଳରେ କଳିଙ୍ଗ କୁଟୀର ଯୋଜନାକୁ ବ୍ୟାପକ ଭାବେ କାର୍ଯ୍ୟକାରୀ କରିବା ପାଇଁ ହାତକୁ ନିଆଯାଇଅଛି। ପ୍ରତ୍ୟେକ
ନିର୍ବାଚନ ମଣ୍ଡଳୀରେ ପ୍ରଥମ ପର୍ଯ୍ୟାୟରେ ହୁଡ୍‌କୋ ଆର୍ଥିକ ସହାୟତାରେ ୮ କୋଟି ଟଙ୍କା ବ୍ୟୟରେ ୩୦୦ଟି ବାସଗୃହ ଯୋଗାଇ
ଦିଆଯିବ। ଏହି ଗୃହଗୁଡ଼ିକ ସ୍ୱଳ୍ପ ବ୍ୟୟ ଭିତ୍ତିକ କାରିଗରୀ କୌଶଳ ମାଧ୍ୟମରେ ନିର୍ମାଣ କରାଯିବ ଓ ଗୋଷ୍ଠୀ ପରିଚାଳନା ଦଳ ଗଠନ
କରାଯିବ। ସ୍ୱଳ୍ପ ବ୍ୟୟଭିତ୍ତିକ କାରିଗରୀ କୌଶଳ ପ୍ରବର୍ତ୍ତନ କରିବା ପାଇଁ ୧୭ଟି କେନ୍ଦ୍ର ସ୍ଥାପନ କରାଯାଉଛି।

୨୦·୧। ସହରାଞ୍ଚଳରେ ପାନୀୟ ଜଳ ଯୋଗାଣକୁ ପ୍ରତ୍ୟହ ୪୬୪ ନିୟୁତ ଲିଟରରୁ ୬୧୯ ନିୟୁତ ଲିଟରକୁ ବୃଦ୍ଧି କରିବା ପାଇଁ ୧୭[illegible]
କୋଟି ଟଙ୍କାର ଏକ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ହାତକୁ ନିଆଯାଇଛି।

୨୦·୨। ସହରାଞ୍ଚଳର ଦରିଦ୍ର ଲୋକମାନଙ୍କୁ ସହାୟତା ଯୋଗାଇ ଦେବା ନିମନ୍ତେ ଏନ୍‌. ଆର୍‌. ଆଇ./ଇ. ଆଇ. ୟୁ. ଏସ୍‌./ୟୁ. ବି.
ଏସ୍‌./ ୟୁ. ବି. ଏସ୍‌. ପି. ଆଦି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯାଇ ସ୍ୱାସ୍ଥ୍ୟ, ଶିକ୍ଷା, ଜନସ୍ୱାସ୍ଥ୍ୟ ଓ ଆୟ ସୃଷ୍ଟିକାରୀ ସୁବିଧା ସୁଯୋଗ ଯୋଗାଇ
ଦେବା କ୍ଷେତ୍ରରେ ଅଭିବୃଦ୍ଧି ଘଟିଛି। ଏକ ଆଦର୍ଶ ବସ୍ତି ବିକାଶ କାର୍ଯ୍ୟକ୍ରମ ଯଥା—'ସ୍ୱାନ ନଗର' ଭୁବନେଶ୍ୱରଠାରେ ଗଢ଼ି ଉଠିଛି। କଟକଠାରେ
ବସ୍ତିବାସୀଙ୍କ ଭିତ୍ତିଭୂମି ଓ ଜୀବନ ଧାରଣର ମାନ ବୃଦ୍ଧି ନିମନ୍ତେ ଓଡ଼ା ଦରିଆପାରୀ ଉନ୍ନୟନ ସଂସ୍ଥାର ୩୦ କୋଟି ଟଙ୍କା ସହାୟତାରେ
ଯୋଜନାମାନ କାର୍ଯ୍ୟକାରୀ ହେଉଛି।

୨୧। ମାନ୍ୟବର ସଦସ୍ୟମାନେ ଜାଣି ଖୁସି ହେବେ ଯେ, ରାଜ୍ୟର ଆଇନ ଶୃଙ୍ଖଳା ପରିସ୍ଥିତି ମୋଟାମୋଟି ଭାବେ ଶାନ୍ତିପୂର୍ଣ୍ଣ ଓ
ସନ୍ତୋଷଜନକ ରହିଛି। ରାଜ୍ୟରେ ଦଙ୍ଗାଗୋଳ ପରିସ୍ଥିତି ଆୟତ୍ତାଧୀନ ରହିଛି। ଜିଲ୍ଲାପାଳ ଓ ଆରକ୍ଷୀ ଅଧୀକ୍ଷକମାନେ ଜନସାଧାରଣଙ୍କୁ
ଉଚିତ ନ୍ୟାୟ ଦେବା ପାଇଁ ପ୍ରତି ମାସରେ ଥରେ ଲୋକମାନଙ୍କ ସହ ଖୋଲା ଆଲୋଚନା କରି ମତ ବିନିମୟ କରିବେ ଓ ବିଭିନ୍ନ ଆପତ୍ତି
ଅଭିଯୋଗଗୁଡ଼ିକର ଆପୋଷ ସମାଧାନ କରି ଜନସାଧାରଣଙ୍କୁ ଫଳପ୍ରଦ ନ୍ୟାୟ ପ୍ରଦାନ ନିମନ୍ତେ ମୋ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି।
ଉଚ୍ଚ ପଦାଧିକାରୀ, ବିଶିଷ୍ଟ ବ୍ୟକ୍ତିବିଶେଷଙ୍କୁ ପୁରୁଣାକାଳିଆ ବ୍ରିଟିଶ୍ ପରମ୍ପରାରେ ପ୍ରଚଳିତ ଅଭିବାଦନ ଜଣାଇବା ପ୍ରଥାକୁ ମୋ ସରକାର ତାଡ

ଦେବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଏଣିକି କେବଳ ଦେଶର ଶାସନ ମୁଖ୍ୟ, ବ୍ୟବସ୍ଥାପକ ସଭା ଓ ବିଚାର ବିଭାଗ ଯଥା:– ରାଷ୍ଟ୍ରପତି, ଉପ ରାଷ୍ଟ୍ରପତି, ରାଜ୍ୟପାଳ, ବାଚସ୍ପତି ଓ ମୁଖ୍ୟ ବିଚାରପତିମାନଙ୍କୁ ଅଭିବାଦନ ଜଣାଇବା ବ୍ୟବସ୍ଥା ରହିବ । ଏହି ପ୍ରଥାର ବିଲୋପ ଘଟିଲେ ବିପୁଳ ସଂଖ୍ୟାକ ପୋଲିସ ବାହିନୀ ଅଧିକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଅନ୍ୟତ୍ର ତୁଲାଇ ପାରିବେ ।

୨୨ । ମାନ୍ୟବର ସଦସ୍ୟମାନେ ଜାଣନ୍ତି ଯେ ମୋ ସରକାରର ନୀତି ଓ ଯୋଜନାଗୁଡ଼ିକ ଦରିଦ୍ର ଓ ବଞ୍ଚିତ ସମ୍ପ୍ରଦାୟର ଲୋକମାନଙ୍କ ସହାୟତା ନିମନ୍ତେ ଉଦ୍ଦିଷ୍ଟ ଯଦ୍ୱାରା ସେମାନଙ୍କ ଜୀବିକାର୍ଜନର ମାନ ବୃଦ୍ଧି ଘଟାଇବାରେ ସକ୍ଷମ ହେବ । ଏହି ନୀତିଗୁଡ଼ିକ, ଆଦିବାସୀ, ହରିଜନ, କୃଷକ, ପଛୁଆବର୍ଗ ଓ ମହିଳାମାନଙ୍କ କଲ୍ୟାଣ ନିମନ୍ତେ ଉତ୍ସର୍ଗୀକୃତ । ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ଉତ୍ତମ ଜୀବନଯାପନ ନିମନ୍ତେ ଅବିଶ୍ରାନ୍ତ ଚେଷ୍ଟା ଅବ୍ୟାହତ ରଖିବା ମୋ ସରକାରର ଲକ୍ଷ୍ୟ ଏବଂ ମୁଁ ଆଶାକରେ ଯେ ଏହି ମହନୀୟ ଗୃହର ମାନ୍ୟବର ସଦସ୍ୟବୃନ୍ଦ ମୋ ସରକାରର ବିକାଶୋନ୍ମୁଖୀ ଓ ଅଗ୍ରଗାମୀ ନୀତି ଓ କାର୍ଯ୍ୟକ୍ରମଗୁଡ଼ିକୁ ପୂର୍ଣ୍ଣସମର୍ଥନ ଓ ସହଯୋଗ କରିବେ ।

ଏତିକି କହି ମୁଁ ଆପଣମାନଙ୍କ ଆଲୋଚନା ନିମନ୍ତେ ଏବଂ ତାହାର ସଫଳତା କାମନା କରୁଛି ।

**ଜୟ ହିନ୍ଦ୍ ।**



ମହାପୁରୁଷ ହାଡ଼ିଦାସ ମହାବିଦ୍ୟାଳୟ ପରିସରରେ ଆୟୋଜିତ ଏକ ରକ୍ତଦାନ ଶିବିରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ।



# ସମବାୟ ପ୍ରଗତି – ଏକ ଦୃଷ୍ଟିପାତ

ଶ୍ରୀ ଅଦ୍ୱୈତ ପ୍ରସାଦ ସିଂହ

ଜାତୀୟ ଅର୍ଥ ନୀତିରେ ସମବାୟ ଏକ ଅପରିହାର୍ଯ୍ୟ ଅଙ୍ଗ ରୂପେ ସ୍ୱୀକୃତି ଲାଭ କରିଅଛି । କୃଷି ଉତ୍ପାଦନ ବୃଦ୍ଧି ଏବଂ ତାହାର ପ୍ରକ୍ରିୟାକରଣ, ବିପଣନ ତଥା ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ଯୋଗାଣ କ୍ଷେତ୍ରରେ ସମବାୟ ପ୍ରମୁଖ ଭୂମିକା ଗ୍ରହଣ କରି ଆସିଅଛି । ରାଜ୍ୟରେ ବିବିଧ ସଂସ୍ଥା ଦ୍ୱାରା ପରିଚାଳିତ ବ୍ୟାଙ୍କ୍ – ବ୍ୟବସାୟ କ୍ଷେତ୍ରରେ ସମବାୟ ବ୍ୟାଙ୍କଗୁଡ଼ିକର ସ୍ୱେଚ୍ଛାମୂଳକ ଯୋଗଦାନ ଏବଂ ଗଣତାନ୍ତ୍ରିକ ପରିଚାଳନା ହେତୁ ନିଜସ୍ୱ ବୈଶିଷ୍ଟ୍ୟ ରହିଅଛି ଏବଂ ଅଣକୃଷି, କୃଷି ତଥା ବିବିଧ ଆନୁଷଙ୍ଗିକ ଉଦ୍ଦେଶ୍ୟରେ ଋଣ ଯୋଗାଇ ଦେବାରେ ସେଗୁଡ଼ିକ ଉଲ୍ଲେଖନୀୟ ସଫଳତା ହାସଲ କରି ପାରିଛନ୍ତି ।

## ସଭ୍ୟ ପରିସର :

ରାଜ୍ୟରେ ମୋଟ ୩୬·୭୨ ଲକ୍ଷ କୃଷିଜୀବୀ ପରିବାର ମଧ୍ୟରୁ ୧୯୯୨–୯୩ ବର୍ଷ ସୁଦ୍ଧା ୩୨·୯୪ ଲକ୍ଷ ପରିବାର ବିଭିନ୍ନ ପ୍ରାଥମିକ କୃଷି ଋଣ ସମବାୟ ସମିତିମାନଙ୍କର ସଦସ୍ୟଭୁକ୍ତ ହୋଇଛନ୍ତି ଏବଂ ତନ୍ମଧ୍ୟରୁ ୭·୮୩ ଲକ୍ଷ ଆଦିବାସୀ ଓ ୫·୬୯ ଲକ୍ଷ ହରିଜନ ପରିବାର ଅନ୍ତର୍ଭୁକ୍ତ ଅଛନ୍ତି । ମାର୍ଚ୍ଚ ୧୯୯୪ ସୁଦ୍ଧା ସଭ୍ୟ ସଂଖ୍ୟା ୩୫ ଲକ୍ଷ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଅଛି ।

## ଋଣ ପ୍ରଦାନ :

ବର୍ତ୍ତମାନ ରାଜ୍ୟରେ ୨୨୩ ଗୋଟି ବୃହଦାକାର ବହୁମୁଖୀ ସମବାୟ ସମିତି (LAMPCS), ୭ ଗୋଟି କୃଷକ ସେବା ସମବାୟ ସମିତି ସମେତ ମୋଟ ୨,୮୧୭ ଗୋଟି ପ୍ରାଥମିକ କୃଷି ଋଣ ସମବାୟ ସମିତି କାର୍ଯ୍ୟ କରୁଛନ୍ତି । ଏହି ସମିତିଗୁଡ଼ିକ ୧୭ ଗୋଟି କେନ୍ଦ୍ର ସମବାୟ ବ୍ୟାଙ୍କ୍ ଜରିଆରେ ରାଜ୍ୟ ସମବାୟ ବ୍ୟାଙ୍କଠାରୁ ଋଣ ଗ୍ରହଣ କରି ସଭ୍ୟମାନଙ୍କୁ ବିଭିନ୍ନ ଉଦ୍ଦେଶ୍ୟରେ ସ୍ୱଳ୍ପ ଓ ମଧ୍ୟମକାଳୀନ ଋଣ ଯୋଗାଇ ଦେଉଥାନ୍ତି । ବିଗତ ୩ ବର୍ଷରେ ଖରିଫ୍ ଓ ରବି ଋତୁରେ କେନ୍ଦ୍ର ସମବାୟ ବ୍ୟାଙ୍କଗୁଡ଼ିକ ଦ୍ୱାରା କରାଯାଇଥିବା ଋଣ ଲଗାଣ ନିମ୍ନରେ ପ୍ରଦାନ କରାଗଲା । ବଳିତ ବର୍ଷ ସର୍ବାଧିକ ଋଣ ଲଗାଣ କରାଯାଇଛି :–

| ବର୍ଷ | ଲକ୍ଷ୍ୟ | ପୂର୍ତ୍ତି (ଟଙ୍କା କୋଟି ଅଙ୍କାରେ) |
|---|---|---|
| ଖରିଫ୍ ୧୯୯୨ | ୬୦·୦୦ | ୭୭·୨୨ |
| ଖରିଫ୍ ୧୯୯୩ | ୫୫·୦୦ | ୨୯·୧୩ |

| (୧) | (୨) | (୩) |
|---|---|---|
| ଖରିଫ୍ ୧୯୯୩ | ୬୦·୦୦ | ୬୯·୮୨ |
| ରବି ୧୯୯୨–୯୨ | ୨୦·୦୦ | ୨୨·୩୩ |
| ରବି ୧୯୯୨–୯୩ | ୨୧·୫୦ | ୧୬·୫୫ |
| ରବି ୧୯୯୩–୯୪ | ୨୮·୨୦ | ୯·୬୫ |

(୧୦ ଜାନୁଆରୀ, ୧୯୯୪ ସୁଦ୍ଧା)

## ଦୀର୍ଘ ମିଆଦି ଋଣ :

ଦୀର୍ଘ ମିଆଦି ଋଣ କ୍ଷେତ୍ରରେ ଓଡ଼ିଶା ରାଜ୍ୟ ସମବାୟ କୃଷି ଓ ଗ୍ରାମ୍ୟ ଉନ୍ନୟନ ବ୍ୟାଙ୍କ୍ ୫୨ ଗୋଟି ସମବାୟ କୃଷି ଓ ଗ୍ରାମ୍ୟ ଉନ୍ନୟନ ବ୍ୟାଙ୍କ୍ ମାଧ୍ୟମରେ ଜମି ଉନ୍ନୟନ, ଫଳ, ନଡ଼ିଆ, ମତ୍ସ୍ୟ ଚାଷ, ସେଚ କୂପ, ଟ୍ରାକ୍ଟର ଓ ପମ୍ପ୍ ଖର୍ଦ୍ଦି ପ୍ରଭୃତି ଉଦ୍ଦେଶ୍ୟରେ ଦୀର୍ଘକାଳୀନ ଋଣ ଯୋଗାଇ ଦେଉଅଛନ୍ତି ।

| ବର୍ଷ | ଧାର୍ଯ୍ୟ ଲକ୍ଷ୍ୟ | ପୂର୍ତ୍ତି (ଟଙ୍କା କୋଟିରେ) |
|---|---|---|
| ୧୯୯୨–୯୩ | ୮·୫୦ | ୬·୨୨ |
| ୧୯୯୩–୯୪ | ୧୫·୦୦ | ୧୫·୨୦ |

## ପୌର ସମବାୟ ବ୍ୟାଙ୍କ୍ :

ରାଜ୍ୟରେ ମୋଟ ୧୨ ଗୋଟି ପୌର ସମବାୟ ବ୍ୟାଙ୍କ୍ କାର୍ଯ୍ୟ କରୁଅଛନ୍ତି ଏବଂ ଏଗୁଡ଼ିକ ବିଭିନ୍ନ ଅଣକୃଷି ଋଣ ସମେତ ଛୋଟ ବ୍ୟବସାୟୀ, ହରିଜନ ତଥା ଆର୍ଥିକ ଦୁର୍ବଳ ଶ୍ରେଣୀର ସଭ୍ୟମାନଙ୍କୁ ଋଣ ସହାୟତା ଦେଉଥାନ୍ତି ।

| ବର୍ଷ | ଋଣ ଲଗାଣ (ଟଙ୍କା କୋଟିରେ) |
|---|---|
| ୧୯୯୨–୯୨ | ୬୪·୩୪ |
| ୧୯୯୨–୯୩ | ୭୨·୬୪ |

## ବ୍ୟବସାୟ ଉନ୍ନୟନ ଯୋଜନା :

କୃଷି ଋଣ ସମୀକ୍ଷା କମିଟି, ୧୯୮୯ ସୁପାରିଶକୁ ଭିତ୍ତି କରି ରାଜ୍ୟର ମୋଟ ୨,୮୧୭ ଗୋଟି ପ୍ରାଥମିକ କୃଷି ଋଣ ସମବାୟ ସମିତିମାନଙ୍କ ମଧ୍ୟରୁ ୨,୩୬୮ କୃଷି ଋଣ ସମବାୟ ସମିତିରେ ଅଷ୍ଟମ ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ ବ୍ୟବସାୟ ଉନ୍ନୟନ ଯୋଜନା ପ୍ରବର୍ତ୍ତନ କରାଯିବାକୁ ନିଷ୍ପତ୍ତି ନିଆଯାଇଛି । ସେଥି ମଧ୍ୟରୁ ୧୯୯୧-୯୨ ଏବଂ ୧୯୯୨-୯୩ ଆର୍ଥିକ ବର୍ଷରେ ଯଥାକ୍ରମେ ୨୩୯ ଏବଂ ୪୩୯ ଏହିପରି ମୋଟ ୬୭୮ ଗୋଟି କୃଷି ଋଣ ସମବାୟ ସମିତିରେ ଏହି ଯୋଜନା କାର୍ଯ୍ୟକାରୀ କରାଯାଇଅଛି । ୧୯୯୩-୯୪ ଆର୍ଥିକ ବର୍ଷରେ ୧,୬୯୦ କୃଷି ଋଣ ସମବାୟ ସମିତିରେ ଉକ୍ତ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ପ୍ରସ୍ତାବ ଅଛି । ଏହାଦ୍ୱାରା ପ୍ରାଥମିକ କୃଷି ସମବାୟ ସମିତିଗୁଡ଼ିକର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ହେବ ।

## ମିନି ବ୍ୟାଙ୍କ୍ :

ଗ୍ରାମ୍ୟ ସ୍ତରରେ ପୁଞ୍ଜି ସଂଗ୍ରହ ଉଦ୍ଦେଶ୍ୟରେ କୃଷି ଋଣ ସମବାୟ ସମିତି ଦ୍ୱାରା ମିନି ବ୍ୟାଙ୍କ୍ ଯୋଜନା କାର୍ଯ୍ୟକାରୀ କରାଯାଇଅଛି । ଉପରୋକ୍ତ ସମିତିରେ ମିନି ବ୍ୟାଙ୍କ୍ ଖୋଲିବା ପାଇଁ ରାଜ୍ୟ ସରକାର ଆର୍ଥିକ ସାହାଯ୍ୟ ଦେଇଥାନ୍ତି । ବିଗତ ୧୯୯୧-୯୨ ଓ ୧୯୯୨-୯୩ ଆର୍ଥିକ ବର୍ଷରେ ଯଥାକ୍ରମେ ୧୫୦ ଗୋଟି ଓ ୧୦ ଗୋଟି ମିନି ବ୍ୟାଙ୍କ୍ ଖୋଲିବା ପାଇଁ ଯଥାକ୍ରମେ ୦୫ ଲକ୍ଷ ଓ ୧ ଲକ୍ଷ ଟଙ୍କା ଅନୁଦାନ ଦିଆଯାଇଛି । ୧୯୯୩-୯୪ ଆର୍ଥିକ ବର୍ଷରେ ୪୩ ଗୋଟି ସମିତିକୁ ୫ ଲକ୍ଷ ଟଙ୍କା ଅନୁଦାନ ଦେବା ପାଇଁ ପ୍ରସ୍ତାବ ଅଛି । ଏ ପର୍ଯ୍ୟନ୍ତ ପ୍ରାୟ ୪୭୦ ଗୋଟି ମିନି ବ୍ୟାଙ୍କ୍ ଖୋଲାଯାଇଛି । ମିନି ବ୍ୟାଙ୍କ୍ ଜରିଆରେ ବିଗତ ୩ ବର୍ଷରେ ଉଲ୍ଲେଖନୀୟ ପୁଞ୍ଜି ସଂଗ୍ରହ କରାଯାଇଛି । ୧୯୯୦-୯୧ ବର୍ଷରେ ୧୦·୩୬ କୋଟି ଟଙ୍କା ପୁଞ୍ଜି ସଂଗ୍ରହ କରାଯାଇଥିବା ସ୍ଥଳେ ତାହା ୧୯୯୧-୯୨ ଓ ୧୯୯୨-୯୩ ବର୍ଷରେ ଯଥାକ୍ରମେ ୧୭·୨୨ କୋଟି ଏବଂ ୧୭·୮୨ କୋଟିକୁ ବୃଦ୍ଧି ପାଇଛି । ୧୯୯୩-୯୪ ବର୍ଷରେ ପୁଞ୍ଜି ସଂଗ୍ରହ ପାଇଁ ୨୫·୭୫ କୋଟି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

## ଶସ୍ୟ ବୀମା ଯୋଜନା :

୧୯୮୫ ମସିହା ଖରିଫ୍ ଋତୁଠାରୁ ବ୍ୟାପକ ଶସ୍ୟ ବୀମା ଯୋଜନା ଧାନ ଫସଲ ପାଇଁ କାର୍ଯ୍ୟକାରୀ ହେଉଅଛି । ୧୯୯୧ ଖରିଫ୍ ଋତୁରୁ ଚିନାବାଦାମ ଫସଲ ମଧ୍ୟ ଏହି ବୀମା ଅନ୍ତର୍ଭୁକ୍ତ ହୋଇଅଛି ।

ଏତଦ୍ ବ୍ୟତୀତ ସୋରିଷ ଚାଷକୁ ଚଳିତ ରବି ଋତୁରୁ ବୀମା ଅନ୍ତର୍ଭୁକ୍ତ କରାଯାଇଅଛି ଏବଂ ଏହି ଯୋଜନା ଫୁଲବାଣୀ ଜିଲ୍ଲାରେ କାର୍ଯ୍ୟକାରୀ କରାଯାଉଅଛି । ଏହାଦ୍ୱାରା ଚାଷୀମାନେ ବିପୁଳ ସଂଖ୍ୟାରେ ଉପକୃତ ହୋଇପାରିଛନ୍ତି ।

| ବର୍ଷ | ବୀମା ଅନ୍ତର୍ଭୁକ୍ତ ଚାଷୀଙ୍କ ସଂଖ୍ୟା | କ୍ଷତିପୂରଣ ପରିମାଣ (ଲକ୍ଷ ହିସାବରେ) | ଉପକୃତ ଚାଷୀଙ୍କ ସଂଖ୍ୟା |
|---|---|---|---|
| ଖରିଫ୍ ୧୯୯୧ | ୧,୨୨,୩୦୦ | ୬୯·୦୩ | ୧୨,୮୩୭ |
| ରବି ୧୯୯୧-୯୨ | ୪୦,୬୪୯ | ୦୪·୮୮ | ୫,୬୫୭ |
| ଖରିଫ୍ ୧୯୯୨ | .. | ୩୪୯·୧୪ | ୬୧,୫୭୭ |

## ମହିଳା ସମବାୟ :

ମହିଳାମାନଙ୍କର ସର୍ବାଙ୍ଗୀନ ବିକାଶ ନିମନ୍ତେ ସରକାରୀ ସହାୟତାକ୍ରମେ ରାଜ୍ୟରେ ମହିଳା ବିକାଶ କାର୍ଯ୍ୟକ୍ରମ ଏକ ଜନ ଆନ୍ଦୋଳନ ରୂପେ ମୁଣ୍ଡ ଟେକିଛି । ମହିଳାମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ସଂଶ୍ଲିଷ୍ଟ କରି ସେମାନଙ୍କୁ ଅର୍ଥନୈତିକ ପୁନର୍ଗଠନ କାର୍ଯ୍ୟକ୍ରମରେ ଯଥାଯଥ ଅଂଶ ଗ୍ରହଣ କରିବାରେ ସୁଯୋଗ ଦେବା ପାଇଁ ୧୨ ଗୋଟି କେନ୍ଦ୍ର ସମବାୟ ବ୍ୟାଙ୍କର ରାଜଧାନୀ ସମେତ ଅନ୍ୟ ଜିଲ୍ଲା ସଦର ମହକୁମା ସ୍ତରରେ ମହିଳା ସମବାୟ ଶାଖା ଖୋଲିବା ପାଇଁ ରାଜ୍ୟ ସରକାର ନିଷ୍ପତ୍ତି ନେଇଛନ୍ତି । ମହିଳା ବ୍ୟାଙ୍କଗୁଡ଼ିକୁ ଆର୍ଥିକ ସହାୟତା ପାଇଁ ରାଜ୍ୟ ସରକାର ଲକର ଓ ଆସବାବ ପାଇଁ ୧·୦୦ ଲକ୍ଷ, ପରିଚାଳନା ଏବଂ ରାଜ୍ୟ ବାହାରେ କମିଟି ସଭ୍ୟମାନଙ୍କ ଗସ୍ତ ଖର୍ଚ୍ଚ ପାଇଁ ଯଥାକ୍ରମେ ୦·୩୦ ଓ ୦·୧୦ ଲକ୍ଷ ଆକାରରେ ଅନୁଦାନ ମଞ୍ଜୁର କରିଛନ୍ତି ।

ଏ ପର୍ଯ୍ୟନ୍ତ ବିଭିନ୍ନ ସମବାୟ ବ୍ୟାଙ୍କମାନଙ୍କରେ ନିମ୍ନମତେ ମହିଳା ବ୍ୟାଙ୍କ୍ ଶାଖା କାର୍ଯ୍ୟ କରୁଅଛି ।

| ଜିଲ୍ଲା | ମହିଳା ଶାଖା ବ୍ୟାଙ୍କର ନାମ |
|---|---|
| (୧) ଗଞ୍ଜାମ | ବ୍ରହ୍ମପୁର ଓ ପାରଳାଖେମୁଣ୍ଡି |
| (୨) ଅନୁଗୋଳ | ଅନୁଗୋଳ |
| (୩) କେନ୍ଦୁଝର | କେନ୍ଦୁଝର |
| (୪) ପୁରୀ | ପୁରୀ |
| (୫) ଫୁଲବାଣୀ | ବୌଦ୍ଧ |
| (୬) ସମ୍ବଲପୁର | ସମ୍ବଲପୁର |
| (୭) କଟକ | କଟକ |
| (୮) ନୟାଗଡ଼ | ନୟାଗଡ଼ |

ଏହି ମହିଳା ବ୍ୟାଙ୍କଗୁଡ଼ିକ ସମ୍ପୂର୍ଣ୍ଣ ଭାବେ ମହିଳାମାନଙ୍କ ଦ୍ୱାରା ପରିଚାଳିତ ଏବଂ ବିଶେଷକରି ପ୍ରାଥମିକ ମହିଳା ସମବାୟ ସମିତିଗୁଡ଼ିକ ଏହି ବ୍ୟାଙ୍କ୍ ଦ୍ୱାରା ବୃତ୍ତିଗତ କାର୍ଯ୍ୟରେ ଅର୍ଥ ବିନିଯୋଗ କରିବା ପାଇଁ ସାହାଯ୍ୟ ପାଉଛନ୍ତି ।

## ଋଣ ଆଦାୟ (ସ୍ୱଳ୍ପ ଓ ମଧ୍ୟମକାଳୀନ) :

୧୯୯୨-୯୩ ବର୍ଷରେ ୪୧ ଶତାଂଶ କୃଷି ଋଣ ଆଦାୟ କରାଯାଇଥିଲା । ଚଳିତ ବର୍ଷ ଶତକଡ଼ା ୬୦ ଭାଗ ସର୍ବନିମ୍ନ ଋଣ ଆଦାୟ ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଋଣ ଆଦାୟ ଉପରେ

ଋଣ ନିୟୋଜନ ନିର୍ଭର କରେ । ତେଣୁ ଏହି ଋଣ ଆଦାୟ ଉପରେ ସବିଶେଷ ପ୍ରାଧାନ୍ୟ ଦିଆଯାଉଛି ।

### ଦୀର୍ଘ ମିଆଦୀ :

ଦୀର୍ଘ ମିଆଦୀ ଋଣ କ୍ଷେତ୍ରରେ ୧୯୯୧–୯୨ ବର୍ଷରେ ସମବାୟ କୃଷି ଓ ଗ୍ରାମ୍ୟ ଉନ୍ନୟନ ବ୍ୟାଙ୍କଗୁଡ଼ିକ ୪୨.୨ ଶତାଂଶ ଏବଂ ୧୯୯୨–୯୩ ବର୍ଷରେ ୨୫.୫ ଶତାଂଶ ଋଣ ଆଦାୟ କରିଛନ୍ତି । ଚଳିତ ବର୍ଷ ଏଠାରେ ମଧ୍ୟ ସର୍ବନିମ୍ନ ୬୦ ଶତାଂଶ ଋଣ ଆଦାୟ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

### ସମବାୟ ଆଇନ ସଂଶୋଧନ :

ସମବାୟ ସମିତିଗୁଡ଼ିକୁ ଅଧିକ ଲୋକାଭିମୁଖୀ ଓ ସେଗୁଡ଼ିକର ପରିଚାଳନା ବ୍ୟବସ୍ଥାକୁ ଅଧିକ ଗଣତାନ୍ତ୍ରିକ କରିବା ପାଇଁ ଓଡ଼ିଶା ସମବାୟ ଆଇନ, ୧୯୬୨କୁ ସଂଶୋଧନ କରାଯାଇଛି । ସମିତିର ସଭାପତିଙ୍କୁ ପୂର୍ବ ପ୍ରଚଳିତ ବିଧି ଅନୁଯାୟୀ ପରିଚାଳନା ପରିଷଦର ସଭ୍ୟମାନେ ନିର୍ବାଚିତ କରିବା ବ୍ୟବସ୍ଥା ପରିବର୍ତ୍ତେ ସମିତିର ସଭ୍ୟମାନେ ପ୍ରତ୍ୟକ୍ଷ ଭାବେ ନିର୍ବାଚିତ କରିବା ପାଇଁ ବନ୍ଦୋବସ୍ତ କରାଯାଇଅଛି । ପ୍ରାଥମିକ ସମିତିମାନଙ୍କର ପରିଚାଳନା ପରିଷଦରେ ଆଦିବାସୀ, ହରିଜନ, ମହିଳା ତଥା ଆର୍ଥିକ ଦୁର୍ବଳ ଶ୍ରେଣୀର ସଭ୍ୟମାନଙ୍କର ବାଧ୍ୟତାମୂଳକ ପ୍ରତିନିଧିତ୍ୱ ପାଇଁ ସଂଶୋଧିତ ଆଇନରେ ବ୍ୟବସ୍ଥା ରଖାଯାଇଅଛି ।

ସମିତିଗୁଡ଼ିକ ସରକାରଙ୍କ ଉପରେ ଅଧିକ ନିର୍ଭରଶୀଳ ନହୋଇ ନିଜ ନିଜର ବ୍ୟବସାୟ ଯୋଜନା ରୂପାୟନ ପୂର୍ବକ ଆତ୍ମ ନିର୍ଭରଶୀଳ ହେବା ନିମନ୍ତେ ସରକାରୀ ନିୟନ୍ତ୍ରଣ ଉଠାଇ ଦେଇ ସମିତି ପରିଚାଳନା କ୍ଷେତ୍ରରେ କମିଟିକୁ ଆର୍ଥିକ କ୍ଷମତା ପ୍ରଦାନ କରାଯାଇଛି । ଏହି ସବୁ ଯୁଗାନ୍ତକାରୀ ନୂତନ ବ୍ୟବସ୍ଥା ଯଥାଯଥ ଭାବରେ କାର୍ଯ୍ୟକାରୀ କରାଗଲେ ସମିତିଗୁଡ଼ିକର ପରିଚାଳନା ଦକ୍ଷତା ନିଶ୍ଚିତ ଭାବରେ ବୃଦ୍ଧି ପାଇବ । ଓଡ଼ିଶା, ସାରା ଦେଶରେ ଏଭଳି ପଦକ୍ଷେପ ନେଇଥିବା ଭାବେ ପ୍ରଥମ ରାଜ୍ୟ ।

### ନିର୍ବାଚନ ପରିଚାଳନା :

ଆମ ରାଜ୍ୟରେ ୩ ପର୍ଯ୍ୟାୟରେ ୬,୯୨୪ଟି ପ୍ରାଥମିକ ସମିତିରେ ସଂଶୋଧିତ ଆଇନ ଅନୁଯାୟୀ ନିର୍ବାଚନ ସମାପନ କରାଯାଇଅଛି । କେନ୍ଦ୍ରୀୟ ସମିତି କ୍ଷେତ୍ରରେ କେନ୍ଦ୍ର ସମବାୟ ବ୍ୟାଙ୍କ, ଜିଲ୍ଲା ସମବାୟ ସଙ୍ଘ ବ୍ୟତୀତ ୧୩୨ ଗୋଟି କେନ୍ଦ୍ର ସମବାୟ ସମିତିରେ ତା ୧–୨–୧୯୯୪ ରିଖଠାରୁ ତା ୨୦–୨–୧୯୯୪ ରିଖ ମଧ୍ୟରେ ନିର୍ବାଚନ କରିବା ପାଇଁ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । କେନ୍ଦ୍ର ସମବାୟ ବ୍ୟାଙ୍କ ଓ ଜିଲ୍ଲା ସମବାୟ ସଙ୍ଘଗୁଡ଼ିକର ନିର୍ବାଚନ ଯଥାକ୍ରମେ ତା୨୦–୪–୧୯୯୪ ରିଖଠାରୁ ତା ୩୦–୪–୧୯୯୪ ରିଖ ଓ ତା ୨୫–୬–୧୯୯୪ ରିଖଠାରୁ ତା ୩୦–୬–୧୯୯୪ ରିଖ ମଧ୍ୟରେ ସମାହିତ କରିବା ନିମନ୍ତେ ସ୍ଥିର ହୋଇଅଛି । ସମିତିର କମିଟି ଓ ସଭାପତି ନିର୍ବାଚନରେ ସଭ୍ୟମାନେ ଅଧିକତର ଅଂଶ ଗ୍ରହଣ କରୁଥିବା ବିଷୟ ସଭ୍ୟମାନଙ୍କ ସମିତି ପରିଚାଳନା ପ୍ରତି ଅଧିକ ସଚେତନତାର ସୂଚକ । ଏହା ସମିତିମାନଙ୍କର ପରିଚାଳନାଗତ ଦକ୍ଷତା ବିକାଶରେ ସହାୟକ ହେବା ଆଶା କରାଯାଏ । ଏହି ନିର୍ବାଚନ ସମ୍ପୂର୍ଣ୍ଣ ନୂତନ ଭାବେ ଓ ଶାନ୍ତି ଶୃଙ୍ଖଳାର ସହିତ ଅନୁଷ୍ଠିତ ହୋଇଛି । ଆଶା କରାଯାଏ ନୂତନ ଭାବେ ନିର୍ବାଚିତ ସଭାପତି ଓ ସଦସ୍ୟବୃନ୍ଦ ନିଷ୍ଠାର ସହିତ ସେମାନଙ୍କର କାର୍ଯ୍ୟ ପରିଚାଳନା କଲେ ସମବାୟ ସମିତି ସମୂହ ତଥା ରାଜ୍ୟର ଉତ୍ତରୋତ୍ତର ଉନ୍ନତି ନିଶ୍ଚିତ ।

ଜୟତୁ ସମବାୟ ।

ମନ୍ତ୍ରୀ,
ଜଙ୍ଗଲ ଓ ସମବାୟ ବିଭାଗ ।



ଓଡ଼ିଶା ରିପୋର୍ଟର୍ସ ଆସୋସିଏସନ୍‌ର କର୍ମକର୍ତ୍ତାମାନେ ସୂଚନା ଓ ଲୋକ ସମ୍ପର୍କ ବିଭାଗର ନିର୍ଦ୍ଦେଶକ ଶ୍ରୀ ପ୍ରଭସେନ ଜେନାଙ୍କ ସହ ସାକ୍ଷାତ ଆଲୋଚନା କରୁଛନ୍ତି ।



# ସମ୍ପର୍କର ନୂତନ ଦିଗନ୍ତ : ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ

**ଶ୍ରୀ ବୈରାଗୀ ଜେନା**

ଗଣତନ୍ତ୍ର ଶାସନର ମୂଳ ବୈଶିଷ୍ଟ୍ୟ ହେଉଛି ଯେ ଏହା ଲୋକମାନଙ୍କର ଲୋକମାନଙ୍କ ପାଇଁ ଓ ଲୋକମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଏକ ଶାସନ ପଦ୍ଧତି । ଏହି ଦୃଷ୍ଟିରୁ ସୂଚନା ଓ ଲୋକ ସମ୍ପର୍କ ବିଭାଗ ରାଜ୍ୟ ସରକାରଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ ଭାବେ କାର୍ଯ୍ୟ କରି ଆସିଛି । ସଂକ୍ଷେପରେ କହିବାକୁ ଗଲେ, ଏହା ସରକାର ଓ ଲୋକଙ୍କ ମଧ୍ୟରେ ସମ୍ପର୍କର ଏକ ସେତୁ ବନ୍ଧ । ରାଜ୍ୟ ସରକାର ଓ ପ୍ରଶାସନର ବିଭିନ୍ନ ଦିଗ, ଆଭିମୁଖ୍ୟ, ସ୍ୱପ୍ନ ଓ ସଫଳତା ସମ୍ପର୍କରେ ରାଜ୍ୟର ଜନସାଧାରଣଙ୍କୁ ସୂଚନା ଦିଆଯିବା ସହିତ ଜନସମ୍ପର୍କ ପ୍ରତିଷ୍ଠା କ୍ଷେତ୍ରରେ ଏହି ବିଭାଗ ଏକ ବଳିଷ୍ଠ ମାଧ୍ୟମର ଭୂମିକା ଗ୍ରହଣ କରି ଆସୁଛି । ପ୍ରଶାସନ ଓ ଜନସାଧାରଣଙ୍କ ମଧ୍ୟରେ ସମନ୍ୱୟ ରକ୍ଷା କରିବା ଏବଂ ସରକାରଙ୍କର ବିଭିନ୍ନ ଆଭିମୁଖ୍ୟ ସମ୍ପର୍କରେ ସାମାଜିକ ସଚେତନା ସୃଷ୍ଟି କରାଇବା ଏହି ବିଭାଗର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ । ଜନକଲ୍ୟାଣକାରୀ ସରକାରୀ ପରିକଳ୍ପନା ଓ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମରେ ଜନ ସହଯୋଗ ସୃଷ୍ଟି କରିବାରେ ଆମ ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ ବିଶେଷ ଭାବରେ ସାହାଯ୍ୟ କରିଆସୁଛି ।

ଶ୍ରୀ ବିଜୁ ପଟ୍ଟନାୟକ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିବା ପରେ ଜନସହଯୋଗ, ଜନସମ୍ପର୍କ ଓ ଜନସଚେତନତା ସୃଷ୍ଟି ଉପରେ ଅଧିକ ଗୁରୁତ୍ୱ ଆରୋପ କରି ଆସୁଛନ୍ତି । । ପ୍ରଶାସନର ମୁଖ୍ୟ ସ୍ରୋତ ସହିତ ଜନସାଧାରଣଙ୍କର ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ ପାଇଁ ସେ ବାରମ୍ବାର ପରାମର୍ଶ ଦେଇ ଆସିଛନ୍ତି । ତେଣୁ ତାଙ୍କ ଶାସନକାଳରେ ସୂଚନା ଓ ଲୋକ ସମ୍ପର୍କ ବିଭାଗର କାର୍ଯ୍ୟ ଦକ୍ଷତା ବୃଦ୍ଧି ଓ ବହୁ ନୂତନ କାର୍ଯ୍ୟକ୍ରମ ସାଧିତ ହୋଇପାରିଛି । ଏହା ଫଳରେ ପ୍ରତ୍ୟେକ ବର୍ଷ ଦଶଗୋଟି କରି ସୂଚନା କେନ୍ଦ୍ର ଓ ପାଠାଗାର ଖୋଲିବାର ନିଷ୍ପତ୍ତି କାର୍ଯ୍ୟକାରୀ କରାଯାଇ ପାରୁଛି । ପୂର୍ବରୁ ଏହ ସୁବିଧା କେବଳ କେତେକ ବଡ଼ ବଡ଼ ସହରରେ ସୀମିତ ଥିବା ବେଳେ ବର୍ତ୍ତମାନର ଲୋକପ୍ରିୟ ସରକାରଙ୍କ ଅମଳରେ ତହସିଲ୍ ଓ ସବ୍‌ଡିଭିଜନ ସଦର ମହକୁମାରେ ସୂଚନା କେନ୍ଦ୍ର ଓ ପାଠାଗାର ସ୍ଥାପନ କରୁଛନ୍ତି । ଏପରିକି ବ୍ଲକ୍ ସ୍ତରରେ, ଗ୍ରାମାଞ୍ଚଳରେ ମଧ୍ୟ ଏହି ସୁବିଧା, ଯୋଗାଇ ଦିଆଯାଉଛି ।

ସୂଚନା ଓ ଲୋକ ସମ୍ପର୍କ ବିଭାଗର ଏକ ସ୍ୱତନ୍ତ୍ର ସମ୍ବାଦ ସୂଚନା ଶାଖା ରହିଛି । ଏହା ବିଭିନ୍ନ ସମ୍ବାଦପତ୍ର, ସମ୍ବାଦ ସଂସ୍ଥା, ପ୍ରତିନିଧି ଦୂରଦର୍ଶନ ତଥା ଆକାଶବାଣୀର ସମ୍ବାଦ ବିଭାଗକୁ ସୂଚନା ଯୋଗାଇ ଦେଇଥାଏ । ଏହାଛଡ଼ା ସମ୍ବାଦପତ୍ରଗୁଡ଼ିକରେ ପ୍ରେସ୍ ବିଜ୍ଞପ୍ତି, ପ୍ରେସ୍ ହ୍ୟାଣ୍ଡ ଆଉଟ୍, ବ୍ୟାକ୍ ଗ୍ରାଉଣ୍ଡର ଏବଂ ଫିଚରମାନ ପ୍ରକାଶ ନିମିତ୍ତ ଯୋଗାଇ ଥା'ନ୍ତି । ରାଉରକେଲା, ବ୍ରହ୍ମପୁର, ବାଲେଶ୍ୱର, ପୁରୀଠାରେ ଥିବା ସୂଚନା କେନ୍ଦ୍ରଗୁଡ଼ିକରେ, ନୂଆଦିଲ୍ଲୀର ଓଡ଼ିଶା ଭବନ, ଭୁବନେଶ୍ୱରସ୍ଥିତ ରାଜଭବନ, ମୁଖ୍ୟମନ୍ତ୍ରୀଙ୍କ ନିବାସ କାର୍ଯ୍ୟାଳୟ ଓ ସଚିବାଳୟ କାର୍ଯ୍ୟାଳୟ, ରାଜ୍ୟ ସୂଚନା କେନ୍ଦ୍ର ତଥା ଲୋକ ସମ୍ପର୍କ ବିଭାଗରେ ଟେଲିପ୍ରିଣ୍ଟର କେନ୍ଦ୍ରମାନ ସ୍ଥାପନ କରାଯାଇଛି । କେତେକ କାର୍ଯ୍ୟାଳୟକୁ ନ୍ୟୁଜ୍ ସ୍ଥାନର ସୁବିଧା ଯୋଗାଇ ଦିଆଯାଇଛି । ରାଜ୍ୟରେ କାର୍ଯ୍ୟ କରୁଥିବା ଦୁଃସ୍ଥ ସାମ୍ବାଦିକ ଓ ମୃତ ସାମ୍ବାଦିକମାନଙ୍କର ପରିବାରର କଲ୍ୟାଣ ନିମିତ୍ତ ଏହି ବିଭାଗ ପକ୍ଷରୁ ୫ ଲକ୍ଷ ଟଙ୍କା ମୂଳଧନ ଥାଇ ସାମ୍ବାଦିକ କଲ୍ୟାଣ ପାଣ୍ଠି ଗଠନ କରାଯାଇଛି । ମାଗଣାରେ ବସ୍‌ରେ ଯାତାୟତ ନିମନ୍ତେ ସାମ୍ବାଦିକମାନଙ୍କ ପାଇଁ ସୁବିଧା ବ୍ୟବସ୍ଥା କରାଯାଇଛି । ସରକାରୀ କାର୍ଯ୍ୟକ୍ରମରେ ଅଂଶଗ୍ରହଣ ଓ ଉନ୍ନୟନମୂଳକ ପରିକଳ୍ପନାଗୁଡ଼ିକର ପରିଦର୍ଶନ ପାଇଁ ସାମ୍ବାଦିକମାନଙ୍କୁ ଯାତାୟତର ସୁବିଧା ଦିଆଯାଇଛି ।

"ଉତ୍କଳ ପ୍ରସଙ୍ଗ" ଓ "ଓଡ଼ିଶା ରିଭ୍ୟୁ" ପତ୍ରିକା ଦୁଇଟି ଏହି ବିଭାଗ ଆନୁକୂଲ୍ୟରେ, ପ୍ରତିମାସରେ ପ୍ରକାଶ ପାଇଥାଏ । ଏଥିରେ ଓଡ଼ିଶାର ସାମାଜିକ, ଅର୍ଥନୈତିକ ପ୍ରଗତି ସହିତ କଳା, ସାହିତ୍ୟ ଓ ସଂସ୍କୃତି ସମ୍ପର୍କିତ ଲେଖାଗୁଡ଼ିକ ପରିବେଷଣ କରାଯାଏ । ଆମର ପ୍ରିୟ ମୁଖ୍ୟମନ୍ତ୍ରୀ ବିଜୁବାବୁ ଜଣେ ସଂସ୍କୃତି ସଚେତନ, ଐତିହ୍ୟ ପ୍ରେମୀ ହୋଇଥିବାରୁ ପ୍ରତିଭା ପୂଜା, ସଂସ୍କୃତି ଓ ଐତିହ୍ୟର ପ୍ରସାର ତଥା ଭବିଷ୍ୟତ ବଂଶଧରମାନଙ୍କ ମନରେ ଜାତୀୟତାବୋଧ ସୃଷ୍ଟି କରାଇବା ଉଦ୍ଦେଶ୍ୟରେ ଉପରୋକ୍ତ ପତ୍ରିକା ଦୁଇଟିର ଭୂମିକା ଉପରେ ଗୁରୁତ୍ୱ ଦେଇଛନ୍ତି । ତେଣୁ ସାଧାରଣତନ୍ତ୍ର ଦିବସ, ସ୍ୱାଧୀନତା ଦିବସ, ଉତ୍କଳ ଦିବସ ଓ ରଥ ଯାତ୍ରା ଉପଲକ୍ଷେ ଏହି ପତ୍ରିକାର ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ ପାଇବା ସହିତ ପଞ୍ଚସଖା କବି ଜଗନ୍ନାଥ ଦାସ, କବି ଜୟଦେବ, ବ୍ୟାସକବି ଫକୀର ମୋହନ ସେନାପତି, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଇତ୍ୟାଦି ସାରସ୍ୱତ ସ୍ରଷ୍ଟାମାନଙ୍କ ସମ୍ପର୍କରେ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କରାଯାଇ ଜନସାଧାରଣଙ୍କ ସମାଦର ଲାଭ କରିପାରିଛି ।

ପ୍ରତିଭା ପୂଜା ଓ ବିସ୍ମୃତ ଐତିହାସିକ କୀର୍ତ୍ତିରାଜିର ସ୍ମୃତିରକ୍ଷା ପାଇଁ ମୁଖ୍ୟମନ୍ତ୍ରୀଙ୍କ ନେତୃତ୍ୱରେ ଐତିହ୍ୟ ଓ ପରମ୍ପରାର

ପୁନର୍ଜାଗରଣର ଏକ ନୂତନ ପୃଷ୍ଠା ଆରମ୍ଭ ହୋଇଛି । ଏହି ବିଭାଗ ତରଫରୁ ପ୍ରତିବର୍ଷ ଗାନ୍ଧୀ ଜୟନ୍ତୀ, ସୁରେନ୍ଦ୍ର ସାଏ ଜୟନ୍ତୀ, ଧରଣୀଧର ଭୂୟାଁ ଜୟନ୍ତୀ, ପଣ୍ଡିତ ନୀଳକଣ୍ଠ ଜୟନ୍ତୀ, ଗୋଦାବରୀଶ ଜୟନ୍ତୀ, ଶହୀଦ୍ ଲକ୍ଷ୍ମଣ ନାୟକ ଜୟନ୍ତୀ, ମହାରାଜା ରାମଚନ୍ଦ୍ର ଭଞ୍ଜଦେବ ଜୟନ୍ତୀ, ବକ୍ସି ଜଗବନ୍ଧୁ ଜୟନ୍ତୀ, ରଘୁ ଦିବାକର ଶହୀଦ୍ ଦିବସ, ବାଜି ରାଉତ ଶହୀଦ୍ ଦିବସ, ଶହୀଦ୍ ଦିବସ, ସଦ୍‌ଭାବନା ଦିବସ, ସଂକଳ୍ପ ଦିବସ, ଜାତୀୟ ସଂହତି ଦିବସ, ଉତ୍କଳ ଦିବସ, ସ୍ୱାଧୀନତା ଦିବସ ଓ ଉତ୍କଳ ଦିବସ ପାଳନ କରାଯାଏ । ବିଗତ ବର୍ଷଠାରୁ ଏହି ବିଭାଗ ଆନୁକୂଲ୍ୟରେ ସ୍ୱର୍ଗୀ ଖୁଣ୍ଟିଆ ଓ ଚକରା ବିଶୋଇ ଭଳି ବିସ୍ମୃତ କୃତି ସନ୍ତାନମାନଙ୍କୁ ପୁନର୍ବାର ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ଲୋକଲୋଚନକୁ ଅଣାଯାଇଛି । ମହିଳାମାନଙ୍କ ବିକାଶ ନିମିତ୍ତ ସଂକଳ୍ପବଦ୍ଧ ରାଜ୍ୟ ସରକାରଙ୍କ ଆଭିମୁଖ୍ୟକୁ ଦୃଷ୍ଟିରେ ରଖି "ଉତ୍କଳ ପ୍ରସଙ୍ଗର" ଏକ "ମହିଳା ବିଶେଷାଙ୍କ" ଓ ଓଡ଼ିଶାର ଗୌରବମୟ ନୌ-ବାଣିଜ୍ୟ ପରମ୍ପରାର ପ୍ରଚାର ନିମିତ୍ତ "ବାଲିଯାତ୍ରା ବିଶେଷାଙ୍କ" ପ୍ରକାଶ ପାଇଛି । ଅତଏବ "ଉତ୍କଳ ପ୍ରସଙ୍ଗ" କେବଳ ସରକାରଙ୍କର ମୁଖପତ୍ର ହୋଇ ରହିନାହିଁ ବରଂ ଓଡ଼ିଶାର ଜନଜୀବନର ପ୍ରତିଚ୍ଛବି ବହନ କରିପାରିଛି ।

ରାଜ୍ୟ ସରକାରଙ୍କର ଯୋଜନା ଓ ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ଜନସାଧାରଣଙ୍କୁ ଅବହିତ କରିବା ଲକ୍ଷ୍ୟ ନେଇ ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗରେ ଦୂରଦର୍ଶନ ୟୁନିଟ୍, ଚଳଚ୍ଚିତ୍ର ୟୁନିଟ୍ ଓ ଫଟୋ ୟୁନିଟ୍‌କୁ ଅଧିକ ସକ୍ରିୟ ଓ ଶକ୍ତିଶାଳୀ କରାଯାଇଛି । ଅତ୍ୟାଧୁନିକ ଯନ୍ତ୍ରପାତିର ବ୍ୟବସ୍ଥା ସାଙ୍ଗକୁ ସମାଚାର, ଚଳଚ୍ଚିତ୍ର ଓ ପ୍ରାମାଣିକ ଚଳଚ୍ଚିତ୍ରର ପ୍ରସ୍ତୁତି ଉପରେ ପ୍ରାଧାନ୍ୟ ଦିଆଯାଇଛି । ଓଡ଼ିଶାର ଗ୍ରାମାଞ୍ଚଳରେ ପ୍ରଚାର କାର୍ଯ୍ୟକ୍ରମକୁ ସଫଳ ଓ ତ୍ୱରାନ୍ୱିତ କରିବା ପାଇଁ ବ୍ରହ୍ମପୁର, କଟକ ଓ ସମ୍ବଲପୁର ରାଜସ୍ୱ ଡିଭିଜନ୍ ଅଧୀନରେ ତିନୋଟି ଉପନିର୍ଦ୍ଦେଶକ ପଦବୀ ସୃଷ୍ଟି କରାଯାଇ ତିନିଜଣ ଉପନିର୍ଦ୍ଦେଶକଙ୍କୁ ସ୍ୱତନ୍ତ୍ର ଭାବେ ନିଯୁକ୍ତି ଦିଆଯାଇଛି । ରାଜ୍ୟ ବାହାରେ କଲିକତାଠାରେ ମଧ୍ୟ ଏକ ସୂଚନା କେନ୍ଦ୍ର ଖୋଲା ଯାଇଛି । ଗ୍ରାମ ପଞ୍ଚାୟତମାନଙ୍କୁ ଓ ପ୍ରାଥମିକ ବିଦ୍ୟାଳୟଗୁଡ଼ିକୁ ରିହାତି ଦରରେ ଟି.ଭି. ସେଟ୍ ଯୋଗାଇ ଦିଆଯାଇଛି । ପାଠକମାନଙ୍କର ସୁବିଧା ପାଇଁ ବହୁ ସଂଖ୍ୟକ ଉପାଦେୟ ପୁସ୍ତକ ସୂଚନା ପାଠାଗାରମାନଙ୍କୁ ଯୋଗାଇ ଦିଆଯାଇଛି । ଭୁବନେଶ୍ୱରଠାରେ କେନ୍ଦ୍ର ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ଟି.ଭି. ଷ୍ଟୁଡ଼ିଓ ଓ ତାଲିମ୍ କେନ୍ଦ୍ର ପାଇଁ ରାଜ୍ୟ ସରକାର ଆବଶ୍ୟକୀୟ ଜମି ଯୋଗାଇ ଦେଇଛନ୍ତି । ସରକାରଙ୍କ ଉନ୍ନୟନମୂଳକ କାର୍ଯ୍ୟକ୍ରମଗୁଡ଼ିକର ସଫଳ ପ୍ରଚାର ପାଇଁ ଏହି ବିଭାଗ ଆନୁକୂଲ୍ୟରେ ରାଜ୍ୟର ଗ୍ରାମାଞ୍ଚଳରେ ପାଲା, ଦାସକାଠିଆ, ଘୋଡ଼ାନାଚ, ଭୁଆଣି, ସଙ୍ଗୀତ ଏବଂ ସୁଆଙ୍ଗ ନାଚ ଇତ୍ୟାଦି ଲୋକନୃତ୍ୟ ପରିବେଷଣ କରାଯାଇଛି । କ୍ଷେତ୍ର ପ୍ରଚାର ସଂସ୍ଥା ମାଧ୍ୟମରେ ରାଜ୍ୟ ସରକାରଙ୍କର ନୀତି ନିୟମ ଓ ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟକ୍ରମ ସମ୍ପର୍କରେ ଜନସାଧାରଣଙ୍କୁ ସଚେତନ ଓ ଅବଗତ କରାଇବା ଉଦ୍ଦେଶ୍ୟରେ ରାଜ୍ୟରେ ତଥା ରାଜ୍ୟ ବାହାରେ ବହୁ ପ୍ରଦର୍ଶନୀ ଅନୁଷ୍ଠିତ ହୋଇଛି ।

ଓଡ଼ିଶାର ଗ୍ରାମାଞ୍ଚଳ ଆଦିବାସୀମାନଙ୍କୁ ଦୂରଦର୍ଶନ ଓ ଆକାଶବାଣୀ ସେବାର ସୁଯୋଗ ପ୍ରଦାନ ନିମିତ୍ତ ରାଜ୍ୟ ସରକାର ସମ୍ବଲପୁର, ରାଉରକେଲା ଓ ବାଲେଶ୍ୱରଠାରେ ଥିବା ରିଲେ ଟ୍ରାନ୍ସମିଟରକୁ ଅଧିକ ଶକ୍ତିସମ୍ପନ୍ନ କରାଇଛନ୍ତି । ପୁରୀଠାରେ ଏକ ନିମ୍ନ ଶକ୍ତିସମ୍ପନ୍ନ ଟ୍ରାନ୍ସମିଟର ସ୍ଥାପନ କରାଯାଇ ମହାପ୍ରଭୁ ଜଗନ୍ନାଥଙ୍କର ରଥଯାତ୍ରା ବିବରଣୀର ସିଧାସଳଖ ପ୍ରସାରଣ କାର୍ଯ୍ୟ କରାଯାଇ ପାରିଛି । ଆଗାମୀ ଯୋଜନା କାଳରେ ଆଉ କେତେକ ନିମ୍ନ ଶକ୍ତିସମ୍ପନ୍ନ ଟ୍ରାନ୍ସମିଟର ପ୍ରତିଷ୍ଠା ପାଇଁ କେନ୍ଦ୍ର ସରକାରଙ୍କୁ ଅନୁରୋଧ କରାଯାଇଛି । ତିନୋଟି ଉଚ୍ଚ ଶକ୍ତିସମ୍ପନ୍ନ ଓ ଏକୋଇଶିଟି ନିମ୍ନ ଶକ୍ତିସମ୍ପନ୍ନ ଟେଲିଭିଜନ ଟ୍ରାନ୍ସମିଟର କାର୍ଯ୍ୟ କରୁଥିବା ହେତୁ ରାଜ୍ୟ ଜନସଂଖ୍ୟାର ୭୭ ଶତାଂଶ ଉପକୃତ ହୋଇପାରିଛନ୍ତି । ଆଦିବାସୀ ଅଧ୍ୟୁଷିତ କଳାହାଣ୍ଡି, ଫୁଲବାଣୀ, ବଲାଙ୍ଗୀର, ସମ୍ବଲପୁର, ଢେଙ୍କାନାଳ ଇତ୍ୟାଦି ଜିଲ୍ଲାର ଶିକ୍ଷାନୁଷ୍ଠାନଗୁଡ଼ିକୁ ଟି.ଭି. ସେଟ୍ ଯୋଗାଇ ଦିଆଯାଇଛି ।

ଏହି ବିଭାଗ ପକ୍ଷରୁ ରାଜ୍ୟର ବିଭିନ୍ନ ପ୍ରେକ୍ଷାଳୟ ଓ ବିଭାଗୀୟ ଦୃଶ୍ୟ-ଶ୍ରାବ୍ୟ ୟୁନିଟ୍ ମାଧ୍ୟମରେ ସମାଚାର ତଥା ପ୍ରାମାଣିକ ଚଳଚ୍ଚିତ୍ର ପ୍ରଦର୍ଶନର ବ୍ୟବସ୍ଥା କରାଯାଇଛି । ଏକ ଚଳଚ୍ଚିତ୍ର ନିର୍ମାଣ ଉପଦେଷ୍ଟା କମିଟି ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଗଠନ କରାଯାଇଛି । ଏହି ବିଭାଗ ଦ୍ୱାରା ପ୍ରାମାଣିକ ଚଳଚ୍ଚିତ୍ର ନିର୍ମାଣ ପାଇଁ ଏକ ସ୍ୱୀକୃତିପ୍ରାପ୍ତ ମଣ୍ଡଳୀ ରହିଛି । ଏହାଛଡ଼ା କଳା ଧଳା ଫଟୋ ଲାବୋରଟୋରୀ ବ୍ୟତୀତ ଏକ ରଙ୍ଗୀନ୍ ଫଟୋ ଲାବୋରଟୋରୀ ଏହି ବିଭାଗରେ ପ୍ରତିଷ୍ଠା କରାଯାଇଅଛି । ଏହି ବିଭାଗ ଅଧୀନରେ ଏକ ପଲ୍ଲୀଶ୍ରୋତା ମଣ୍ଡଳୀ ଶାଖା ଆଲୋଚନା ମାଧ୍ୟମରେ କୃଷି, ସ୍ୱାସ୍ଥ୍ୟ, ପରିବାର କଲ୍ୟାଣ ଓ ପ୍ରୌଢ଼ ଶିକ୍ଷା ଇତ୍ୟାଦିର ବିଭିନ୍ନ ଦିଗ ଉପରେ ଜନସାଧାରଣଙ୍କୁ ପରାମର୍ଶ ଦେଉଛନ୍ତି ।

ରାଜ୍ୟରେ ସ୍ୱୀକୃତିପ୍ରାପ୍ତ ସାମ୍ବାଦିକମାନଙ୍କର ସୁବିଧା ଓ ସୁଯୋଗ ପାଇଁ ଏକ ପ୍ରେସ୍ ଏକାଡେମୀ ପ୍ରତିଷ୍ଠାର ପ୍ରସ୍ତାବ ରଖାଯାଇ ଏଥି ନିମିତ୍ତ ଯୋଜନା ଅଟକଳରେ ବ୍ୟୟ ବରାଦ କରାଯାଇଛି ।

ଓଡ଼ିଶାରେ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଲୋକପ୍ରିୟ ସରକାର ଗଠିତ ହେବା ପରଠାରୁ ଅନ୍ୟାନ୍ୟ ବିଭାଗ ଭଳି ରାଜ୍ୟ ସୂଚନା ଓ ଲୋକସମ୍ପର୍କ ବିଭାଗର ବିକାଶ ସାଧିତ ହେବା ସହିତ ଏ କ୍ଷେତ୍ରରେ ଯେ ବହୁ ନୂତନ ଦିଗନ୍ତ ଉନ୍ମୋଚିତ ହୋଇଛି, ଏଥିରେ ସନ୍ଦେହର ଅବକାଶ ନାହିଁ ।

---

ମନ୍ତ୍ରୀ,
ସୂଚନା ଓ ଲୋକ ସମ୍ପର୍କ ବିଭାଗ ।



# ଓଡ଼ିଶାରେ ଗ୍ରାମ୍ୟ ପୁନର୍ଗଠନର ନୂତନ ଦିଗନ୍ତ

ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ

ଗାନ୍ଧିଜୀଙ୍କ ଭାଷାରେ ''India lives in its villages'' । ବିଶେଷତଃ ଓଡ଼ିଶା କହିଲେ ଓଡ଼ିଶାର ଅଗଣିତ ଗାଁ, ତାହାର ବନ, ପାହାଡ଼, ପର୍ବତ, ନଦୀ, ଝରଣା ଏବଂ ତା' କୋଳରେ ରହିଥିବା କୋଟି କୋଟି ଗ୍ରାମବାସୀଙ୍କୁ ହିଁ ବୁଝାଏ । କିନ୍ତୁ ସ୍ୱାଧୀନତା ପ୍ରାପ୍ତିର ବହୁ ବର୍ଷ ପରେ ମଧ୍ୟ ବହୁ ଯୋଜନା ପ୍ରଣିତ ହୋଇ ଶତ ସହସ୍ର କୋଟି ଟଙ୍କା ବିନିଯୋଗ ହୋଇଥିଲେ ବି ଓଡ଼ିଶାର ଗ୍ରାମାଞ୍ଚଳର ଜନସାଧାରଣଙ୍କର ବିକାଶ ଯେତିକି ତ୍ୱରାନ୍ୱିତ ହେବା କଥା ତାହା ହୋଇ ପାରିନାହିଁ । ଯୋଜନାରେ ତ୍ରୁଟି ଏବଂ ଗ୍ରାମାଞ୍ଚଳ ଜନସାଧାରଣଙ୍କ ସମସ୍ୟା ପ୍ରତି ସମ୍ବେଦନଶୀଳତାର ଅଭାବ ବୋଧହୁଏ ଏହାର ଅନ୍ୟତମ କାରଣ ହୋଇଥାଇ ପାରେ । ୧୯୯୦ ମସିହାରେ ଓଡ଼ିଶାର ଯୁଗ ପୁରୁଷ ତଥା କୋଟି କୋଟି ଓଡ଼ିଶାବାସୀଙ୍କର ଆଶା ଓ ସମ୍ଭାବନାର ପ୍ରତୀକ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଜନତା ଦଳ ସରକାର ଶାସନ ଭାର ହାତକୁ ନେବା ପରେ ଆଭିମୁଖ୍ୟରେ ପରିବର୍ତ୍ତନ ଘଟିଛି, ଚିନ୍ତାର କ୍ଷେତ୍ରକୁ ବ୍ୟାପକ କରାଯାଇଛି ଏବଂ ଏକ ସୁଖୀ, ସମୃଦ୍ଧ ଓଡ଼ିଶା ଗଠନର ନୂତନ ପ୍ରକ୍ରିୟା ଆରମ୍ଭ ହୋଇଛି । ଏହି ପ୍ରକ୍ରିୟାକୁ ତ୍ୱରାନ୍ୱିତ ଓ ସଫଳ କରିବା ପାଇଁ ସ୍ୱତନ୍ତ୍ର ଭାବରେ ଗ୍ରାମ୍ୟ ଉନ୍ନୟନ ବିଭାଗ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ନିଷ୍ପତ୍ତି କ୍ରମେ ଗଠିତ ହୋଇଅଛି ।

ଗ୍ରାମାଞ୍ଚଳ ଜନସାଧାରଣଙ୍କର ଅର୍ଥନୈତିକ ବିକାଶ ପାଇଁ ଅନ୍ୟାନ୍ୟ ବିଷୟମାନଙ୍କ ମଧ୍ୟରୁ ଯେଉଁ ୪ଟି ସର୍ବନିମ୍ନ ଆବଶ୍ୟକତା ରହିଛି ସେଗୁଡ଼ିକ ହେଲା ଯୋଗାଯୋଗ, କୃଷି ପାଇଁ କ୍ଷୁଦ୍ର ଓ ମଧ୍ୟମ ତଥା ଜଳସେଚନ ଏବଂ ବିଶୁଦ୍ଧ ପାନୀୟ ଜଳ । ନୂତନ ଭାବରେ ଗଠିତ ଗ୍ରାମ୍ୟ ଉନ୍ନୟନ ବିଭାଗ ଉପରେ ଏ ସମସ୍ତ ବିଷୟର ଦାୟିତ୍ୱ ନ୍ୟସ୍ତ କରାଯାଇଛି । ଓଡ଼ିଶାର ଗ୍ରାମାଞ୍ଚଳରେ ଯୋଗାଯୋଗର ଦୁରାବସ୍ଥା କାହାରିକୁ ଅବିଦିତ ନୁହେଁ । ଯୋଗାଯୋଗର ଅଭାବ ଯୋଗୁଁ ଗ୍ରାମାଞ୍ଚଳର କୃଷକ ନିଜର ଉତ୍ପାଦିତ ସାମଗ୍ରୀକୁ ବଜାରକୁ ପହଞ୍ଚାଇବାରେ ବହୁ ଅସୁବିଧାର ସମ୍ମୁଖୀନ ହୁଏ ଏବଂ ଏହି ସୁଯୋଗରେ ମଧ୍ୟସ୍ଥ ବ୍ୟବସାୟୀ ନିର୍ଦ୍ଧାରିତ ଦରଠାରୁ କମ୍ ଦରରେ କୃଷକଠାରୁ ଉତ୍ପାଦିତ ସାମଗ୍ରୀ କିଣେ ଓ କୃଷକ କ୍ଷତିଗ୍ରସ୍ତ ହୁଏ । ବର୍ତ୍ତମାନର ସରକାର ନୀତିଗତ ନିଷ୍ପତ୍ତି ଗ୍ରହଣ କରିଛନ୍ତି ଯେ, ସମସ୍ତ ଗ୍ରାମକୁ ଗ୍ରାମ ପଞ୍ଚାୟତ ସହିତ, ଗ୍ରାମ ପଞ୍ଚାୟତ ମୁଖ୍ୟ କାର୍ଯ୍ୟାଳୟକୁ ପଞ୍ଚାୟତ ସମିତି ସହିତ ଏବଂ ପଞ୍ଚାୟତ ସମିତି ମୁଖ୍ୟ କାର୍ଯ୍ୟାଳୟକୁ ସବଡ଼ିଭିଜନ ସହିତ ରାସ୍ତା ଦ୍ୱାରା ସଂଯୋଗ କରିବେ । ୧୯୯୦ ମସିହାରେ ଏହି କାର୍ଯ୍ୟ ଆରମ୍ଭ ହୋଇ ବର୍ତ୍ତମାନ ପର୍ଯ୍ୟନ୍ତ ୬୫୫ କି.ମି. ପିଚୁ ରାସ୍ତା, ୯୭୭ କି.ମି. ମେଟାଲିଂ ରାସ୍ତା, ୧୪୯୩ କି.ମି. ରାସ୍ତାରେ ମାଟି କାମ ହୋଇ ସାରିଛି । ଏହି କାର୍ଯ୍ୟ ପାଇଁ ଲୋକ ପ୍ରତିନିଧିଙ୍କ ଜରିଆରେ ସାଧାରଣ ଲୋକଙ୍କୁ ସମ୍ପୃକ୍ତ କରିବା ସକାଶେ ଦଳୀୟ ବାଛ ବିଚାରର ଉର୍ଦ୍ଧ୍ୱରେ ରହି ପ୍ରତିଟି ନିର୍ବାଚନ ମଣ୍ଡଳୀ ପିଛା ଗ୍ରାମ୍ୟ ରାସ୍ତା ପାଇଁ ଏକ ସର୍ବନିମ୍ନ ଅନୁଦାନ ବ୍ୟବସ୍ଥା କରାଯାଇଛି ଏବଂ ଜନ ପ୍ରତିନିଧିମାନଙ୍କ ସୁପାରିଶକ୍ରମେ ଉକ୍ତ ଟଙ୍କାକୁ ବିନିଯୋଗ କରାଯାଉଛି । ଏହି କାର୍ଯ୍ୟକ୍ରମରେ ବିଗତ ୪ ବର୍ଷ ଭିତରେ ୧୦୦ କୋଟିରୁ ଉର୍ଦ୍ଧ୍ୱ ଟଙ୍କା ଗ୍ରାମ୍ୟ ରାସ୍ତାର ବିକାଶ ପାଇଁ କେବଳ ଗ୍ରାମ୍ୟ ଉନ୍ନୟନ ବିଭାଗରେ ଖର୍ଚ୍ଚ କରାଯାଇ ସାରିଲାଣି । ଏହା ବ୍ୟତୀତ ଗ୍ରାମ୍ୟ ଉନ୍ନୟନ ବିଭାଗ ଅଧୀନରେ ଥିବା ପ୍ରାୟ ୩୦,୦୦୦ କି.ମି. ଗ୍ରାମ୍ୟ ରାସ୍ତାର ରକ୍ଷଣାବେକ୍ଷଣ ପାଇଁ ଆହୁରି ୧୦୦ କୋଟିରୁ ଉର୍ଦ୍ଧ୍ୱ ଟଙ୍କା ବିନିଯୋଗ କରାଯାଇ ସାରିଛି । ନଦୀ ନାଳ ଦ୍ୱାରା ବହୁଧା ବିଭକ୍ତ ଓଡ଼ିଶାର ଗ୍ରାମାଞ୍ଚଳକୁ ସଂଯୋଗ କରି ଯୋଗାଯୋଗ ପ୍ରକ୍ରିୟାକୁ ଆହୁରି ସହଜ କରିବା ପାଇଁ ଗ୍ରାମ୍ୟ ଉନ୍ନୟନ ବିଭାଗ ବର୍ତ୍ତମାନ ସୁଦ୍ଧା ୪୨୨ଟି କ୍ଷୁଦ୍ର ଓ ବୃହତ୍ ପୋଲ ନିର୍ମାଣର କାର୍ଯ୍ୟ ହାତକୁ ନେଇଛନ୍ତି ଏବଂ ଏଥିପାଇଁ ବିପୁଳ ଅର୍ଥର ବ୍ୟବସ୍ଥା କରାଯାଇଛି । କେବଳ ୧୯୯୪-୯୫ ଆର୍ଥିକ ବର୍ଷରେ ହିଁ ଅନ୍ୟୁନ ୬୦ଟି ପୋଲ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏହା ବ୍ୟତୀତ ୪ ବର୍ଷ ମଧ୍ୟରେ ୮୪ଟି ପୋଲର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇସାରି ଗମନାଗମନ ପାଇଁ ଖୋଲା ଯାଇଅଛି । ଓଡ଼ିଶାରେ ଗ୍ରାମାଞ୍ଚଳର ରାସ୍ତାଘାଟର ବିକାଶ ପାଇଁ ଏହା ବୈପ୍ଳବିକ ପଦକ୍ଷେପ ଅଟେ ଯାହା ଗତ ୪୦ ବର୍ଷ ଭିତରେ ସମ୍ଭବ ହୋଇ ପାରିନଥିଲା । ଏହାଛଡ଼ା ଗ୍ରାମାଞ୍ଚଳର ସରକାରୀ କୋଠାବାଡ଼ିର ନିର୍ମାଣ ଓ ରକ୍ଷଣାବେକ୍ଷଣର ଦାୟିତ୍ୱ ଗ୍ରାମ୍ୟ ଉନ୍ନୟନ ବିଭାଗ ବହନ କରିଛନ୍ତି । ରକ୍ଷଣାବେକ୍ଷଣ ପାଇଁ ୭,୩୮୦ଟି କୋଠାବାଡ଼ି ହାତକୁ ନିଆଯାଇଛି ଏବଂ ୫,୩୮୦ଟି କୋଠାବାଡ଼ି ମରାମତି କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇସାରିଛି ।

ବିଶୁଦ୍ଧ ପାନୀୟ ଜଳ ହେଉଛି ଗ୍ରାମାଞ୍ଚଳ ଜନସାଧାରଣଙ୍କ ପାଇଁ ଅନ୍ୟ ଏକ ବିଷମ ସମସ୍ୟା । ଏହାକୁ ଦୂର କରିବା ପାଇଁ ପର୍ଯ୍ୟାୟକ୍ରମେ ଗ୍ରାମ୍ୟ ଉନ୍ନୟନ ବିଭାଗ ବହୁ ଯୋଜନାମାନ ହାତକୁ ନେଇଛନ୍ତି । ଗତ ୧୯୯୦ ମସିହାରୁ ୧୯୯୩ ମସିହା ସୁଦ୍ଧା ରାଜ୍ୟର ବିଭିନ୍ନ ଗ୍ରାମରେ ୨୩,୬୦୬ଟି ନୂତନ ନଳକୂପ / ସାନିଟାରି କୂପ / ଜଳ ଅମଳ ପ୍ରକଳ୍ପ ଖନନ କରାଯାଇଅଛି ।

ଚଳିତ ବର୍ଷ ପ୍ରଥମ ଥର ପାଇଁ ପର୍ଯ୍ୟାୟକ୍ରମେ ପଡ଼ା ଗ୍ରାମମାନଙ୍କରେ ନଳକୂପ ଖନନ ପାଇଁ ରାଜ୍ୟ ସରକାର ନିଜସ୍ୱ ପାଣ୍ଠିରୁ ଖର୍ଚ୍ଚର ବ୍ୟବସ୍ଥା କରିଛନ୍ତି। ଏହା ବ୍ୟତୀତ "ସହରାଞ୍ଚଳ ଭଳି ଗ୍ରାମାଞ୍ଚଳରେ ଜନସାଧାରଣଙ୍କୁ ପାଇପ୍ ଯୋଗେ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦେବା ପାଇଁ ଗ୍ରାମ୍ୟ ଉନ୍ନୟନ ବିଭାଗ ଏକ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ଓ ୨,୦୦୦ରୁ ଅଧିକ ଜନସଂଖ୍ୟା ବିଶିଷ୍ଟ ଗ୍ରାମମାନଙ୍କୁ ପର୍ଯ୍ୟାୟକ୍ରମେ ପାଇପ୍ ଯୋଗେ ପାନୀୟ ଜଳ ଯୋଗାଇ ଦେବାର ସ୍ଥିର କରାଯାଇଅଛି। ଏହି ଅନୁସାରେ ଏ ପର୍ଯ୍ୟନ୍ତ ୪୨ଟି ଗ୍ରାମାଞ୍ଚଳ ପାଇପ୍ ଜଳ ଯୋଜନା ସମ୍ପୂର୍ଣ୍ଣ ହୋଇଛି ଏବଂ ଆହୁରି ୦୩ଟି କାର୍ଯ୍ୟ କରୁଛି। ବ୍ରାହ୍ମଣୀ ଅବବାହିକାର ଗ୍ରାମମାନଙ୍କୁ ବିଶୁଦ୍ଧ ପାନୀୟ ଜଳ ଯୋଗାଇ ଦେବା ପାଇଁ ୨୪ କୋଟି ଟଙ୍କାର ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଚଳିତ ବର୍ଷଠାରୁ ହାତକୁ ନିଆଯାଇଛି। ଏହା ବ୍ୟତୀତ ଗ୍ରାମ୍ୟ ପରିମଳ ବ୍ୟବସ୍ଥାର ଉନ୍ନତି ପାଇଁ ଇଣ୍ଡିଭିଜୁଆଲ୍ ଲାଟ୍ରିନ୍, କମ୍ୟୁନିଟି ଲାଟ୍ରିନ୍, ଇନଷ୍ଟିଚ୍ୟୁସନାଲ ଲାଟ୍ରିନ୍ ସ୍କିମ୍ କାର୍ଯ୍ୟକାରୀ କରାଯାଉଅଛି।

ରାଜ୍ୟ ସରକାର ଗ୍ରାମାଞ୍ଚଳ ବିକାଶର ଧାରାକୁ ତ୍ୱରାନ୍ୱିତ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିବାରୁ ରାଜ୍ୟର ବଜେଟରେ ସର୍ବନିମ୍ନ ୫୦ ଭାଗରୁ ଅଧିକ ଟଙ୍କା ଗ୍ରାମାଞ୍ଚଳର ବିକାଶ ପାଇଁ ଖର୍ଚ୍ଚ କରି ବିଭିନ୍ନ ଯୋଜନାକୁ କାର୍ଯ୍ୟକାରୀ କରୁଛି। ଏହା ଏକ ଯୁଗାନ୍ତକାରୀ ଐତିହାସିକ ପଦକ୍ଷେପ ଅଟେ। ଗ୍ରାମାଞ୍ଚଳର ଏ ସମସ୍ତ ବିକାଶମୂଳକ ଯୋଜନା କାର୍ଯ୍ୟକ୍ରମରେ ଜନସାଧାରଣଙ୍କୁ ସମ୍ପୃକ୍ତ କରିବା ପାଇଁ ସରକାର ଚାହାନ୍ତି କାରଣ ଯୋଜନା ଯେଉଁମାନଙ୍କ ପାଇଁ ଉଦ୍ଦିଷ୍ଟ, ସେ ଯୋଜନା ଓ ତାହାର କାର୍ଯ୍ୟକାରିତା ସମ୍ପର୍କରେ ଉକ୍ତ ଜନସାଧାରଣ ଅବଗତ ଓ ସଂଶ୍ଳିଷ୍ଟ ନହେଲେ ତାହାର ସଫଳ କାର୍ଯ୍ୟ କରିବା ହୁଏତ ସମ୍ଭବ ହୋଇ ନପାରେ।

ଆଶା କରାଯାଏ ଓଡ଼ିଶାରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଜନତା ଦଳ ସରକାର ଆରମ୍ଭ କରିଥିବା ଗ୍ରାମ୍ୟ ପୁନର୍ଗଠନର ଏହି ବୈପ୍ଳବିକ କାର୍ଯ୍ୟକ୍ରମମାନ ଯଦି ଅବ୍ୟାହତ ରହେ ତାହା ହେଲେ ଆଗାମୀ ଦିନମାନଙ୍କରେ ଉନ୍ନତ ଗ୍ରାମ ଗଠନ କରି ସମୃଦ୍ଧ ଓଡ଼ିଶା ଗଠନ କରିବା ପାଇଁ ଆମର ସ୍ୱପ୍ନ ସଫଳ ହେବ। ଯଦି ଏ ଧାରା ବ୍ୟାହତ ହୁଏ, ହୁଏତ ସେ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଯିବ।

---

ମନ୍ତ୍ରୀ,
ଗ୍ରାମ୍ୟ ଉନ୍ନୟନ ବିଭାଗ।




ମତ୍ସ୍ୟ, ପଶୁ ସମ୍ପଦ ବିକାଶ ମନ୍ତ୍ରୀ ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ର ଓମ୍‌ଫେଡ୍ ଏଜେଣ୍ଟ୍ ସଙ୍ଘର ବାର୍ଷିକ ଉତ୍ସବରେ ଉଦ୍‌ବୋଧନ ଦେଉଛନ୍ତି।

# ଓଡ଼ିଶାର ସାମ୍ପ୍ରତିକ ବିଦ୍ୟୁତ୍ ବ୍ୟବସ୍ଥା

ଅଧ୍ୟାପକ କାଳିନ୍ଦୀ ଚରଣ ବେହେରା



ସାମ୍ପ୍ରତିକ ବିଜୁଳି କାଟ୍ ବିରୁଦ୍ଧରେ ବହୁ ପ୍ରଶ୍ନ – ବହୁ ବିବୃତି – ବହୁ ସମାଲୋଚନା – ବହୁ ଲଘୁ ପରିହାସର ଧୂଆଁଧାର ବର୍ଷା ସବେଳି ଆମ ଉପରେ ଅଜାଡ଼ି ହୋଇ ପଡୁଛି । କାରଣ ବିଜୁଳିର ଆବଶ୍ୟକତା ଆଜି ସହରଠାରୁ ଗ୍ରାମ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ଅପରିହାର୍ଯ୍ୟ ହୋଇ ପଡ଼ିଛି । ରାଜ୍ୟର ଅର୍ଥନୈତିକ ବିକାଶ ତଥା ସାଂସ୍କୃତିକ ଅଭ୍ୟୁଦୟ ଦିଗରେ ବିଜୁଳିର ଆବଶ୍ୟକତା ଏକାନ୍ତ ଆବଶ୍ୟକ । ବିଜୁଳି ହିଁ ଆଧୁନିକ ପ୍ରଗତିର ମାପକାଠି । ଏହି ପରିପ୍ରେକ୍ଷୀରେ ବିଜୁଳି ଉତ୍ପାଦନ ପ୍ରତି ବର୍ତ୍ତମାନର ରାଜ୍ୟ ସରକାର ତିକ୍ଷ୍ଣ ଦୃଷ୍ଟି ଦେଇଛନ୍ତି । ଉତ୍ପାଦନ ବୃଦ୍ଧି ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି ।

ଷଷ୍ଠ ଓ ସପ୍ତମ ପଞ୍ଚବାର୍ଷିକ ଯୋଜନା ସମୟରେ ବିଜୁଳି ଉତ୍ପାଦନ ପ୍ରତି ବିଶେଷ ଧ୍ୟାନ ଦିଆ ନଯାଇ ଗ୍ରାମ୍ୟ ବିଦ୍ୟୁତ୍‌କରଣ, ଶିଳ୍ପ ପ୍ରତିଷ୍ଠା ଓ ସହର ବିଜୁଳି ପରିଯୋଜନା ପ୍ରଭୃତି ବଢ଼ି ଚାଲିବାରୁ ଏକଦା (୧୯୭୮) ବିଦ୍ୟୁତ୍ କ୍ଷେତ୍ରରେ ବଳକା ଥିବା ଏ ରାଜ୍ୟ ବିଜୁଳିର ଦାରୁଣ ଅଭାବ ଭିତରେ ଛଟପଟ ହୋଇଛି – ଜନ ଅସନ୍ତୋଷର ଘନ ଆବର୍ତ୍ତରେ ଉବୁଟୁବୁ ହେଉଛି ।

ସପ୍ତମ ପଞ୍ଚବାର୍ଷିକ ଯୋଜନାର ଶେଷ ସୁଦ୍ଧା ଆମ ରାଜ୍ୟରେ କେନ୍ଦ୍ରୀୟ (ଏନ୍.ଟି.ପି.ସି.) ଅଂଶ ମିଶାଇ ଶକ୍ତି ବା ବିଦ୍ୟୁତ୍‌ର ପରିମାଣ ପ୍ରାୟ ୧୨୭୫ ମେଗାୱାଟ୍ ସଂସ୍ଥାପିତ କ୍ଷମତା ବା ୬୮୯ ସ୍ଥିର ଶକ୍ତି ଥିଲା । ମାତ୍ର ସପ୍ତମ ଯୋଜନା ଶେଷ ସୁଦ୍ଧା ଆମର ଏକମାତ୍ର ଆବଶ୍ୟକତା ୧୬୭୧ ମେଗାୱାଟ୍‌ର ବୃଦ୍ଧି ପାଇଥିଲା । ସେତେବେଳେ ସର୍ବଭାରତୀୟ ଅଭାବର ପରିମାଣ ୭-୫ ଶତାଂଶ ଥିବା ବେଳେ ଆମ ରାଜ୍ୟର ଅଭାବ ୪୫-୭୯ ଶତାଂଶ ଥିଲା । ତାହାର ସବିଶେଷ ବିବରଣୀ ନିମ୍ନରେ ପ୍ରଦାନ କରାଗଲା ।

| କ୍ରମ | ପ୍ରକଳ୍ପର ନାମ | ସଂସ୍ଥାପିତ କ୍ଷମତା | ସ୍ଥିର ଶକ୍ତି ମେଗାୟୁନିଟ୍/ ମେଗାୱାଟ୍ |
|---|---|---|---|
| (୧) | (୨) | (୩) | (୪) |
| (୧) | ହୀରାକୁଦ ଜଳ ବିଦ୍ୟୁତ୍ ପ୍ରକଳ୍ପ (୨x୩୭.୫)+(୨x୨୪)+ (୩x୨୪) ମେଗାୱାଟ୍ । | ୨୭ | ୧୦୫୮/୧୨୨ |
| (୨) | ମାଛକୁଣ୍ଡ ଜଳ ବିଦ୍ୟୁତ୍ ପ୍ରକଳ୍ପ (୩x୧୭.୨୫)+(୩x୨୧) ମେଗାୱାଟ୍ | ୩୪ (ଓଡ଼ିଶା ଅଂଶ) | ୩୧୦/୩୪ |
| (୩) | ବାଲିମେଳା ଜଳ ବିଦ୍ୟୁତ୍ ପ୍ରକଳ୍ପ (୬x୬୦) ମେଗାୱାଟ୍ | ୩୬୦ | ୧,୨୦୦/୧୩୬ |
| (୪) | ତାଳଚେର ଥର୍ମାଲ୍ ପାୱାର ଷ୍ଟେସନ ଷ୍ଟେଜ୍-୧ (୪x୬୦) ମେଗାୱାଟ୍ | ୨୪୦ | ୧,୫୦୦/୧୭୨ |
| (୫) | ତାଳଚେର ଥର୍ମାଲ୍ ପାୱାର ଷ୍ଟେସନ ଷ୍ଟେଜ୍-୨ (୨x୧୧୦) ମେଗାୱାଟ୍ | ୨୪୦ | ୧,୫୦୦/୧୭୨ |
| | ମୋଟ୍ : | ୧,୨୫୪ | ୩,୯୫୮/୪୭୩ |
| | **ସପ୍ତମ ଯୋଜନା କାଳରେ ଯୋଗ :** | | |
| (୧) | ରେଙ୍ଗାଲି ଜଳ ବିଦ୍ୟୁତ୍ ପ୍ରକଳ୍ପ ଷ୍ଟେଜ୍-୧ (୨x୫୦) ମେଗାୱାଟ୍+ (୨x୫୦) ମେଗାୱାଟ୍ | ୧୦୦ | ୨୦୪/୮୦ |
| | ଷ୍ଟେଜ୍-୨ | ୧୦୦ | .. |
| (୨) | ଉପର କୋଲାବ୍ ଜଳ ବିଦ୍ୟୁତ୍ ପ୍ରକଳ୍ପ ଷ୍ଟେଜ୍-୧ (୩x୮୦) ମେଗାୱାଟ୍ | ୨୪୦ | ୮୩୨/୯୪ |
| | **କେନ୍ଦ୍ରୀୟ ଅଂଶ ଇତି :** | | |
| (କ) | ଫାରକ୍କା (୬୦୦ ମେଗାୱାଟ୍‌ର ୧୨-୫ ଶତାଂଶ) | ୭୫ | ୩,୨୦,୨୮୨ |
| (ଖ) | ତାଳଚେର (୨୭୦ ମେଗାୱାଟ୍‌ର ୧୩-୫ ଶତାଂଶ) | ୩୬-୦୫ | ୧୨୫/୧୯ |
| | ସପ୍ତମ ଯୋଜନା ଶେଷ ସୁଦ୍ଧା ମୋଟ ଇତି | ୧,୬୭୫-୦୫ | ୨,୦୨୨/୨୩୬ |

୧୯୯୦-୯୧ ମସିହାରେ ହୀରାକୁଦର ସପ୍ତମ ୟୁନିଟ୍ କାର୍ଯ୍ୟ ଶେଷ କରାଗଲା ଏବଂ ଆମର ସଂସ୍ଥାପିତ କ୍ଷମତାରେ ଆହୁରି ୩୭-୫ ମେଗାୱାଟ୍ ସଂଯୋଗ କରାଗଲା । ଏହାର ସ୍ଥିର ଶକ୍ତି ବା **Firm power** ପ୍ରାୟ ୧୪ ମେଗାୱାଟ୍ ହେବ । ଏହି ସମୟ ମଧ୍ୟରେ ରେଙ୍ଗାଲିର ପଞ୍ଚମ ୟୁନିଟ୍ (୫୦ ମେଗାୱାଟ୍) ଓ ଅପର କୋଲାବ୍‌ର ପଞ୍ଚମ ୟୁନିଟ୍ (୮୦ ମେଗାୱାଟ୍) ମଧ୍ୟ ପୂର୍ବ କ୍ଷମତାରେ ସଂଯୋଜିତ ହେଲା । କିନ୍ତୁ ଅଭାବ ଯେ ଆହୁରି ସୁଦୂର ପ୍ରସାରୀ ଆହୁରି ବ୍ୟାପକ – ଆହୁରି ନିକଟ ।

ତେଣୁ ଅଷ୍ଟମ ଯୋଜନା କାଳରେ ଏହି ଦାରୁଣ ବିଦ୍ୟୁତ୍ ସଂକଟରୁ ରକ୍ଷା ପାଇବା ପାଇଁ ରାଜ୍ୟ ସରକାର ବହୁ ପରିକଳ୍ପନାର ଯୋଜନା ପ୍ରସ୍ତୁତ କରିଛନ୍ତି । ଏହି ଯୋଜନା (୧୯୯୨–୯୭) ଶେଷ ସୁଦ୍ଧା ଆମର ସଂସ୍ଥାପିତ କ୍ଷମତାରେ ଆହୁରି ୧୧୫୬ ମେଗାୱାଟ୍ ବା ୫୪୧ ମେଗାୱାଟ୍ ସ୍ଥିର ଶକ୍ତି ସଂଯୋଜିତ ହେବ ।

ଏହି ସମସ୍ତ ପରିଧି ମଧ୍ୟରେ କେନ୍ଦ୍ରୀୟ ନୂତନ ପ୍ରକଳ୍ପ ଯାହାକି ଏହି ସମୟ ମଧ୍ୟରେ ଉତ୍ପାଦନ ଆରମ୍ଭ କରିବ, ସେଥିରୁ ପ୍ରାୟ ୩୦୩ ମେଗାୱାଟ୍ ସ୍ଥିର ଶକ୍ତି ପାଇପାରିବ । ଏହାର ସବିଶେଷ ବିବରଣୀ ନିମ୍ନରେ ଦିଆଗଲା :–

**(କ) ରାଜ୍ୟ ପ୍ରକଳ୍ପ :**

| କ୍ରମ | ପ୍ରକଳ୍ପର ନାମ | ସଂସ୍ଥାପିତ କ୍ଷମତା | ସ୍ଥିର ଶକ୍ତି ମେଗା ୟୁନିଟ୍/ ମେଗାୱାଟ୍ | ଉତ୍ପାଦନର ଧାର୍ଯ୍ୟ ତାରିଖ |
|---|---|---|---|---|
| (୧) | ରେଙ୍ଗାଲି ଫେଜ୍–୨ (ପଞ୍ଚମ ୟୁନିଟ୍) | ୫୦ | ୪୫/୨ | ୨୫–୮–୧୯୯୨ ତାରିଖରେ ଆରମ୍ଭ ହେଲା । |
| (୨) | ଅପର କୋଲାବ୍ ଫେଜ୍–୨ (୪ର୍ଥ ୟୁନିଟ୍ ୧x୮୦ ମେଗାୱାଟ୍) | ୮୦ | .. | ୧୨–୧–୧୯୯୩ ତାରିଖରେ ଆରମ୍ଭ ହେଲା । |
| (୩) | ଅପର ଇନ୍ଦ୍ରାବତୀ ଜଳ ବିଦ୍ୟୁତ୍ ପ୍ରକଳ୍ପ | ୬୦୦ | ୧,୯୬୨/୨୨୫ | ୧୨/୯୪ରେ ପ୍ରଥମ ୟୁନିଟ୍ ଏବଂ ୬/୯୬ରେ ଚତୁର୍ଥ ୟୁନିଟ୍ । |
| (୪) | ପୋଟେରୁ କ୍ଷୁଦ୍ର ଜଳ ବିଦ୍ୟୁତ୍ ପ୍ରକଳ୍ପ | ୬ | ୪୫/୫ | ୧୨/୯୪ |
| (୫) | ଇବ୍ ଥର୍ମାଲ୍ ବିଦ୍ୟୁତ୍ ପ୍ରକଳ୍ପ ଫେଜ୍–୧ (ପ୍ରଥମ ଓ ଦ୍ୱିତୀୟ ୟୁନିଟ୍) | ୪୨୦ | ୨,୬୮୧/୨୬୦ | ୩/୯୪, ୯/୯୪ |
| (୬) | ତାଳଚେର ଥର୍ମାଲ୍ ପୁନରୁଦ୍ଧାର | .. | ୬୦୦/୬୫ | ୧୨/୯୫, ୧୨/୯୬, ୧୨/୯୭ । |
| | ଅଷ୍ଟମ ଯୋଜନାରେ ମୋଟ ଯୋଗ : | ୧,୧୫୬ | ୫,୨୭୨/୫୫୧ | |

**(ଖ) ଅଷ୍ଟମ ଯୋଜନା କାଳରେ ଶେଷ ହେବାକୁଥିବା କେନ୍ଦ୍ରୀୟ ପ୍ରକଳ୍ପ :**

| କ୍ରମ | ପ୍ରକଳ୍ପର ନାମ | ଓଡ଼ିଶାର ଅଂଶ ଶତକଡ଼ା | ସଂସ୍ଥାପିତ କ୍ଷମତା ମେଗାୱାଟ୍ | ସ୍ଥିର ଶକ୍ତି ମେଗାୟୁନିଟ୍/ ମେଗାୱାଟ୍ | ଉତ୍ପାଦନର ଧାର୍ଯ୍ୟ ତାରିଖ |
|---|---|---|---|---|---|
| (୧) | କହଲଗାଁ ସୁପର ଥର୍ମାଲ୍ ପାୱାର ଷ୍ଟେସନ୍ (୪x୨୧୦ ମେଗାୱାଟ୍) | ୧୬.୫ | ୮୪୦ | ୬୬୪/୬୨ | ୧୯୯୨–୯୩ |
| (୨) | ଫରକ୍କା ଟି.ପି.ଷ୍ଟେ. ଫେଜ୍–୨ (୨x୫୦୦ ମେଗାୱାଟ୍) | ୧୨.୫ | ୧୨୫ | ୮୩୫/୮୫ | ୧୯୯୫–୯୬ |
| (୩) | ତାଳଚେର ସୁପର ଥର୍ମାଲ୍ ପାୱାର ଷ୍ଟେସନ୍ (୨x୫୦୦ ମେଗାୱାଟ୍) | ୩୦ | ୩୦୦ | ୧,୨୦୦/୨୫୬ | ୧୯୯୫–୯୬ |
| | ମୋଟ : | | ୫୬୫ | ୨,୬୯୯/୩୦୩ | |

ଏହିପରି ଭାବେ ଅଷ୍ଟମ ଯୋଜନା ଶେଷ ବେଳକୁ ଓଡ଼ିଶାରେ ସର୍ବମୋଟ ୧୫୫୭ ମେଗାୱାଟ୍ ସ୍ଥିର ଶକ୍ତି ମିଳିପାରିବ । କିନ୍ତୁ ଯେଉଁ ହାରରେ ଆମର ଆବଶ୍ୟକତା ବଢ଼ି ବଢ଼ି ଚାଲିଛି, ଏ ଯୋଜନା ଶେଷ ବେଳକୁ ଏହି ହାରରେ ଆମର ଆବଶ୍ୟକତା ୨୨୦୦ ମେଗାୱାଟ୍‌ରେ ପହଞ୍ଚି ସାରିଥିବ ଅର୍ଥାତ୍ ଏସବୁ ପ୍ରକଳ୍ପ ଉତ୍ପାଦନ ଆରମ୍ଭ କରିଥିଲେ ବି ଆମର ଅଭାବ ପ୍ରାୟ ଶତକଡ଼ା ୫୨.୭ ରହିବ । ତେଣୁ ଆଜିଠାରୁ ୯ମ ପଞ୍ଚବାର୍ଷିକ ଯୋଜନା (୧୯୯୭–୨୦୦୨) କାଳରେ କେତେକ ବିଦ୍ୟୁତ୍ ପ୍ରକଳ୍ପ ସ୍ଥାପନର ପ୍ରସ୍ତାବ ରହିଛି । ଏହା ମଧ୍ୟରେ ଘରୋଇ ଉଦ୍ୟୋଗରେ ପ୍ରକଳ୍ପ ପ୍ରତିଷ୍ଠା ପାଇଁ ବିଶେଷ ଧ୍ୟାନ ଦିଆଯାଇଛି । କାରଣ ରାଜ୍ୟ ବା କେନ୍ଦ୍ର ସରକାର ନିଜସ୍ୱ ଯୋଜନାରେ ଅର୍ଥ ବିନିଯୋଗ କରିବାକୁ ସକ୍ଷମ ନୁହନ୍ତି ।

ଭାରତ ସରକାରଙ୍କ ପକ୍ଷରୁ ଘୋଷିତ ଅନୁଦାନ ଓ ସାହାଯ୍ୟ ସହଯୋଗ ପରେ ବି ରାଜ୍ୟ ସରକାର ଘରୋଇ ସଂସ୍ଥାମାନଙ୍କୁ ପ୍ରୋତ୍ସାହିତ କରିବା ପାଇଁ ଆହୁରି ଅନେକ ଆକର୍ଷଣୀୟ ପ୍ୟାକେଜ୍ ଘୋଷଣା କରିଛନ୍ତି ।

ଏହି ସବୁ ସୁବିଧା ସୁଯୋଗକୁ ବିଶେଷ ଧ୍ୟାନକୁ ନେଇ ଭିତରେ ବହୁ ବିଦେଶୀ କମ୍ପାନୀ, ଭାରତବର୍ଷରେ ବିଶେଷ କରି ଓଡ଼ିଶାରେ ପାୱାର ପ୍ଲାଣ୍ଟ ପ୍ରତିଷ୍ଠା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରିଛନ୍ତି । ଏହି କମ୍ପାନୀମାନେ ହାଇଡ୍ରୋ ଓ ଥର୍ମାଲ୍ ଉଭୟ ପ୍ରକଳ୍ପରେ ସେମାନଙ୍କର ପୁଞ୍ଜି ବିନିଯୋଗ କରିବେ ବୋଲି ପ୍ରକାଶ କରିଛନ୍ତି ।

ଏମାନଙ୍କ ମଧ୍ୟରୁ ମେସର୍ସ ଇବ୍ ଭ୍ୟାଲି ପାୱାର୍ ପ୍ରାଇଭେଟ୍ ଲିମିଟେଡ୍ ଯାହାକି ମେସର୍ସ ଏ.ଇ.ଏସ୍. ଟ୍ରାନସ୍‌ପାୱାର୍, ଯୁକ୍ତରାଷ୍ଟ୍ର ଆମେରିକାର ସହାୟକ କମ୍ପାନୀ ରୂପେ ପରିଗୃହୀତ, ତାହା ସହିତ ଏ ମଧ୍ୟରେ ପାୱାର୍ ପର୍ଚ୍ଚେଜ୍ ଏଗ୍ରୀମେଣ୍ଟ କରାସରିଛି । କୋଲ୍ ପର୍ଚ୍ଚେଜ୍ ଏଗ୍ରୀମେଣ୍ଟ ମଧ୍ୟ ସରିଛି । ମେସର୍ସ କଳିଙ୍ଗ ପାୱାର୍ କର୍ପୋରେସନ୍, ଡୁବୁରୀ ଏବଂ ପାୟୋନିଅର୍ ସଂସ୍ଥା ସହ ମଧ୍ୟ ଏ ଭିତରେ ଶକ୍ତି କ୍ରୟ ଚୁକ୍ତି ସ୍ୱାକ୍ଷରିତ ସରିଛି । ସର୍ବଭାରତୀୟ ସ୍ତରରେ ଏକଳି ଚୁକ୍ତି ଅଭିନବ – ସର୍ବ ପ୍ରଥମ ।

(୧) ଇବ୍ ଭ୍ୟାଲି ପାୱାର୍ ପ୍ରାଇଭେଟ୍ ଲିଃ – ୨x୨୫୦ ମେଗାୱାଟ୍ ତାପଜ ବିଦ୍ୟୁତ୍ କେନ୍ଦ୍ର, ବନହରପାଲି, ଜିଲ୍ଲା–ଝାରସୁଗୁଡ଼ା ।

(୨) ମେସର୍ସ କଳିଙ୍ଗ ପାୱାର୍ କର୍ପୋରେସନ୍ ଲିଃ – ୨x୨୫୦ ମେଗାୱାଟ୍ ନର୍ଥ ଇଣ୍ଡ ଏନର୍ଜି, ଯୁକ୍ତରାଷ୍ଟ୍ର ଆମେରିକା ତାପଜ ବିଦ୍ୟୁତ୍ କେନ୍ଦ୍ର, ଡୁବୁରୀ, ଜିଲ୍ଲା–ଯାଜପୁର ।

(୩) ସମଲାଇ ପାୱାର୍ ପ୍ରାଇଭେଟ୍ ଲିଃ — ୨×୨୫୦ ମେଗାୱାଟ୍ ପାୟୋନିୟର୍ ଏନର୍ଜି ଇନ୍‌କର୍ପୋରେଟ୍, ଯୁକ୍ତରାଷ୍ଟ୍ର, ଲପଙ୍ଗା, ସମ୍ବଲପୁର ଜିଲ୍ଲା ।

ଏତଦ୍ ବ୍ୟତୀତ ନିମ୍ନଲିଖିତ ପ୍ରସ୍ତାବିତ ବିଦ୍ୟୁତ୍ କେନ୍ଦ୍ର ପ୍ରତିଷ୍ଠା ଓ ବିଦ୍ୟୁତ୍ ଶକ୍ତି କ୍ରୟ ନିମନ୍ତେ ଚୁକ୍ତିନାମା (ପାୱାର୍ ପର୍ଚେଜ୍ ଏଗ୍ରୀମେଣ୍ଟ) ସ୍ୱାକ୍ଷର କରିବା ପାଇଁ ଆନୁଷଙ୍ଗିକ କାର୍ଯ୍ୟର ଅଗ୍ରଗତି ଘଟିଛି ।

(୧) ଇକ୍ୟୁଇଟି ପାର୍ଟନର୍ସ ଇନ୍‌କର୍ପୋରେଟ୍, ୱାଶିଂଟନ୍ ୨×୨୫୦ ମେଗାୱାଟ୍ କମଲାଙ୍ଗ ତାପଜ ବିଦ୍ୟୁତ୍ କେନ୍ଦ୍ର ଅନୁଗୁଳ ଜିଲ୍ଲା ।

(୨) ମେସର୍ସ କଳିଙ୍ଗ ପାୱାର୍ କର୍ପୋରେସନ୍ ଲିଃ, ୨×୩୦୦୦ କିଲୋୱାଟ୍ (ନେଏ ଇଷ୍ଟ ଏନର୍ଜି, ଯୁକ୍ତରାଷ୍ଟ୍ର ଆମେରିକା)

(କ) ସାଲନ୍ଦି ଡେମ୍ ଟୋ +୧×୧୦୦୦ କିଲୋୱାଟ୍

(ଖ) ବିରୂପା ବ୍ୟାରେଜ୍ ମିନି ହାଇଡ୍ରେଲ୍ ୧×୭୫୦ କିଲୋୱାଟ୍ ।

ସେଣ୍ଟ୍ରମ୍ ଟେକ୍ନୋଲୋଜି, ଯୁକ୍ତରାଷ୍ଟ୍ର ୨×୨୫୦ ମେଗାୱାଟ୍ ତାଳଚେର୍ ତାପଜ ବିଦ୍ୟୁତ୍ କେନ୍ଦ୍ର—ଖ, ଅନୁଗୁଳ ଜିଲ୍ଲା ।

କମ୍ୟୁନିଟ୍ ଏନର୍ଜି ଅଲଟର୍‌ନେଟିଭ୍, ଯୁକ୍ତରାଷ୍ଟ୍ର ୨×୨୫୦ ମେଗାୱାଟ୍ ତାଳଚେର୍ ତାପଜ ବିଦ୍ୟୁତ୍ କେନ୍ଦ୍ରର ପୁନରୁଦ୍ଧାର ଓ ନବୀକରଣ ।

ଉପରୋକ୍ତ ପ୍ରକଳ୍ପ ବ୍ୟତୀତ ନିମ୍ନଲିଖିତ ତାପଜ ଓ ଜଳ ବିଦ୍ୟୁତ୍ ପ୍ରକଳ୍ପ ଘରୋଇ ଉଦ୍ୟୋଗରେ କାର୍ଯ୍ୟକାରୀ କରିବା ପାଇଁ କେତେକ ସଂସ୍ଥା ଆଗ୍ରହ ପ୍ରକାଶ କରୁଛନ୍ତି ଓ ସେମାନଙ୍କର ପ୍ରସ୍ତାବ ବିଚାରାଧୀନ ଅଛି ।

(କ) ତାପଜ ବିଦ୍ୟୁତ୍ ପ୍ରକଳ୍ପ :

| କ୍ରମ. ପ୍ରକଳ୍ପର ନାମ | ଜିଲ୍ଲା | | ପ୍ରତିଷ୍ଠିତ କ୍ଷମତା |
|---|---|---|---|
| (୧) ନରାଜ | କଟକ | | ୪×୨୫୦ ମେଗାୱାଟ୍ |
| (୨) ଦୁର୍ଗାପୁର | ଅନୁଗୁଳ | | ୬×୫୦୦ ମେଗାୱାଟ୍ |
| (୩) ହିର୍ମା | ସମ୍ବଲପୁର | | ୬×୫୦୦ ମେଗାୱାଟ୍ |
| (୪) ଗୋପାଳପୁର | ସୁନ୍ଦରଗଡ଼ | | ୬×୫୦୦ ମେଗାୱାଟ୍ |
| (୫) ରେଙ୍ଗାଲି | ସମ୍ବଲପୁର | | ୪×୨୫୦ ମେଗାୱାଟ୍ |
| | | + | ୨×୨୫୦ ମେଗାୱାଟ୍ |
| **(ଖ) ଜଳ ବିଦ୍ୟୁତ୍ କେନ୍ଦ୍ର :** | | | |
| (୧) ହୀରାକୁଦ—ଖ | ସମ୍ବଲପୁର | | ୪×୫୭ ମେଗାୱାଟ୍ |
| (୨) ଚିପିଲିମା—ଖ | ସମ୍ବଲପୁର | | ୪×୫୦ ମେଗାୱାଟ୍ |
| (୩) ରେଙ୍ଗାଲି | ସମ୍ବଲପୁର | | ୫×୨୦ ମେଗାୱାଟ୍ |
| | | + | ୫×୨୫ ମେଗାୱାଟ୍ |
| | | + | ୫×୩୦ ମେଗାୱାଟ୍ |
| (୪) ବାଲିମେଳା ସମ୍ପ୍ରସାରଣ | ମାଲକାନଗିରି | - | ୨×୬୦ ମେଗାୱାଟ୍ |
| (୫) [illegible] | ଗଞ୍ଜାମ | | ୩୦ ମେଗାୱାଟ୍ |
| (୬) ମନ୍ଦିରା | ସୁନ୍ଦରଗଡ଼ | | ୩×୧୦ ମେଗାୱାଟ୍ |
| (୭) ବାଲିମେଳା ଡ୍ୟାମ୍ ଟୋ | ମାଲକାନଗିରି | | ୩×୨୦ ମେଗାୱାଟ୍ |
| (୮) [illegible] ମାଛକୁଣ୍ଡ | କୋରାପୁଟ | | ୧୨୦ ମେଗାୱାଟ୍ |
| (୯) ଉପର [illegible] | ସୁନ୍ଦରଗଡ଼ | | ୬୦ ମେଗାୱାଟ୍ |
| (୧୦) ମଣିଭଦ୍ରା | ନୟାଗଡ଼ | | ୯୨୦ ମେଗାୱାଟ୍ |
| (୧୧) ଛେଳିଗଡ଼ | ଗଞ୍ଜାମ | | ୨୧ ମେଗାୱାଟ୍ |
| (୧୨) ବୈତରଣୀ (ବାଲିଯୋଡ଼ୀପାରେ) | କେନ୍ଦୁଝର | | ୨୫୦ ମେଗାୱାଟ୍ |
| (୧୩) ଜଳାପୁଟ ଡ୍ୟାମ୍ ଟୋ | କୋରାପୁଟ | | ୬×୩ ମେଗାୱାଟ୍ |
| (୧୪) ସୁବର୍ଣ୍ଣରେଖା | ମୟୂରଭଞ୍ଜ | | ୫,୬୯୯ କିଲୋୱାଟ୍ |
| (୧୫) ବରଗଡ଼ | ସମ୍ବଲପୁର | | ୧,୦୦୦ କିଲୋୱାଟ୍ |
| (୧୬) ଘାଟେଇଡେରା | କଳାହାଣ୍ଡି | | ୬,୦୦୦ କିଲୋୱାଟ୍ |
| (୧୭) ଋଷିକୁଲ୍ୟା | ଗଞ୍ଜାମ | | ୧୦,୦୦୦ କିଲୋୱାଟ୍ |
| (୧୮) ନାରାୟଣ ପାଟଣା | କୋରାପୁଟ | | ୫,୦୦୦ କିଲୋୱାଟ୍ |
| (୧୯) ମୁଣ୍ଡଳି ବ୍ୟାରେଜ୍ | କଟକ | | ୩,୦୦୦ କିଲୋୱାଟ୍ |
| (୨୦) ନନ୍ଦିନୀ ନଳା | ଗଞ୍ଜାମ | | ୩,୦୦୦ କିଲୋୱାଟ୍ |
| (୨୧) ବାଘ | ଗଞ୍ଜାମ | | ୬,୦୦୦ କିଲୋୱାଟ୍ |
| (୨୨) ସାଲକି | ଫୁଲବାଣୀ | | ୧୦,୦୦୦ କିଲୋୱାଟ୍ |
| (୨୩) ମୁସଳ | କେନ୍ଦୁଝର | | ୨୦ ମେଗାୱାଟ୍ |
| (୨୪) ତେଲେଙ୍ଗିରି | କୋରାପୁଟ | | ୧,୦୦୦ କିଲୋୱାଟ୍ |
| (୨୫) ଉପର ନାଗାବଳୀ | ରାୟଗଡ଼ା | | ୨୨୦ କିଲୋୱାଟ୍ |
| (୨୬) ରେତ୍ | କଳାହାଣ୍ଡି | | ୪୨୦ କିଲୋୱାଟ୍ |
| (୨୭) ମହେନ୍ଦ୍ର ତନୟା | ଗଞ୍ଜାମ | | ୬୦୦ କିଲୋୱାଟ୍ |
| (୨୮) ସୁନ୍ଦର | କଳାହାଣ୍ଡି | | ୧୫୦ କିଲୋୱାଟ୍ |
| (୨୯) ତୁରୀ | କଳାହାଣ୍ଡି | | ୪୦୦ କିଲୋୱାଟ୍ |
| (୩୦) ଉତ୍ତେଇ | କଳାହାଣ୍ଡି | | ୩୦୦ କିଲୋୱାଟ୍ |
| (୩୧) ପିପୁଲୀ ନଳା | କଳାହାଣ୍ଡି | | ୧୨୦ କିଲୋୱାଟ୍ |
| (୩୨) ଗୋକି ସୁଅରା | କଳାହାଣ୍ଡି | | ୧,୦୦୦ କିଲୋୱାଟ୍ |
| (୩୩) ଫୁଲଝରଣ | କଳାହାଣ୍ଡି | | ୩୦୦ କିଲୋୱାଟ୍ |
| (୩୪) ବେହେରା | କଳାହାଣ୍ଡି | | ୧୨୦ କିଲୋୱାଟ୍ |
| (୩୫) କାଟରା | ମୟୂରଭଞ୍ଜ | | ୩୦୦ କିଲୋୱାଟ୍ |
| (୩୬) କୁସେର | କଳାହାଣ୍ଡି | | ୫୦ କିଲୋୱାଟ୍ |
| (୩୭) ଅଶୋକଝର | କଳାହାଣ୍ଡି | | ୬୦ କିଲୋୱାଟ୍ |
| (୩୮) ଖଣ୍ଡାଧାର | ସୁନ୍ଦରଗଡ଼ | | ୧,୨୦୦ କିଲୋୱାଟ୍ |
| (୩୯) ଦାରଜଙ୍ଗ | ଢେଙ୍କାନାଳ | | ୨୦୦ କିଲୋୱାଟ୍ |
| (୪୦) କାନୁଆସିପ | ଢେଙ୍କାନାଳ | | ୧୦୦ କିଲୋୱାଟ୍ |
| (୪୧) କେସରା | ସୁନ୍ଦରଗଡ଼ | | ୨୧୦ କିଲୋୱାଟ୍ |
| (୪୨) କୁକୁଡ଼ା | ସୁନ୍ଦରଗଡ଼ | | ୩୦୦ କିଲୋୱାଟ୍ |
| (୪୩) ଅଙ୍ଗ | ସମ୍ବଲପୁର | | ୧,୨୦୦ କିଲୋୱାଟ୍ |
| (୪୪) ତିକିରା | ଢେଙ୍କାନାଳ | | ୬୨୫ କିଲୋୱାଟ୍ |

୨୦୦୦ ଖ୍ରୀଷ୍ଟାବ୍ଦ ସୁଦ୍ଧା ଓଡ଼ିଶାର ବିଦ୍ୟୁତ୍ ଶକ୍ତିର ନିଶ୍ଚିତ ଆବଶ୍ୟକତା ପ୍ରାୟତଃ ୪୦୦୦ ମେଗାୱାଟ୍ ହେବା ଆଶା କରାଯାଏ । ତେଣୁ ଏହି ଆବଶ୍ୟକତା ପୂରଣ କରିବା ପାଇଁ

ରାଜ୍ୟ ସରକାର କାର୍ଯ୍ୟକାରୀ ହେଉଥିବା ବିଦ୍ୟୁତ୍ ପ୍ରକଳ୍ପ ଯଥା ଇବ୍ ତାପଜ ବିଦ୍ୟୁତ୍ କେନ୍ଦ୍ର ଉପରେ ଇନ୍ଦ୍ରାବତୀ, ପୋଟେରୁ ଓ ଅନ୍ୟ ସାତଟି କ୍ଷୁଦ୍ର ଜଳ ବିଦ୍ୟୁତ୍ ପ୍ରକଳ୍ପଗୁଡ଼ିକ ସମାପ୍ତ କରିବା ସହିତ ନୂତନ ତାପଜ ଓ ଜଳ ବିଦ୍ୟୁତ୍ ପ୍ରକଳ୍ପକୁ ଘରୋଇ ଉଦ୍ୟୋଗ ସାହାଯ୍ୟରେ କାର୍ଯ୍ୟକାରୀ କରିବା ପାଇଁ ସମସ୍ତ ଉଦ୍ୟମ କରୁଛନ୍ତି ।

ବିଦ୍ୟୁତ୍ ଯୋଗାଣକୁ ଦୃଢ଼ ଓ ଅବ୍ୟାହତ ରଖିବା ପାଇଁ ରାଜ୍ୟ ସରକାର ବିଦ୍ୟୁତ୍ ଉତ୍ପାଦନ ପ୍ରକଳ୍ପ ପାଇଁ ସମ୍ବଳ ବିନିଯୋଗ ନକରି ଅଧିକ ସମ୍ବଳ ସଞ୍ଚାରଣ ଓ ଯୋଗାଣ (ଟ୍ରାନ୍ସମିସନ୍ ଓ ଡିଷ୍ଟ୍ରିବ୍ୟୁସନ) ବାବଦରେ ଖର୍ଚ୍ଚ କରିବା ପାଇଁ ସ୍ଥିର କରିଛନ୍ତି ଓ ସେଥିନିମିତ୍ତ ୧୯୯୮–୯୯ ମସିହାରେ ୪୭-୬୮ କୋଟି ଟଙ୍କାର ବ୍ୟୟ ବରାଦ କରିଛନ୍ତି । ଏହା ଦ୍ୱାରା ନୂତନ ସବ୍‌ଷ୍ଟେସନ୍ ଟ୍ରାନ୍ସମିସନ୍ ଏବଂ ଡିଷ୍ଟ୍ରିବ୍ୟୁସନ ଲାଇନ୍ ନିର୍ମାଣ କରିବା ସଙ୍ଗେ ସଙ୍ଗେ ଟ୍ରାନ୍ସଫର୍ମରଗୁଡ଼ିକର କ୍ଷମତା ବୃଦ୍ଧି କରାଯାଇ ପାରିବ ।

ସର୍ବୋପରି ରାଜ୍ୟର ବିଦ୍ୟୁତ୍ ସଂକଟର ନିରାକରଣ ନିମନ୍ତେ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କର ରଚିତ୍ର ନିର୍ଦ୍ଦେଶ ଓ ତତ୍ତ୍ୱାବଧାନରେ ରାଜ୍ୟ ସରକାର ସମସ୍ତ ପ୍ରକାରର ଉଦ୍ୟମ ଅବ୍ୟାହତ ରଖିଛନ୍ତି ଯଦ୍ୱାରା ବିଦ୍ୟୁତ୍ ଶକ୍ତି ବୃଦ୍ଧି ପାଇବା ସହିତ ରାଜ୍ୟର ସାମୂହିକ ବିକାଶ ସଙ୍ଘଟିତ ହେବା ନିଶ୍ଚିତ ।

---

**ଶକ୍ତି ମନ୍ତ୍ରୀ, ଓଡ଼ିଶା ।**



ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ତାଙ୍କ ବାସ ଭବନରେ "ତରୁଣ ସ୍ୱପ୍ନ" ନାମକ ଏକ ପୁସ୍ତକକୁ ଉନ୍ମୋଚନ କରୁଛନ୍ତି ।



# ଓଡ଼ିଶାରେ ଶିଳ୍ପର ସୁଯୋଗ

**ଶ୍ରୀ ଦିଲ୍ଲୀପ ରାୟ**

ଓଡ଼ିଶା ପ୍ରାକୃତିକ ସମ୍ପଦର ଏକ ସମୃଦ୍ଧ ରାଜ୍ୟ । ଖଣିଜ ପଦାର୍ଥଠାରୁ ଆରମ୍ଭ କରି ସାମୁଦ୍ରିକ ଓ କୃଷିଜ ପଦାର୍ଥର ପ୍ରାଚୁର୍ଯ୍ୟରେ ଏହି ରାଜ୍ୟ ଭରପୂର । ସମ୍ପ୍ରତି ଏହି ରାଜ୍ୟରେ ଶିଳ୍ପକ୍ଷେତ୍ରରେ ଦ୍ରୁତ ବିକାଶ ସାଧିତ ହେବାରେ ଲାଗିଛି । କେନ୍ଦ୍ର ସରକାରଙ୍କର କୋହଳ ନୀତିକୁ ଅନୁସରଣ କରି ରାଜ୍ୟ ସରକାର ନୂତନ ଶିଳ୍ପ ପ୍ରତିଷ୍ଠା କ୍ଷେତ୍ରରେ ସୁଯୋଗ ଓ ପ୍ରୋତ୍ସାହନ ଦେଇଆସୁଛନ୍ତି । ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରଣୀତ ୧୯୯୭ ଶିଳ୍ପ ନୀତିରେ ଲାଇସେନ୍ସ ପ୍ରଦାନ ଓ ପୁଞ୍ଜିଯୋଗାଣ କ୍ଷେତ୍ରରେ କେନ୍ଦ୍ର ସରକାରଙ୍କ ଉଦାର ନୀତିର ଅନୁକରଣ କରାଯାଇଛି । ଉତ୍ପାଦନକ୍ଷମ ଲାଭଜନକ ଶିଳ୍ପ ସଂସ୍ଥା ପାଇଁ ରାଜ୍ୟ ସରକାରଙ୍କ ତରଫରୁ ଆବଶ୍ୟକୀୟ ସୁବିଧା, ସୁଯୋଗ ସୃଷ୍ଟି କରାଯାଇଛି । କ୍ଷୁଦ୍ର, ମଧ୍ୟମ ଓ ବୃହତ୍ ଇତ୍ୟାଦି ବିଭିନ୍ନ ଶ୍ରେଣୀର ଘରୋଇ ଶିଳ୍ପ ସଂସ୍ଥା ପ୍ରତିଷ୍ଠା ପାଇଁ ଗୃହ ନିର୍ମାଣ ଓ ରାସ୍ତା ନିର୍ମାଣ ଟେଲି ଯୋଗାଯୋଗ ଓ ଆବଶ୍ୟକ ସ୍ଥଳେ ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟବସ୍ଥା ପାଇଁ ରାଜ୍ୟ ସରକାରଙ୍କ ତରଫରୁ ସୁଯୋଗ ଓ ସହାୟତା ପ୍ରଦାନ କରାଯାଇଛି ।

ରାଜ୍ୟରେ ୪ଟି ସରକାରୀ ଇଞ୍ଜିନିୟରିଂ କଲେଜ ଏବଂ ଗୋଟିଏ ବେସରକାରୀ ଇଞ୍ଜିନିୟରିଂ କଲେଜ ସମେତ ୧୧ଟି ସରକାରୀ ପଲିଟେକ୍ନିକ ୪ଟି ଘରୋଇ ପଲିଟେକ୍ନିକ୍ ଓ ୧୭ଟି ଶିଳ୍ପ ତାଲିମ୍ ଅନୁଷ୍ଠାନ (I.T.I.) ରହିଛି । ଏହା ଫଳରେ ରାଜ୍ୟର ବହୁ ଯୁବକ ଯୁବତୀ ଶିଳ୍ପ, କାରିଗରୀ ଓ ବୈଜ୍ଞାନିକ ଜ୍ଞାନ କୌଶଳ ଲାଭ କରିବାର ସୁଯୋଗ ପାଉଛନ୍ତି । କାରିଗରୀ ଓ ତାଲିମ୍ କ୍ଷେତ୍ରରେ ନୂତନ ଜ୍ଞାନ ଆହରଣ ପାଇଁ ରାଜ୍ୟ ସରକାର ଗୁରୁତ୍ୱ ଆରୋପ କରୁଛନ୍ତି । ସୁଖର କଥା ଯେ ଶିଳ୍ପର ପ୍ରଗତି ପଥରେ ଆଜି ରାଜ୍ୟର ମହିଳାମାନେ ଅଂଶୀଦାର ହୋଇ ପାରିଛନ୍ତି । ଶିଳ୍ପ ସଂସ୍ଥାଗୁଡ଼ିକର ଆବଶ୍ୟକତାକୁ ଚାହିଁ ଆମ ରାଜ୍ୟରେ ଏମ୍.ସି.ଟି.ଆଇ. ଓ ଆଇ.ଏଫ.ଟି.ଆଇ. ପରି ସ୍ୱତନ୍ତ୍ର ଶିଳ୍ପ ତାଲିମ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଛି ।

ଶିଳ୍ପର ଅଭିବୃଦ୍ଧି ପାଇଁ ଆର୍ଥିକ ସହାୟତା ପ୍ରଦାନ ନିମିତ୍ତ ରାଜ୍ୟରେ ଦୁଇଟି ସଂସ୍ଥା କାର୍ଯ୍ୟ କରୁଛି । ଇପିକଲ୍ (IPICOL) ସଂସ୍ଥା ମଧ୍ୟମ ଓ ବୃହତ୍ ଶିଳ୍ପ ସଂସ୍ଥାଗୁଡ଼ିକୁ ଆର୍ଥିକ ସହାୟତା ଯୋଗାଇ ଆସୁଥିବା ବେଳେ ଓଡ଼ିଶା ରାଜ୍ୟ ଅର୍ଥ ନିଗମ (OSFC) ମଧ୍ୟମ ଓ କ୍ଷୁଦ୍ର ଶିଳ୍ପ ସଂସ୍ଥାଗୁଡ଼ିକୁ ଆର୍ଥିକ ସାହାଯ୍ୟ ଦେଉଛନ୍ତି । ବିଗତ ୩ ବର୍ଷ ମଧ୍ୟରେ ଇପିକଲ୍ ୨୮.୬୭ କୋଟି ଟଙ୍କାର ଅଂଶଧନ ସଂଗ୍ରହ କରିବାକୁ ସକ୍ଷମ ହୋଇ ପାରିଛି । ଏହି ସଂସ୍ଥା ସହାୟତାରେ ୪୨ଟି ନୂତନ ଶିଳ୍ପ ଗଢ଼ି ଉଠିଛି । ଇପିକଲ୍ ରାଜ୍ୟର ପ୍ରମୁଖ ସଂସ୍ଥା ହୋଇଥିବାରୁ ବହୁ ନୂତନ ଶିଳ୍ପୋଦ୍ୟୋଗୀଙ୍କୁ ସହାୟତା ପ୍ରଦାନ କରି ଆସୁଛନ୍ତି । କାପାରୋ ଗ୍ରୁପ୍ ସହାୟତାରେ ରାଜ୍ୟରେ ସରକାରଙ୍କ ଦ୍ୱାରା ୨ୟ ଇସ୍ପାତ କାରଖାନା ପ୍ରତିଷ୍ଠା ପାଇଁ ପ୍ରସ୍ତାବ ନିଆଯାଇଛି । ଏହାଛଡ଼ା ଏକ ବିଶୋଧନାଗାର ଓ ଦୁଇଟି ଆଲୁମିନା କାରଖାନା ପ୍ରତିଷ୍ଠା ପାଇଁ ପ୍ରସ୍ତାବ ରହିଛି ।

ଓଡ଼ିଶା ରାଜ୍ୟ ଅର୍ଥ ନିଗମ କ୍ଷୁଦ୍ର ଓ ମଧ୍ୟମ ଶ୍ରେଣୀର ଶିଳ୍ପ ପ୍ରତିଷ୍ଠା ପାଇଁ ଆର୍ଥିକ ସହାୟତା ପ୍ରଦାନ କରି ଆସୁଛି । ନୂତନ ଶିଳ୍ପୋଦ୍ୟୋଗୀମାନଙ୍କୁ ଆନୁଷଙ୍ଗିକ ପରାମର୍ଶ, ବୈଷୟିକ ସହାୟତା ଓ ଆର୍ଥିକ ସହାୟତା ପ୍ରଦାନ କରି ରାଜ୍ୟ ଅର୍ଥ ନିଗମ ରାଜ୍ୟରେ ଶିଳ୍ପ ପ୍ରତିଷ୍ଠାର ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିପାରିଛି । ରାଜ୍ୟରେ ଆର୍ଥିକ ସମ୍ବଳର ଅଭାବ ଥିବା ହେତୁ ପ୍ରାକୃତିକ ସମ୍ପଦରେ ଭରପୂର ଥାଇ ମଧ୍ୟ ଶିଳ୍ପ କ୍ଷେତ୍ରରେ ଏକ ପଛୁଆ ରାଜ୍ୟ ଭାବରେ ପରିଗଣିତ ହେଉଛି । ରାଜ୍ୟ ଅର୍ଥ ନିଗମ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ପାଇଁ ଆର୍ଥିକ ସମସ୍ୟାର ଏହି ଗୁରୁ ଦାୟିତ୍ୱ ବହନ କରିବା ସହିତ ବୈଷୟିକ ଜ୍ଞାନ କୌଶଳ ଯୋଗାଇ ଆସୁଛି ।

ଶକ୍ତି ଉତ୍ପାଦନ, ପ୍ଲାଷ୍ଟିକ୍, ଚିନି, ଖଦୀ ଓ ଗ୍ରାମୋଦ୍ୟୋଗ, କୃଷିଭିତ୍ତିକ, ସାମୁଦ୍ରିକ, ଖାଦ୍ୟ, ପ୍ରକ୍ରିୟାକରଣ, ଚା, କଫି, ରବର, କାଜୁ ବୃକ୍ଷ, ଇଲେକ୍ଟ୍ରୋନିକସ୍, ମୂଲ୍ୟବାନ ପଥର ଭିତ୍ତିକ କ୍ଷୁଦ୍ରଶିଳ୍ପ, ଚମଡ଼ା ଶିଳ୍ପ, ପୋଷାକ ତିଆରି ଇତ୍ୟାଦି ବହୁ ନୂତନ ଶିଳ୍ପର ପ୍ରତିଷ୍ଠା ଓ ବିକାଶ ପାଇଁ ନୂତନ ପଦକ୍ଷେପ ନିଆଯାଇଛି ।

ରାଜ୍ୟରେ ପର୍ଯ୍ୟଟନର ବିକାଶ ପାଇଁ ଏହି ବିଭାଗ ଆନୁକୂଲ୍ୟରେ ବହୁ ପର୍ଯ୍ୟଟନ ଭିତ୍ତିକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଅତ୍ୟାଧୁନିକ ପରିବହନ ବ୍ୟବସ୍ଥା, ମୋଟର ଲଞ୍ଚ, ଜଳକ୍ରୀଡ଼ା କେନ୍ଦ୍ର, ସ୍ୱାସ୍ଥ୍ୟ ନିବାସ ଇତ୍ୟାଦି ଶିଳ୍ପ ବିଭାଗ ଦ୍ୱାରା କରାଯାଇ ପାରିଛି ।

ବୃକ୍ଷ ରୋପଣକୁ ଏକ ଶିଳ୍ପର ମର୍ଯ୍ୟାଦା ଦିଆଯାଇଛି । ବୃକ୍ଷ ରୋପଣ ପାଇଁ ଆବଶ୍ୟକୀୟ ଜମି ସରକାର ଯୋଗାଇ ଦେବାର ବ୍ୟବସ୍ଥା କରିବା ସହିତ ସରକାରଙ୍କ ଦ୍ୱାରା ଗୃହୀତ ବୃକ୍ଷ ରୋପଣ କାର୍ଯ୍ୟକ୍ରମରେ ଜନସାଧାରଣଙ୍କୁ ଲିଜ୍ ଆକାରରେ ସମସ୍ତ ସୁବିଧା

ସୁଯୋଗ ଦିଆଯାଉଛି । କୃଷି ଭିତ୍ତିକ ଓ ଖାଦ୍ୟ ପ୍ରକ୍ରିୟାକରଣ ଭିତ୍ତିକ ଶିଳ୍ପ ଉପରେ ଯଥା ସମ୍ଭବ ପ୍ରାଧାନ୍ୟ ଦିଆଯାଉଛି ।

ଶିଳ୍ପର ବିକାଶ ପାଇଁ ମୌଳିକ ଆବଶ୍ୟକ ବିଦ୍ୟୁତ୍ ଶକ୍ତିର ଉତ୍ପାଦନ ବୃଦ୍ଧି ପାଇଁ ରାଜ୍ୟ ସରକାର ଓଡ଼ିଶା ଶକ୍ତି ନିଗମ ମାଧ୍ୟମରେ ନୂତନ ପ୍ରକଳ୍ପମାନ ହାତକୁ ନେଇଛନ୍ତି । ସମସ୍ତ ଶିଳ୍ପକେନ୍ଦ୍ରକୁ ସ୍ୱଳ୍ପ ଦରରେ ଜମି ଓ ବିଦ୍ୟୁତ୍ ଶକ୍ତି ଯୋଗାଇ ଦିଆଯାଉଛି । ଓଡ଼ିଶା କ୍ଷୁଦ୍ର ଶିଳ୍ପ ନିଗମ ରାଜ୍ୟ ଭିତରେ ଓ ରାଜ୍ୟ ବାହାରେ ଉତ୍ପାଦିତ ଶିଳ୍ପ ସାମଗ୍ରୀଗୁଡ଼ିକର ବଜାର ସୃଷ୍ଟି ପାଇଁ ଆନୁଷଙ୍ଗିକ ବ୍ୟବସ୍ଥା କରିଛି ।

ହସ୍ତତନ୍ତ, ତାରକସି, ସିଙ୍ଗ କାମ, ପିତଳ କାମକୁ ଶିଳ୍ପର ପରିଧି ମଧ୍ୟକୁ ଅଣାଯାଇ ସେ ସବୁର ବିକାଶ ପାଇଁ ଶିଳ୍ପ ବିଭାଗ ପକ୍ଷରୁ ଏହାର ଉତ୍ପାଦନ ଓ ରପ୍ତାନୀ ପାଇଁ ବହୁ ପଦକ୍ଷେପ ଗ୍ରହଣ କରାଯାଇଛି । ସମ୍ପ୍ରତି ରାଜ୍ୟରେ "ରପ୍ତାନୀ ବିକାଶ ନିଗମ" ଗଠନ କରାଯାଇ ଏହି କାର୍ଯ୍ୟକ୍ରମକୁ ବ୍ୟାପକ ତ୍ୱରାନ୍ୱିତ କରାଯାଇଛି ।

ରାଜ୍ୟରେ ଏକ ସ୍ୱୟଂ ସମ୍ପୂର୍ଣ୍ଣ ଚଳଚିତ୍ର ଉନ୍ନୟନ ନିଗମ ଓ ରଙ୍ଗୀନ୍ ଲେବୋରେଟରୀ ରହିଛି । ରାଜ୍ୟରେ ଚଳଚିତ୍ର ଶିଳ୍ପର ସାମଗ୍ରିକ ବିକାଶ ପାଇଁ ଏହି ନିଗମ କାର୍ଯ୍ୟ କରି ଆସୁଛି । ଓଡ଼ିଆ ଭାଷାରେ କେତେକ ଓଡ଼ିଆ ଫିଚର ଚଳଚିତ୍ର ନିର୍ମାଣ ପାଇଁ ନିଗମ ସହବାନ ହୋଇପାରିଛି ।

ଉପରୋକ୍ତ ଦୃଷ୍ଟିକୋଣରୁ ଏହା ସ୍ପଷ୍ଟ ପ୍ରମାଣିତ ହୋଇଛି ଯେ ରାଜ୍ୟରେ ଶିଳ୍ପର ପ୍ରକୃତ ପ୍ରଗତି ସାଧିତ ହୋଇପାରିଛି । ରାଜ୍ୟରେ ଶିଳ୍ପ କ୍ଷେତ୍ରରେ ଦେଖା ଦେଇଥିବା ଦୈନ୍ୟ ଅବସ୍ଥାରୁ ଆଗେଇ ଆସି ଆମେ ଆଜି ଦୃଢ଼ ପଦକ୍ଷେପ ନେଇ ପାରିଛୁ ରାଜ୍ୟକୁ ଶିଳ୍ପ ସମୃଦ୍ଧ କରିବା ପାଇଁ ।

---

ମନ୍ତ୍ରୀ, ଶିଳ୍ପ ବିଭାଗ,
ଓଡ଼ିଶା ସରକାର ।



କାନଡ଼ାର ହାଇକମିଶନର ଶ୍ରୀ ଜନ୍ ଏଲ୍ ପେଲଚ୍ଚର, ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ସାକ୍ଷାତ କରୁଛନ୍ତି ।



# ଓଡ଼ିଶାରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମର ନୂତନ ଦିଗନ୍ତ

ଡାକ୍ତର (ଶ୍ରୀମତୀ) କମଳା ଦାସ

ଆମ ଓଡ଼ିଶା ଏକ ପଛୁଆ ରାଜ୍ୟ । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାକୁ ରୋକାଯାଇ ପାରୁ ନଥିବାରୁ, ତାହା ଏ ରାଜ୍ୟର ଯୋଜନାବଦ୍ଧ ବିକାଶ କ୍ଷେତ୍ରରେ ପ୍ରଧାନ ଅନ୍ତରାୟ ସୃଷ୍ଟି କରୁଛି । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଚାହିଦା ପୂରଣ ନିମନ୍ତେ ରାଜ୍ୟ ସରକାର ଖାଦ୍ୟ ଉତ୍ପାଦନ, ବାସଗୃହ ବ୍ୟବସ୍ଥା, ଶିକ୍ଷା ତଥା କର୍ମଯୋଗାଣ କ୍ଷେତ୍ରରେ ପର୍ଯ୍ୟାପ୍ତ ଅର୍ଥ ବ୍ୟୟ କଲେ ମଧ୍ୟ ସେସବୁ ଗୋଦରା କୋଡ଼େ ଯେତେ ମାଡ଼େ ସେତେ ନ୍ୟାୟରେ ସମୁଦ୍ରକୁ ଶଙ୍ଖେ ହେଲା ଭଳି ଲାଗୁଛି । ତେଣୁ, ଏହି ଜଟିଳ ସମସ୍ୟାର ସମାଧାନ ନିମନ୍ତେ ରାଜ୍ୟ ସରକାର ପରିବାର କଲ୍ୟାଣ ଯୋଜନା ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରିଛନ୍ତି ।

ଜାତୀୟ ସ୍ୱାସ୍ଥ୍ୟ ନୀତିକୁ ଆଖିରେ ରଖି, ଆଗାମୀ ୨୦୦୦ ମସିହା ଶେଷ ସୁଦ୍ଧା ସମସ୍ତଙ୍କ ପାଇଁ ସ୍ୱାସ୍ଥ୍ୟ ସୁବିଧା ଯୋଗାଇ ଦେବା ପାଇଁ ରାଜ୍ୟ ସରକାର ତାଙ୍କର ଉଦ୍ୟମ ଅବ୍ୟାହତ ରଖିଛନ୍ତି । ସେଥି ପାଇଁ ଜାତୀୟ ଜନସଂଖ୍ୟା ନୀତିର ଏକ ଅଂଶ ସ୍ୱରୂପ, ଆଗାମୀ ୨୦୦୦ ମସିହା ଶେଷ ସୁଦ୍ଧା ପରିବାର କଲ୍ୟାଣ କାର୍ଯ୍ୟକ୍ରମ ସମ୍ପର୍କିତ ନିମ୍ନସୂଚିତ ଲକ୍ଷ୍ୟ ପୂରଣ କରାଯିବା ପାଇଁ ସ୍ଥିର ହୋଇଛି ।

| | ଆଗାମୀ ୨୦୦୦ ମସିହା ସୁଦ୍ଧା ଲକ୍ଷ୍ୟ | ରାଜ୍ୟରେ ସମ୍ପ୍ରତି ହାସଲ ହୋଇଥିବା ଲକ୍ଷ୍ୟର ସ୍ତର |
|---|---|---|
| (୧) ଜନସଂଖ୍ୟା ବୃଦ୍ଧି | ୧·୨% | ୧·୯୬% |
| (୨) ମୋଟ ଜନ୍ମହାର | ୨୧/୧୦୦୦ | ୨୭/୧୦୦୦ |
| (୩) ମୋଟ ମୃତ୍ୟୁହାର | ୯/୧୦୦୦ | ୧୧·୭/୧୦୦୦ |
| (୪) ଶିଶୁ ମୃତ୍ୟୁହାର | ୬୦/୧୦୦୦ | ୧୧୪/୧୦୦୦ |
| (୫) ସନ୍ତାନ ଜନ୍ମର ସମ୍ଭାବନା ଏଡ଼ାଇ ପାରିଥିବା ଦମ୍ପତି | ୬୦% | ୩୮·୧% |

ରାଜ୍ୟରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ସମ୍ପର୍କିତ ଜାତୀୟ ଲକ୍ଷ୍ୟ ହାସଲ ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଇଛି । ଏଥିସହ ଗ୍ରାମାଞ୍ଚଳରେ ସନ୍ତାନ ଜନ୍ମ ମଧ୍ୟରେ ବ୍ୟବଧାନ ରକ୍ଷା କରାଯିବା ଦିଗରେ ମଧ୍ୟ ଅଧିକ ଗୁରୁତ୍ୱ ଦିଆଯିବ । ଅସ୍ଥାୟୀ ଗର୍ଭନିରୋଧ ପଦ୍ଧତି ଅପେକ୍ଷା ସ୍ଥାୟୀ ଗର୍ଭନିରୋଧ ପଦ୍ଧତି ଅଧିକ ଫଳପ୍ରଦ ବୋଲି ଅନୁଭବ କରାଯାଇଛି । ଯାହାହେଉନା କାହିଁକି, ପରିବାର ନିୟୋଜନ ପାଇଁ ସମସ୍ତ ପ୍ରକାର ଅସ୍ଥାୟୀ ତଥା ସ୍ଥାୟୀ ଗର୍ଭନିରୋଧ ପଦ୍ଧତି ପୂର୍ବଭଳି କାର୍ଯ୍ୟକରିବ ।

ରାଜ୍ୟରେ ପ୍ରତିଷ୍ଠିତ ସ୍ୱାସ୍ଥ୍ୟ ଉପକେନ୍ଦ୍ରଗୁଡ଼ିକ ପରିବାର ନିୟୋଜନ ଓ ପ୍ରତିଷେଧକ ଟିକାଦାନ ପାଇଁ କେନ୍ଦ୍ରବିନ୍ଦୁ ସ୍ୱରୂପ କାର୍ଯ୍ୟ କରିବ । ରାଜ୍ୟରେ ଶିଶୁ ମୃତ୍ୟୁହାର ସଂଖ୍ୟା ଅଧିକ ହେଉଥିବା ଯୋଗୁ ପରିବାର ନିୟୋଜନ କାର୍ଯ୍ୟକ୍ରମ ଆଶାନୁରୂପ ସଫଳତା ହାସଲ କରିପାରୁ ନାହିଁ । ତେଣୁ ଶିଶୁ ମୃତ୍ୟୁହାରକୁ ହ୍ରାସ କରାଯିବା ଉଚିତ । ତା'ହେଲେ ଯାଇ ସନ୍ତାନ ଜନ୍ମକ୍ଷମ ଦମ୍ପତିମାନେ ସ୍ଥାୟୀ ଗର୍ଭନିରୋଧ ପଦ୍ଧତି ଗ୍ରହଣ କରିବା ପାଇଁ ସ୍ୱେଚ୍ଛାରେ ଆଗେଇ ଆସିବେ । ସମନ୍ୱିତ ଶିଶୁ ବିକାଶ ପରିକଳ୍ପନା ଅନ୍ତର୍ଗତ ଗ୍ରାମଗୁଡ଼ିକରେ ଥିବା ଅଙ୍ଗନୱାଡ଼ି କେନ୍ଦ୍ରଗୁଡ଼ିକରେ ନିର୍ଦ୍ଧାରିତ ଦିବସଗୁଡ଼ିକରେ ପ୍ରତିଷେଧକ ଟୀକାଦାନ ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଛି । କିନ୍ତୁ ଉକ୍ତ ପରିକଳ୍ପନାର ଅନ୍ତର୍ଭୁକ୍ତ ହୋଇନଥିବା ଗ୍ରାମଗୁଡ଼ିକୁ ସ୍ୱାସ୍ଥ୍ୟ କର୍ମୀ କେବେ ପରିଦର୍ଶନରେ ଯିବେ ଏବଂ ସୁବିଧାରେ କିଭଳି ସେବା ଯୋଗାଇ ଦିଆଯିବ, ତାହା ଆଗରୁ ଜଣାଇ ଦିଆଯିବା ସକାଶେ କାର୍ଯ୍ୟକ୍ରମ ସ୍ଥିର ହୋଇଛି ।

ପରିବାର କଲ୍ୟାଣ କାର୍ଯ୍ୟକ୍ରମର ସେବା ଯେପରି ଜନସାଧାରଣଙ୍କ ହାତପାଆନ୍ତାରେ ପହଞ୍ଚିପାରିବ, ସେଥିପାଇଁ ବ୍ୟାପକ ଆକାରରେ ଗ୍ରାମ ପଞ୍ଚାୟତ ଓ ପଞ୍ଚାୟତ ସମିତିଗୁଡ଼ିକୁ ଏହି କାର୍ଯ୍ୟକ୍ରମ ସହ ସଂଶ୍ଳିଷ୍ଟ କରାଯାଇଛି । ପରିବାର କଲ୍ୟାଣ କାର୍ଯ୍ୟକ୍ରମ ପାଇଁ ପଞ୍ଚାୟତ ସମିତିଗୁଡ଼ିକର ସ୍ୱତନ୍ତ୍ର ବୈଠକ ଆହୁତ ହେବ । ଏଥିରେ ସମ୍ପୃକ୍ତ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରଗୁଡ଼ିକର ମେଡ଼ିକାଲ ଅଫିସରମାନେ ଯୋଗଦେବେ । ସଙ୍ଗେ ସଙ୍ଗେ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ସମ୍ପର୍କିତ ସମସ୍ତ ବିଷୟ ସବିଶେଷ ଆଲୋଚନା କରିବେ ଓ ସ୍ୱତନ୍ତ୍ର ଭାବରେ ଲକ୍ଷ୍ୟ ହାସଲ ଦିଗରେ ଅଧିକ ଗୁରୁତ୍ୱ ଦେବେ । କାର୍ଯ୍ୟକ୍ରମର ସଫଳତା ନିମନ୍ତେ କୌଣସି ପ୍ରତିବନ୍ଧକ ଉପୁଜୁଥିଲେ, ତାହିଁର ଦୂରୀକରଣ ପାଇଁ ସେମାନେ ସମୁଚିତ ପଦକ୍ଷେପ ଗ୍ରହଣ କରିବେ । ଏଣିକି ପରିବାର କଲ୍ୟାଣ କାର୍ଯ୍ୟକ୍ରମ ପଞ୍ଚାୟତ ସମିତିର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ହୋଇ ରହିବ ।

ପରିବାର କଲ୍ୟାଣ କାର୍ଯ୍ୟକ୍ରମ ଓ ଅଣୁ ଯୋଜନା (ମାଇକ୍ରୋପ୍ଲାନିଂ)ର ସଫଳତା ହାସଲ କ୍ଷେତ୍ରରେ ଯେଉଁସବୁ ଅସୁବିଧା ରହୁଛି, ସେସବୁର ନିରାକରଣ ପାଇଁ ଗ୍ରାମ ପଞ୍ଚାୟତଗୁଡ଼ିକ

ଏକ ଦଳ ସ୍ୱରୂପ କାର୍ଯ୍ୟ କରିବେ । ଏଣୁ ଯୋଜନା ଅନୁଯାୟୀ ପ୍ରତ୍ୟେକ ଗ୍ରାମ ପଞ୍ଚାୟତରେ ସନ୍ତାନ ଜନ୍ମ ସମ୍ଭାବନା ଏଡ଼ାଇ ପାରିଥିବା ଦମ୍ପତିଙ୍କ ଧାର୍ଯ୍ୟ ଲକ୍ଷ୍ୟ ଶତକଡ଼ା ୬୦ ହେବ ।

ରାଜ୍ୟ ସରକାର ସ୍ଥିର କରିଛନ୍ତି ଯେ ପରିବାର କଲ୍ୟାଣର ବାର୍ତ୍ତା ସବୁ ସ୍ତରରେ ପହଞ୍ଚାଇ ଦିଆଯିବ । ୧୯୯୫ ମସିହା ଜାନୁଆରୀ ପହିଲା ସୁଦ୍ଧା ଯେଉଁମାନଙ୍କର ଦୁଇଟିରୁ ଅଧିକ ସନ୍ତାନ ଥିବେ, ସେମାନେ ଗ୍ରାମ ପଞ୍ଚାୟତ, ପଞ୍ଚାୟତ ସମିତି, ସମବାୟ ସମିତି ଓ ମ୍ୟୁନିସିପାଲିଟି ନିର୍ବାଚନଗୁଡ଼ିକରେ ପ୍ରାର୍ଥୀ ହୋଇ ପାରିବେ ନାହିଁ ବୋଲି ସମ୍ପୃକ୍ତ ନିୟମାବଳୀକୁ ସଂଶୋଧନ କରାଯାଉଛି । ସେହିଭଳି, ରାଜ୍ୟରେ ଥିବା ଶିଳ୍ପ ସଂସ୍ଥାଗୁଡ଼ିକ ନିଜସ୍ୱ ସଫଳରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମରେ ପୂର୍ଣ୍ଣମାତ୍ରାରେ ଅଂଶ ଗ୍ରହଣ କରିବେ ।

'ଦୁଇଟି ସନ୍ତାନ' ନିୟମ ଭିତ୍ତିରେ ବିଭିନ୍ନ ପଦପଦବୀ ତଥା ଚାକିରିରେ ନିଯୁକ୍ତି ପ୍ରଦାନ କରାଯିବ । ସରକାରୀ କର୍ମଚାରୀମାନଙ୍କ ନିମନ୍ତେ ଉକ୍ତ ନିୟମ ପଦୋନ୍ନତି ଓ ବାର୍ଷିକ ବେତନ ବୃଦ୍ଧି, ପ୍ରସୂତିକାଳୀନ ଛୁଟି, ଗୃହ ନିର୍ମାଣ ଋଣ, କାର୍ ଋଣ ଆଦି କ୍ଷେତ୍ରରେ ପ୍ରଯୁଜ୍ୟ ହେବ । ଏହି ସମସ୍ତ ବ୍ୟବସ୍ଥା ନିଯୁକ୍ତି ନିୟମ ତଥା ସେବା ସର୍ତ୍ତାବଳୀର ଅଂଶବିଶେଷ ହେବ ।

ଦାରିଦ୍ର୍ୟ ବିମୋଚନ କାର୍ଯ୍ୟକ୍ରମ ଅନୁଯାୟୀ ସବୁଜ ପତ୍ରିକାଧାରୀଙ୍କ ନିମନ୍ତେ ସମନ୍ୱିତ ଗ୍ରାମ୍ୟ ବିକାଶ ପରିଯୋଜନାର ଶତକଡ଼ା ୭୫ ଭାଗ ଉପଭୋକ୍ତା ସ୍ଥାନ ସଂରକ୍ଷିତ ରହିବ । ପୂର୍ବରୁ ସବୁଜ ପତ୍ରିକାଧାରୀଙ୍କ ନିମନ୍ତେ ଯେଉଁ ବ୍ୟବସ୍ଥା ରହିଛି ତାହା ପୂର୍ବ ଭଳି ଅବ୍ୟାହତ ରହିବ । ଗୋଟିଏ କିମ୍ବା ଦୁଇଟି କନ୍ୟା ସନ୍ତାନ ପରେ ଯେଉଁମାନେ ସବୁଜ ପତ୍ରିକା ଗ୍ରହଣ କରିଥିବେ, ସେମାନଙ୍କ ପାଇଁ ଅଧିକ ପ୍ରୋତ୍ସାହନର ବ୍ୟବସ୍ଥା ରହିବ । ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ସ୍ତରରେ ସବୁଜ ପତ୍ରିକା ପ୍ରଦାନ କରାଯିବ ଏବଂ ଏହି ତାଲିକା ବ୍ଲକ୍‌କୁ ପଠାଇ ଦିଆଯିବ । ସବୁଜ ପତ୍ରିକାଧାରୀଙ୍କ ନିମନ୍ତେ ଉଦ୍ଦିଷ୍ଟ ଲଟେରୀ ବ୍ୟବସ୍ଥାର ପୁନଃ ପ୍ରଚଳନ କରାଯିବ । ପ୍ରତ୍ୟେକ ବର୍ଷ ଯେଉଁ ଗ୍ରାମ ପଞ୍ଚାୟତଗୁଡ଼ିକରେ ଲୋକ ସଂଖ୍ୟା ବୃଦ୍ଧିର ହାର ଶତକଡ଼ା ୧.୨ ହେବ, ସମ୍ପୃକ୍ତ ଜିଲ୍ଲାର ସେହି ଗ୍ରାମ ପଞ୍ଚାୟତଗୁଡ଼ିକୁ ପ୍ରୋତ୍ସାହନ ପୁରସ୍କାର ଦିଆଯିବା ପାଇଁ ବ୍ୟବସ୍ଥା ହୋଇଛି । ସହରାଞ୍ଚଳରେ ଏଭଳି ପ୍ରୋତ୍ସାହନ ଜନ୍ମହାର, ମୃତ୍ୟୁହାର ଓ ଶିଶୁ ମୃତ୍ୟୁହାରକୁ ବିଚାରକୁ ନିଆଯାଇ ପ୍ରଦାନ କରାଯିବ ।

ଶିଶୁ ମୃତ୍ୟୁ ଓ ଜନସଂଖ୍ୟା ବୃଦ୍ଧି ମଧ୍ୟରେ ଘନିଷ୍ଠ ସମ୍ପର୍କ ରହୁଥିବା ବିଷୟରେ ସରକାର ଅବଗତ ଅଛନ୍ତି । ଲୋକେ ନିଜ ଶିଶୁଟିର ବଞ୍ଚି ରହିବା ଉପରେ ନିଶ୍ଚିତ ନହେବାରୁ ସେମାନେ ସ୍ଥାୟୀ ଗର୍ଭନିରୋଧ ପଦ୍ଧତି ଗ୍ରହଣ କରିବାକୁ ଆଗେଇ ଆସୁ ନାହାନ୍ତି । ତେଣୁ, ଛୋଟ ପରିବାର ଗଠନ ପାଇଁ ପିତାମାତାଙ୍କୁ ଉତ୍ସାହିତ କରିବା ସହାଶେ ପ୍ରତିଷେଧକ ଟୀକାଦାନ ସମେତ ଶିଶୁ ସ୍ୱାସ୍ଥ୍ୟ ଓ ନିରାପଦ ମାତୃତ୍ୱ ବ୍ୟବସ୍ଥା ଉପରେ ଗୁରୁତ୍ୱ ଆରୋପ କରାଯିବ ଏବଂ ଏହାକୁ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ସହିତ ସଂଶ୍ଳିଷ୍ଟ କରାଯିବ । ବର୍ତ୍ତମାନ କେତେକ ମନୋନୀତ ଜିଲ୍ଲାରେ କାର୍ଯ୍ୟକାରୀ ହେଉଥିବା ଶିଶୁ ସୁରକ୍ଷା ଓ ନିରାପଦ ମାତୃତ୍ୱ କାର୍ଯ୍ୟକ୍ରମକୁ ସାରା ରାଜ୍ୟରେ ପରିବ୍ୟାପିତ କରାଯିବା ପାଇଁ ମଧ୍ୟ ନିଷ୍ପତ୍ତି ଗ୍ରହଣ କରାଯାଇଛି ।

ସରକାରୀ ଲାଇସେନ୍‌ସ ଓ ଡିଲରସିପ୍ ପ୍ରଦାନ କ୍ଷେତ୍ରରେ ଦୁଇଟି ସନ୍ତାନ ଥିବା ବ୍ୟକ୍ତିଙ୍କୁ ଅଗ୍ରାଧିକାର ଦିଆଯିବ । ଗ୍ରାମାଞ୍ଚଳରେ ନିର୍ମାଣ କାର୍ଯ୍ୟ କରିବା ପାଇଁ ଗ୍ରାମ୍ୟ କମିଟି ଲିଡ଼ରମାନଙ୍କୁ ମଧ୍ୟ ଏହି ନିୟମ ଅନୁଯାୟୀ ମନୋନୀତ କରାଯିବ ।

ଗୋଟିଏ ପରିବାରର ଦୁଇଟିରୁ ଅଧିକ ପିଲାଙ୍କୁ ଛାତ୍ର ବୃତ୍ତି ଓ ମାଗଣା ପାଠ୍ୟପୁସ୍ତକ ବଣ୍ଟନ କରାଯିବ ନାହିଁ । ଏହା ବ୍ୟତୀତ, ମହାବିଦ୍ୟାଳୟସ୍ତରୀୟ ପାଠ୍ୟପୁସ୍ତକରେ ପରିବାର ନିୟୋଜନ ପଦ୍ଧତି ସମ୍ପର୍କରେ ବିଷୟବସ୍ତୁ ମଧ୍ୟ ସନ୍ନିବେଶିତ ହେବ ।

ବ୍ୟାଙ୍କ୍ ଋଣ ଓ ସମବାୟ ଋଣ ଆଦି ପାଇବା କ୍ଷେତ୍ରରେ ଦୁଇଟି ସନ୍ତାନରୁ ଅଧିକ ଥିବା ବ୍ୟକ୍ତିଙ୍କୁ ବଞ୍ଚିତ କରାଯିବ । ସନ୍ଧ୍ୟାପ୍ତ ପାଇଁ ମଧ୍ୟ ଅନୁରୂପ ବ୍ୟବସ୍ଥା ଲାଗୁ କରାଯିବ ।

ସମସ୍ତ ସରକାରୀ ବିଭାଗର କ୍ଷେତ୍ର ସ୍ତରରେ କାର୍ଯ୍ୟ କରୁଥିବା ଗ୍ରାମ୍ୟ କର୍ମୀ, ଗ୍ରାମ୍ୟ କୃଷି କର୍ମୀ, ସ୍କୁଲ ଶିକ୍ଷକ, ଅଙ୍ଗନୱାଡ଼ି କର୍ମୀମାନେ ପରିବାର କଲ୍ୟାଣ କାର୍ଯ୍ୟକ୍ରମ ସହିତ ସମ୍ପୃକ୍ତ ରହିବେ । ଜିଲ୍ଲାପାଳ, ଉପ-ଜିଲ୍ଲାପାଳ ଓ ବ୍ଲକ୍ ଉନ୍ନୟନ ଅଧିକାରୀମାନେ ପରିବାର କଲ୍ୟାଣ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବେ ଏବଂ ନିଜନିଜର ପରିସରଭୁକ୍ତ ଅଞ୍ଚଳରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମର ସଫଳତା ପାଇଁ କାର୍ଯ୍ୟ କରିବେ ।

ଜନସାଧାରଣଙ୍କ ସକ୍ରିୟ ଅଂଶ ଗ୍ରହଣ ଦ୍ୱାରା ପରିବାର କଲ୍ୟାଣକୁ ଏକ ଗଣ କାର୍ଯ୍ୟକ୍ରମରେ ରୂପାନ୍ତରିତ କରିବା ସରକାରଙ୍କର ଆନ୍ତରିକ ଇଚ୍ଛା । ଗର୍ଭନିରୋଧ ସାମଗ୍ରୀଗୁଡ଼ିକର ସାମାଜିକ ବିକ୍ରିବଟା ବ୍ୟବସ୍ଥା କରାଯିବ । ପ୍ରତ୍ୟେକ ଗ୍ରାମ ପଞ୍ଚାୟତରେ ଅନ୍ୟୁନ ୫୦୦ ସନ୍ତାନ ଜନ୍ମକ୍ଷମ ଦମ୍ପତିଙ୍କ ମଧ୍ୟରେ ଜନସଂଖ୍ୟା ନିୟନ୍ତ୍ରଣ ଓ ଛୋଟ ପରିବାର ଗଠନର ବାର୍ତ୍ତା ପହଞ୍ଚାଇବା ପାଇଁ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଠନ କରାଯିବ । ମୋଟାମୋଟି ଭାବେ, ଗୋଟିଏ ଗ୍ରାମ ପଞ୍ଚାୟତ ଗୋଟିଏ ସ୍ୱେଚ୍ଛାସେବୀ ଅନୁଷ୍ଠାନର ପରିସରଭୁକ୍ତ ହେବ । ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରର ଡାକ୍ତର ଓ ବ୍ଲକ୍ ଉନ୍ନୟନ ଅଧିକାରୀ ଗ୍ରାମ ପଞ୍ଚାୟତର ସହାୟତାରେ ପରିବାର କଲ୍ୟାଣ କାର୍ଯ୍ୟକ୍ରମର ପ୍ରସାର ନିମନ୍ତେ ଏଭଳି ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଠନ କରିବେ । ବ୍ଲକ୍ ସ୍ତରରେ ପଞ୍ଚାୟତ ସମିତି ଏହି ସ୍ୱେଚ୍ଛାସେବୀ ଅନୁଷ୍ଠାନଗୁଡ଼ିକର କାର୍ଯ୍ୟ ସମୀକ୍ଷା କରିବା ସଙ୍ଗେ ସଙ୍ଗେ ତ୍ୱରାନ୍ୱିତ କରିବେ । ପରିବାର କଲ୍ୟାଣ କାର୍ଯ୍ୟକ୍ରମ ସଂକ୍ରାନ୍ତୀୟ ବିଭିନ୍ନ ପଦକ୍ଷେପ ଗ୍ରହଣ କରିବା ପାଇଁ ଏହି ଅନୁଷ୍ଠାନର ସଭ୍ୟବୃନ୍ଦ ତଥା ଅନ୍ୟାନ୍ୟ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣର କର୍ମୀଗଣଙ୍କୁ ପ୍ରଶିକ୍ଷଣ ଦେବା ନିମନ୍ତେ ବ୍ଲକ୍ ସ୍ତରରେ ଅଭିଯାନ ଅବ୍ୟାହତ ରହିବ ।

ପରିବାର କଲ୍ୟାଣ କାର୍ଯ୍ୟକ୍ରମ ନିମନ୍ତେ ରାଜ୍ୟ ସରକାରଙ୍କ ଦ୍ୱାରା ଅନୁମୋଦିତ ଏହି ଫଳପ୍ରଦ ପଦକ୍ଷେପଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ଅର୍ଥାତ୍ ୧୯୯୫ ମସିହା ଜାନୁଆରୀ ପହିଲାଠାରୁ କାର୍ଯ୍ୟକାରୀ ହେବ । ଏହି ସ୍ୱଳ୍ପମିଆଦି ପଦକ୍ଷେପଗୁଡ଼ିକ ସମେତ ସରକାରୀ ଅନୁମୋଦିତ କେତେକ ଦୀର୍ଘକାଳୀନ ପଦକ୍ଷେପ ମଧ୍ୟ ଗ୍ରହଣ କରାଯିବ । ଏଗୁଡ଼ିକ ମଧ୍ୟରେ ମହିଳାମାନଙ୍କ ପାଇଁ ସାକ୍ଷରତା ଓ କର୍ମ ଗବେଷଣାର ବିକାଶ ଉପରେ ଅଧିକ ଗୁରୁତ୍ୱ ଦିଆଯିବ ।

ଏ ସମସ୍ତ ପଦକ୍ଷେପ ସଫଳ ରୂପେ କାର୍ଯ୍ୟକାରୀ ହେଲେ ଆଗାମୀ ୨୦୦୦ ମସିହା ସୁଦ୍ଧା ପରିବାର କଲ୍ୟାଣ କ୍ଷେତ୍ରରେ ଧାର୍ଯ୍ୟ ଲକ୍ଷ୍ୟ ହାସଲ କରିବା ସମ୍ଭବ ହୋଇପାରିବ ।

ମନ୍ତ୍ରୀ,
ପରିବାର କଲ୍ୟାଣ, ଓଡ଼ିଶା ।



ଗହିରମଥାଠାରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ କଇଁଛ ଅଣ୍ଡା ଦିଆ କେନ୍ଦ୍ର ପରିଦର୍ଶନ କରୁଛନ୍ତି ।




ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ମେସ୍କୋ ଇସ୍ପାତ କାରଖାନା କାର୍ଯ୍ୟର ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରୁଛନ୍ତି ।



ସୂଚନା ଭବନଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଜୀବନୀ ଓ କାର୍ଯ୍ୟ ଉପରେ ଆଧାରିତ ଏକ ପ୍ରଦର୍ଶନୀକୁ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ଉଦ୍‌ଘାଟନ କରି ବୁଲି ଦେଖୁଛନ୍ତି ।



ବଲାଙ୍ଗୀରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କାରଖାନା। ଷୁଦ୍ର ଜଳସେଚନ ପ୍ରକଳ୍ପକୁ ଉଦ୍‌ଘାଟନ କରୁଛନ୍ତି ।



ଉତ୍କଳ ବିଶ୍ୱବିଦ୍ୟାଳୟର ଏମ୍: କେ: ସି: ଜି: ପ୍ରେକ୍ଷାଳୟ ଗୃହରେ ଆୟୋଜିତ ମନସ୍ତତ୍ତ୍ୱ ଆଲୋଚନା ଚକ୍ରରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀ ଅଭିଭାଷଣ ଦେଉଛନ୍ତି ।



କଳାହାଣ୍ଡି ଜିଲ୍ଲାର ମଧୁରାଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଏକ ଚିନି କାରଖାନାକୁ ଉଦ୍‌ଘାଟନ କରି ବୁଲି ଦେଖୁଛନ୍ତି ।



ବଜେଟ୍ ଅଧିବେଶନରେ ଅଭିଭାଷଣ ଦେବା ନିମନ୍ତେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି: ସତ୍ୟନାରାୟଣ ରେଡ୍ଡୀ ବିଧାନ ସଭା ବାଚସ୍ପତି ଶ୍ରୀ ଯୁଧିଷ୍ଠିର ଦାସଙ୍କ ସହଗରେ ବିଧାନ ସଭା ଗୃହରେ ପ୍ରବେଶ କରୁଛନ୍ତି ।



ଉଦୟଗିରି, ଗୁମ୍ଫାଠାରେ ଟି. ଭି. ଧାରାବାହିକ "ସମ୍ରାଟ ଖାରବେଳ"ର ମହୁରତ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ।



ସଚିବାଳୟ ସମ୍ମିଳନୀ କକ୍ଷରେ ଅନୁଷ୍ଠିତ ଏକ ସାମ୍ବାଦିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅଭିଭାଷଣ ।




ନୟାଗଡ଼ ଜିଲ୍ଲାର ଛାମୁଣ୍ଡିଆଠାରେ ବୁଢ଼ଙ୍ଗ ସେତୁକୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଉଦ୍‌ଘାଟନ କରୁଛନ୍ତି ।




ରାହାମାଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ, ପ୍ରତାପ ଚନ୍ଦ୍ର ସ୍ମାରକୀ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରକୁ ଉଦ୍‌ଘାଟନ କରୁଛନ୍ତି ।




ବାରିପଦାର ଅସନବୋଡ଼ାଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କନ୍ୟାଶ୍ରମ ଗୃହକୁ ଉଦ୍‌ଘାଟନ କରୁଛନ୍ତି ।



ଭୁବନେଶ୍ୱରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଇନ୍ଦିରା ଗାନ୍ଧୀ ଆଦିବାସୀ ଛାତ୍ରୀ ନିବାସର ବାର୍ଷିକ-ଉତ୍ସବରେ ଯୋଗଦାନ କରିଛନ୍ତି ।



ବିଜିବାଟିଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ କ୍ଷୁଦ୍ର ଜଳ ବିଦ୍ୟୁତ୍ ପ୍ରକଳ୍ପ ଉଦ୍ଘାଟନ କରି ବୁଲି ଦେଖୁଛନ୍ତି ।



ସଚିବାଳୟ ସମ୍ମିଳନୀ କକ୍ଷରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଆଦିବାସୀ ମହିଳା ଉପଦେଷ୍ଟାମାନଙ୍କ ସହ ଏକ ବୈଠକରେ ଯୋଗଦାନ କରିଛନ୍ତି ।



କେନ୍ଦୁଝରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଜିଲ୍ଲାସ୍ତରୀୟ ପ୍ରଦର୍ଶନୀକୁ ଉଦ୍‌ଘାଟନ କରୁଛନ୍ତି ।



# ଓଡ଼ିଶାର ଶିଳ୍ପଭିତ୍ତିକ ପ୍ରଗତି

ଶ୍ରୀ ଯାଦବ ମାଝୀ

ଓଡ଼ିଶାର ବିପୁଳ ପ୍ରାକୃତିକ ସମ୍ପଦର ସଦୁପଯୋଗ କରି ଓଡ଼ିଶାକୁ ଶିଳ୍ପ ସମୃଦ୍ଧ ଏବଂ ଓଡ଼ିଶାବାସୀଙ୍କୁ କର୍ମ ଯୋଗାଣ ଲକ୍ଷ୍ୟ ରଖି ଓଡ଼ିଶା ସରକାର ଆଶାତୀତ ଭାବେ ଅଗ୍ରସର ହୋଇପାରିଛନ୍ତି । ବର୍ତ୍ତମାନର ସରକାର ୧୯୯୦ ମସିହାରେ ରାଜ୍ୟର ଶାସନ ଭାର ନେବା ପରଠାରୁ କ୍ଷୁଦ୍ର ଶିଳ୍ପଠାରୁ ଆରମ୍ଭ କରି ବୃହତ୍ ଶିଳ୍ପ ପର୍ଯ୍ୟନ୍ତ ଅନେକଗୁଡ଼ିଏ ଶିଳ୍ପ ପ୍ରତିଷ୍ଠା କରିଛନ୍ତି ଓ ବହୁ କୁଶଳୀ ଓ ଅର୍ଦ୍ଧକୁଶଳୀ ବେକାରଙ୍କୁ କର୍ମସଂସ୍ଥାନ ଯୋଗାଇ ପାରିଛନ୍ତି । ଭାରତ ସରକାରଙ୍କର ଖୋଲା ଶିଳ୍ପ ନୀତିକୁ ଅନୁସରଣ କରି ରାଜ୍ୟ ସରକାର ୧୯୮୯ ମସିହାରେ ପ୍ରଚଳିତ ଶିଳ୍ପ ନୀତିକୁ ନୂତନ ରୂପ ଦେଇ ୧୯୯୨ ମସିହାରେ ଏକ ନୂତନ ଶିଳ୍ପ ନୀତି ଘୋଷଣା କରିଛନ୍ତି । ଏହି ଶିଳ୍ପ ନୀତିରେ ରପ୍ତାନୀଯୋଗ୍ୟ ଶିଳ୍ପ, ବସ୍ତ୍ରର ବିକଳ୍ପ ଉତ୍ପାଦନ, ଚମଡ଼ା, ମୂଲ୍ୟବାନ ରତ୍ନ ପଥରର ଉତ୍ପାଦନ (Processing), ଲୌହପିଣ୍ଡ, ଫେରୋକ୍ରୋମ ମିଶ୍ରିତ ସ୍ୱତନ୍ତ୍ର ଲୌହ, ଇଲେକ୍‌ଟ୍ରୋନିକ୍, କୃଷିଭିତ୍ତିକ ଶିଳ୍ପ, ଚା, କଫି, ରବର, କାଜୁ ଓ ମସଲା ଉତ୍ପାଦନ ଇତ୍ୟାଦି ଅର୍ଥକରୀ ଫସଲ, ବୟନ, ପ୍ଲାଷ୍ଟିକ୍, ଶକ୍ତି ଉତ୍ପାଦନ ଉପରେ ଗୁରୁତ୍ୱ ଆରୋପ କରାଯାଇଛି ।

## କ୍ଷୁଦ୍ର ଶିଳ୍ପ :

ଗତ ୧୯୯୦ ମସିହା ଏପ୍ରିଲ ମାସଠାରୁ ୧୯୯୩ ମସିହା ଡିସେମ୍ବର ମାସ ମଧ୍ୟରେ ରାଜ୍ୟ ସରକାର ୧୯୯୩୨-୧୫ ଲକ୍ଷ ଟଙ୍କା ବିନିଯୋଗ କରି ୭,୬୦୧ଟି କ୍ଷୁଦ୍ର ଶିଳ୍ପ ସଂସ୍ଥା ପ୍ରତିଷ୍ଠା କରି ପାରିଛନ୍ତି, ଯାହାଦ୍ୱାରା ୫୦,୮୯୩ ଜଣ ବ୍ୟକ୍ତିଙ୍କୁ କର୍ମସଂସ୍ଥାନ ଯୋଗାଇ ଦିଆଯାଇ ପାରିଛି । ଏତଦ୍ ବ୍ୟତୀତ ୨,୬୦୦ରୁ ଊର୍ଦ୍ଧ୍ୱ ରୁଗ୍ଣ ହୋଇ ପଡ଼ିଥିବା କ୍ଷୁଦ୍ର ଶିଳ୍ପ ସଂସ୍ଥାଗୁଡ଼ିକର ଅନୁଧ୍ୟାନ କରାଯାଇ ଏକ ତୃତୀୟାଂଶ ଅନୁଷ୍ଠାନ ପୁନଃସଂସ୍ଥାନ କରାଯିବା ନିମନ୍ତେ ପଦକ୍ଷେପ ଗ୍ରହଣ କରାଯାଇଛି ।

## ଆତ୍ମ ନିଯୁକ୍ତି ଯୋଜନା :

ବେକାର ଶିକ୍ଷିତ ଯୁବକ ଯୁବତୀମାନଙ୍କ ପାଇଁ ଆତ୍ମ ନିଯୁକ୍ତି ଯୋଜନା ମାଧ୍ୟମରେ ୧୯୯୦ ମସିହା ଏପ୍ରିଲ ମାସଠାରୁ ୧୯୯୩ ମସିହା ନଭେମ୍ବର ମାସ ମଧ୍ୟରେ ୪,୦୧୮ ଜଣ ବେକାର ଶିକ୍ଷିତ ଯୁବକ ଯୁବତୀମାନଙ୍କୁ ୧୫୪୩-୦୦ ଲକ୍ଷ ଟଙ୍କା ଋଣ ଯୋଗାଇ ଦିଆଯାଇ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯାଇଛି । ୧୯୯୩ ମସିହା ଅକ୍ଟୋବର ମାସ ୨ ତାରିଖଠାରୁ ପ୍ରଧାନମନ୍ତ୍ରୀଙ୍କ କର୍ମ ନିଯୁକ୍ତି ଯୋଜନା (PMRY) ମାଧ୍ୟମରେ ୧୯୯୩-୯୪ ବର୍ଷ ପାଇଁ ୮୬୫ ଜଣ ସହରାଞ୍ଚଳ ଶିକ୍ଷିତ ବେକାର ଯୁବକ ଯୁବତୀମାନଙ୍କୁ ଏହି ଯୋଜନାରେ ଥଇଥାନ କରିବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

## କାରିଗରି ଶିଳ୍ପ :

କାରିଗରି ଶିଳ୍ପ ପ୍ରତିଷ୍ଠା କ୍ଷେତ୍ରରେ ବିଗତ ତିନିବର୍ଷରେ (୧୯୯୦-୯୧-୯୨-୯୩) ଉଲ୍ଲେଖନୀୟ ପ୍ରଗତି ହୋଇପାରିଛି । ଏହି ସମୟ ମଧ୍ୟରେ ୭୪୯୭-୫୦ ଲକ୍ଷ ଟଙ୍କା ବିନିଯୋଗ ପାଇଁ ୧,୮୭,୮୩୯ଟି କାରିଗରି ଶିଳ୍ପ ପ୍ରତିଷ୍ଠା କରାଯାଇ ୩୪,୮୫,୯୦୪ ଜଣ ଲୋକଙ୍କୁ କର୍ମ ସଂସ୍ଥାନ ଯୋଗାଇ ଦିଆଯାଇ ପାରିଛି । ରାଜ୍ୟରେ ଶିଳ୍ପାୟନକୁ ତ୍ୱରାନ୍ୱିତ ଏବଂ ଗ୍ରାମାଞ୍ଚଳରେ ବାସ କରୁଥିବା ଲୋକମାନଙ୍କୁ କର୍ମ ସଂସ୍ଥାନର ଉନ୍ନତି ତଥା ସ୍ଥାନୀୟ କାରିଗରି ଜ୍ଞାନ କୌଶଳର ଉପଯୁକ୍ତ ବିନିଯୋଗ କରି ଗ୍ରାମ୍ୟଭିତ୍ତିକ ଶିଳ୍ପଜାତ ପଦାର୍ଥର ଉତ୍ପାଦନ ନିମିତ୍ତ ୧୯୬୨ ମସିହାଠାରୁ ବିଭିନ୍ନ ସ୍ଥାନରେ ପଞ୍ଚାୟତ ଶିଳ୍ପ ଯୋଜନା କାର୍ଯ୍ୟକାରୀ ହୋଇଆସୁଛି । ଏହି ଯୋଜନାରେ ଶିଳ୍ପ ସମବାୟ ସଂସ୍ଥାମାନ ଗଠନ କରାଯାଇ ରାଜ୍ୟ ସରକାରଙ୍କ ଦ୍ୱାରା ଗ୍ରାମ ପଞ୍ଚାୟତ ଏବଂ ରାଜ୍ୟ ସରକାରଙ୍କ ଅଂଶ ଧନ ବିନିଯୋଗରେ କାଠ କାରଖାନା, ତେଲ କଳ, ଲୌହ ଶିଳ୍ପ କାରଖାନା, ଟାଇଲି କାରଖାନା ଓ ଅନ୍ୟାନ୍ୟ ବହୁବିଧ ପଞ୍ଚାୟତ ଶିଳ୍ପ ସ୍ଥାପନ କରାଯାଇଛି । ଏହି ଶିଳ୍ପ ସଂସ୍ଥାଗୁଡ଼ିକ ୧୯୯୧-୯୨ରେ ୧୭୭-୧୬ ଲକ୍ଷ ଟଙ୍କାର ଦ୍ରବ୍ୟ ଉତ୍ପାଦନ କରିଛନ୍ତି । ଏହି ଶିଳ୍ପ ସମବାୟ ସମିତିଗୁଡ଼ିକର ୭୬୮ ଜଣଙ୍କୁ କର୍ମ ସଂସ୍ଥାନ ଯୋଗାଇ ଦିଆଯାଇଛି । ସେହିପରି ୧୯୯୨-୯୩ ବର୍ଷରେ ୨୪୪-୧୦ ଲକ୍ଷ ଟଙ୍କାର ଦ୍ରବ୍ୟ ଉତ୍ପାଦନ ହେବା ସଙ୍ଗେ ସଙ୍ଗେ ୨୬୯-୭୮ ଲକ୍ଷ ଟଙ୍କାର ଦ୍ରବ୍ୟ ବିକ୍ରୟ କରାଯାଇଛି । ଏହି ସମୟ ମଧ୍ୟରେ ୮୪୭ ଜଣ ବ୍ୟକ୍ତିଙ୍କୁ କର୍ମ ସଂସ୍ଥାନ ଯୋଗାଇ ଦିଆଯାଇଛି । ଚଳିତ ଆର୍ଥିକ ବର୍ଷର (୧୯୯୩-୯୪) ପ୍ରଥମ ମାସ ମଧ୍ୟରେ ପଞ୍ଚାୟତ ଶିଳ୍ପ ସମିତିଗୁଡ଼ିକ ୮୫-୧୩ ଲକ୍ଷ ଟଙ୍କାର ଜିନିଷ ବିକ୍ରୟ କରିଛନ୍ତି ଏବଂ ୯୪-୪୩ ଲକ୍ଷ ଟଙ୍କାର ଜିନିଷ ବିକ୍ରୟ କରିଛନ୍ତି । ଏ ବର୍ଷ ସରକାରଙ୍କ ତରଫରୁ ୩୦ ଲକ୍ଷ ଟଙ୍କାର ମୂଳ ଧନ ଯୋଗାଇ ଦେବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ସପ୍ତମ ପଞ୍ଚବାର୍ଷିକ ଯୋଜନା ସୁଦ୍ଧା ସରକାରଙ୍କ ତରଫରୁ ଏ ବାବଦରେ ୩୦ ଲକ୍ଷ ଟଙ୍କା ଯୋଗାଇ ଦିଆଯାଇଥିଲା ।

## ସହାୟକ ଶିଳ୍ପ :

୧୯୯୩–୯୪ ଆର୍ଥିକ ବର୍ଷରେ ରାଜ୍ୟରେ- ସହାୟକ ଶିଳ୍ପ ସମ୍ପର୍କରେ କାର୍ଯ୍ୟାନୁଷ୍ଠାନ ତ୍ୱରାନ୍ୱିତ କରାଯାଇଛି । ସରକାରୀ ଉଦ୍ୟୋଗଗୁଡ଼ିକ ଯଥା–ରାଉରକେଲା ଇସ୍ପାତ୍ କାରଖାନା, ନାଲ୍କୋ, ହିନ୍ଦୁସ୍ଥାନ ଏରୋନେଟିକ୍ସ ଲିମିଟେଡ୍, ପାରାଦ୍ୱୀପ ଫସ୍‌ଫେଟସ୍, ଇଣ୍ଡିଆନ୍ ରେଆର ଆର୍ଥ ଲିମିଟେଡ୍, ଅର୍ଡ଼ନାନ୍ସ ଫାକ୍ଟ୍ରୀ, ଫର୍ଟିଲାଇଜର କର୍ପୋରେସନ୍ ଅଫ୍ ଇଣ୍ଡିଆ ଲିମିଟେଡ୍ ପ୍ରଭୃତିଙ୍କର ଚାହିଦା ଅନୁଯାୟୀ ସର୍ବେକ୍ଷଣ କରାଯାଇ ୨୦୦ ଗୋଟି ନୂଆ ସହାୟକ ଶିଳ୍ପଗୁଡ଼ିକର ଚିହ୍ନଟ କରାଯାଇଛି । ଏଗୁଡ଼ିକ ମଧ୍ୟରୁ କେତେଗୋଟି ବର୍ତ୍ତମାନର ପ୍ରଚଳିତ ଶିଳ୍ପଗୁଡ଼ିକ ସହ ଜଡ଼ିତ ହୋଇ ରହିଛି । ବର୍ତ୍ତମାନ ରାଉରକେଲା ଇସ୍ପାତ୍ କାରଖାନା, ନାଲ୍କୋ, ମହାନଦୀ କୋଇଲା ଖଣି ଲିମିଟେଡ୍, ପାରାଦ୍ୱୀପ ଫସ୍‌ଫେଟ୍‌ସ ଉପରେ ଗୁରୁତ୍ୱ ଆରୋପ କରାଯାଇ ସହାୟକ ଶିଳ୍ପଗୁଡ଼ିକ ପ୍ରତିଷ୍ଠା ନିମନ୍ତେ ଯଥେଷ୍ଟ ପ୍ରାଧାନ୍ୟ ଦିଆଯାଇଛି ।

## ବୃହତ୍ ଓ ମଧ୍ୟମ ଶିଳ୍ପ :

୧୯୯୦ ମସିହା ଏପ୍ରିଲ ମାସରୁ ୧୯୯୩ ନଭେମ୍ବର ମାସ ମଧ୍ୟରେ ୪୯ଟି ବୃହତ୍ ଓ ମଧ୍ୟମ ନୂତନ ଶିଳ୍ପାନୁଷ୍ଠାନ ୧୯୦.୩୭ କୋଟି ଟଙ୍କା ବିନିମୟରେ ପ୍ରତିଷ୍ଠା କରାଯାଇ ୬,୦୩୯ ଜଣ ଲୋକଙ୍କୁ କର୍ମ ସଂସ୍ଥାନ ଯୋଗାଇ ଦିଆଯାଇଛି । ଏତଦ୍ ବ୍ୟତୀତ ୨୦୩.୮୫ କୋଟି ଟଙ୍କା ବିନିଯୋଗରେ ୪,୫୦୦ ଜଣ ଲୋକଙ୍କର କର୍ମ ସଂସ୍ଥାନ କରିବା ନିମନ୍ତେ ୩୬ଟି ପ୍ରକଳ୍ପ କାର୍ଯ୍ୟକାରୀ ହେବାକୁ ଯାଉଅଛି । ଏହି ସମୟ ମଧ୍ୟରେ ୬୭ଟି ପ୍ରତିଷ୍ଠାନକୁ ପୁନରୁଦ୍ଧାର କରିବା ନିମିତ୍ତ ଯୋଜନା କରାଯାଉଅଛି । ଅଷ୍ଟମ ପଞ୍ଚବାର୍ଷିକ ଯୋଜନା କାଳ ମଧ୍ୟରେ କୃଷିଭିତ୍ତିକ ଶିଳ୍ପ ତଥା ଚିନି, ଲବଣ ଓ ଲୌହ ଇସ୍ପାତ ଶିଳ୍ପ ଉପରେ ଗୁରୁତ୍ୱ ଦିଆଯାଇଛି । ଏଥିନିମିତ୍ତ କୋରାପୁଟ, ଗଞ୍ଜାମ, ଫୁଲବାଣୀ, କଳାହାଣ୍ଡି, ବଲାଙ୍ଗୀର, କେନ୍ଦୁଝର, ବାଲେଶ୍ୱର ଓ କଟକ ପ୍ରଭୃତି ଜିଲ୍ଲାମାନଙ୍କରେ ଦିନକୁ ୨,୫୦୦ ଟନ୍ କ୍ଷମତାସମ୍ପନ୍ନ ବିଶିଷ୍ଟ ଚିନି କାରଖାନାମାନ ପ୍ରତିଷ୍ଠା କରିବା ନିମିତ୍ତ ପରିକଳ୍ପନା କରାଯାଉଛି । ଏହାଦ୍ୱାରା ୫,୦୦୦ ଲୋକଙ୍କୁ କର୍ମ ସଂସ୍ଥାନ ଯୋଗାଇ ଦିଆଯାଇ ପାରିବ । ଦୈତାରୀଠାରେ ବର୍ଷକୁ ୦.୨୫ରୁ ୧ ନିୟୁତ ଟନ୍ ପର୍ଯ୍ୟନ୍ତ ଓ ଇସ୍ପାତ ଉତ୍ପାଦନ ନିମିତ୍ତ ୨୧୬ କୋଟି ଟଙ୍କା ବିନିମୟରେ ଏକ ପ୍ରକଳ୍ପ କାର୍ଯ୍ୟକାରୀ ହେବାକୁ ଯାଉଛି । ଏହାଦ୍ୱାରା ୬୨୭ ଜଣ ଲୋକ କର୍ମ ସଂସ୍ଥାନ ପାଇପାରିବେ । ଭାରତରେ ପ୍ରଥମ ଥର ପାଇଁ ୧୯୯୧ ମସିହା ମାର୍ଚ୍ଚ ମାସଠାରୁ ଷ୍ଟେନ୍‌ଲେସ୍ ଷ୍ଟିଲ୍ କଣ୍ଡେନ୍‌ସର ଟ୍ୟୁବ୍ ପ୍ରକଳ୍ପ ଭୁବନେଶ୍ୱରଠାରେ ଉତ୍ପାଦନ କାର୍ଯ୍ୟ ଆରମ୍ଭ କରିଛି । ଏହା ଖୁବ୍ କମ୍ ସମୟ ମଧ୍ୟରେ ଆନ୍ତର୍ଜାତିକ ବଜାରରେ ପ୍ରବେଶ କରିବ । ୧୨୪ କୋଟି ଟଙ୍କା ବିନିମୟରେ ହୀରା ସିମେଣ୍ଟ ପ୍ରକଳ୍ପର ସମ୍ପ୍ରସାରଣ କାର୍ଯ୍ୟ ଆଗେଇ ଚାଲିଛି । କୋରାପୁଟ ଜିଲ୍ଲାରେ ଏକ ସିମେଣ୍ଟ କାରଖାନା ମିଳିତ ଉଦ୍ୟୋଗରେ ପ୍ରତିଷ୍ଠା କରାଯାଉଛି । ଶିଳ୍ପ ବିହୀନ ଜିଲ୍ଲାଗୁଡ଼ିକ ମଧ୍ୟରୁ କେନ୍ଦୁଝର, ଚିପିଲିମା ଓ ଛତ୍ରପୁରଠାରେ ୯୦ କୋଟି ଟଙ୍କା ଅଟକଳରେ ୩ଟି ଉନ୍ନୟନ କେନ୍ଦ୍ର (Growth Centre) କାର୍ଯ୍ୟକାରୀ ହେବାକୁ ଯାଉଛି ।

## ଚଳଚ୍ଚିତ୍ର ଶିଳ୍ପ :

ଉନ୍ନତ ଚଳଚ୍ଚିତ୍ର ନିର୍ମାଣକୁ ଉତ୍ସାହିତ କରିବା ପାଇଁ ଭୁବନେଶ୍ୱରସ୍ଥ ଖଣ୍ଡଗିରିଠାରେ ସମସ୍ତ ଉପକରଣ ସଂଯୁକ୍ତ 'କଳିଙ୍ଗ ଷ୍ଟୁଡିଓ' ନାଁରେ ଗୋଟିଏ ଷ୍ଟୁଡିଓ ନିର୍ମାଣ କରାଯାଇଛି । ଉତ୍ତମ ଗୁଣମାନର ରଙ୍ଗୀନ୍ ସିନେମା ପ୍ରସ୍ତୁତ କରିବା ପାଇଁ ରାଜ୍ୟରେ 'ପ୍ରସାଦ–କଳିଙ୍ଗ ସିନେମା ଗବେଷଣାଗାର' ନାମରେ ଗୋଟିଏ ରଙ୍ଗୀନ୍ ସିନେମା ନିର୍ମାଣ ଗବେଷଣାଗାର ସ୍ଥାପିତ ହୋଇଅଛି ।

## ଶିଳ୍ପ କ୍ଷେତ୍ରରେ ରାଜ୍ୟ ଅର୍ଥ ନିଗମର ଅର୍ଥ ସହାୟତା :

ଓଡ଼ିଶା ରାଜ୍ୟ ଅର୍ଥ ନିଗମ ୧୯୯୦–୯୧ ଆର୍ଥିକ ବର୍ଷଠାରୁ ଦୀର୍ଘ ଲଗାଣ ଋଣ ମଞ୍ଜୁରୀ ପ୍ରଦାନ ଓ ଆଦାୟ କ୍ଷେତ୍ରରେ ନୂତନ ପନ୍ଥା ଅବଲମ୍ବନ କରି ଆଦାୟକୁ ତ୍ୱରାନ୍ୱିତ କରାଯାଇଛି । ଋଣ ଆଦାୟ ପ୍ରଦାନ କ୍ଷେତ୍ରରେ ପାସ୍ ବହି ପଦ୍ଧତି ଅବଲମ୍ବନ କରାଯାଇଛି । ୧୯୯୦–୯୧ ମସିହାଠାରୁ ୧୯୯୩ ମସିହା ଅକ୍ଟୋବର ମାସ ମଧ୍ୟରେ ନିଗମ ଋଣ ମଞ୍ଜୁରୀ, ଆଦାୟ ଇତ୍ୟାଦି ନିମ୍ନରେ ପ୍ରଦାନ କରାଗଲା :

| ଆର୍ଥିକ ବର୍ଷ | ମଞ୍ଜୁର ପରିମାଣ | | ବିତରଣ ବିବରଣୀ | | ଆଦାୟ ପରିମାଣ (କୋଟି ଟଙ୍କା) |
|---|---|---|---|---|---|
| | ସଂଖ୍ୟା | ଅର୍ଥ (କୋଟି ଟଙ୍କାରେ) | ସଂଖ୍ୟା | ଅର୍ଥ (କୋଟି ଟଙ୍କାରେ) | |
| (୧) | (୨) | (୩) | (୪) | (୫) | (୬) |
| ୧୯୯୦-୯୧ | [illegible] | [illegible] | [illegible] | [illegible] | [illegible] |
| ୧୯୯୧-୯୨ | [illegible] | [illegible] | [illegible] | [illegible] | [illegible] |
| ୧୯୯୨-୯୩ | [illegible] | [illegible] | [illegible] | [illegible] | [illegible] |
| ୧୯୯୩-୯୪ (ଅକ୍ଟୋବର ୧୯୯୩ ଯାଏ) | [illegible] | [illegible] | [illegible] | [illegible] | [illegible] |

## ଶିଳ୍ପ ନିମନ୍ତେ ବୈଷୟିକ ଶିକ୍ଷା ଓ ତାଲିମ :

ରାଜ୍ୟରେ ଶିଳ୍ପ ବିକାଶ ନିମିତ୍ତ ଉଚ୍ଚ ବୈଷୟିକ ଜ୍ଞାନସମ୍ପନ୍ନ ଯନ୍ତ୍ରୀ ଓ କୁଶଳୀମାନଙ୍କର ଆବଶ୍ୟକତା ଅପରିହାର୍ଯ୍ୟ । ସେଥିନିମିତ୍ତ ରାଜ୍ୟରେ ୪ ଗୋଟି ବୈଷୟିକ ମହାବିଦ୍ୟାଳୟ, ୧୧ ଗୋଟି ବିଦ୍ୟାଳୟ/ପଲିଟେକ୍ନିକ୍ ଓ ୧୭ ଗୋଟି ଶିଳ୍ପ ତାଲିମ ଅନୁଷ୍ଠାନ ପ୍ରତିଷ୍ଠା କରାଯାଇଛି । ଆସ ନିଯୁକ୍ତି ଓ ଡ୍ରାଫ୍‌ଟସ୍‌ମ୍ୟାନ୍ ଟ୍ରେନିଂ ମଧ୍ୟ ଏହି ପଲିଟେକ୍ନିକ୍ ଓ ଶିଳ୍ପ ତାଲିମ ଅନୁଷ୍ଠାନ ଜରିଆରେ ଦିଆଯାଉଛି । ଏଥିନିମିତ୍ତ ୧୯୯୦–୯୧ ଆର୍ଥିକ ବର୍ଷଠାରୁ ୬୬.୭୯ କୋଟି ଟଙ୍କା ୫ ବର୍ଷ ପାଇଁ ବିନିଯୋଗ କରାଯିବା ଲକ୍ଷ୍ୟ ନେଇ କାର୍ଯ୍ୟ ଆରମ୍ଭ କରାଯାଉଛି । ଏହା ବ୍ୟତୀତ ମହିଳାମାନଙ୍କ ନିମନ୍ତେ ସ୍ୱତନ୍ତ୍ର ୬ ଗୋଟି ଶିଳ୍ପ ତାଲିମ ଅନୁଷ୍ଠାନକୁ

ଆଧୁନିକୀକରଣ କରାଯିବା ଲକ୍ଷ୍ୟ ନେଇ କାର୍ଯ୍ୟ ଆରମ୍ଭ ହୋଇଛି । ୧୯୯୧-୯୨ ଆର୍ଥିକ ବର୍ଷରେ କେତେକ ବିଦ୍ୟାଳୟ/ପଲିଟେକ୍‌ନିକ୍‌ରେ ସିନେମାଟୋଗ୍ରାଫି, ମେଟାଲୋଜି, କମ୍ପ୍ୟୁଟର୍ ସର୍ଭିସ୍ ଓ ଟେଲି କମ୍ୟୁନିକେସନ୍ ପ୍ରଭୃତି ନୂତନ ବୈଷୟିକ ପାଠ୍ୟକ୍ରମମାନ ପ୍ରଚଳିତ କରାଯାଇଛି । ହୀରାକୁଦ ଶିଳ୍ପ ତାଲିମ ଅନୁଷ୍ଠାନକୁ ଏକ ସ୍ୱୟଂ ଶାସିତ ଅନୁଷ୍ଠାନରେ ପରିଣତ କରାଯାଇଛି । ବୈଷୟିକ ଶିକ୍ଷା ଓ ଶିଳ୍ପ ତାଲିମକୁ ଅଧୁନା ତ୍ୱରାନ୍ୱିତ କରିବା ପାଇଁ ବିଶ୍ୱ ବ୍ୟାଙ୍କର ଆର୍ଥିକ ସହାୟତା ନିଆଯାଇଛି । ୧୯୯୩-୯୪ ଆର୍ଥିକ ବର୍ଷରେ ସରକାରୀ ଓ ବେସରକାରୀ ବୈଷୟିକ ମହାବିଦ୍ୟାଳୟ ଓ ବୈଷୟିକ ବିଦ୍ୟାଳୟଗୁଡ଼ିକରେ ନାମ ଲେଖାଇବା ପଦ୍ଧତି ସମୀକରଣ କରାଯାଇ ଏକ ନୂତନ ନୀତି ଅବଲମ୍ବନ କରାଯାଇଛି ।

ଓଡ଼ିଶାରେ ଶିଳ୍ପର ସମୂହ ବିକାଶ ନିମିତ୍ତ ବର୍ତ୍ତମାନର ସରକାର ଗୁରୁତ୍ୱ ଆରୋପ କରି ଆସିଛନ୍ତି । ଏଥିନିମନ୍ତେ ଉଦ୍ୟୋଗୀମାନଙ୍କୁ ପ୍ରଲୋଭିତ କରାଇବା ନିମନ୍ତେ ସୁବଧା ଏବଂ ସୁଲଭ ମୂଲ୍ୟରେ ଶିଳ୍ପ ଭିତ୍ତିଭୂମି, ରିହାତି ମୂଲ୍ୟରେ ଶକ୍ତି ଯୋଗାଇବା ସଙ୍ଗେ ସଙ୍ଗେ ସହଜ ଋଣ, କଞ୍ଚାମାଲ୍ ଯୋଗାଣ, ଉତ୍ପନ୍ନ ଶିଳ୍ପ ଜାତ ଦ୍ରବ୍ୟର ବିକ୍ରିବଟା ବ୍ୟବସ୍ଥା ଇତ୍ୟାଦି କରିଥିଛନ୍ତି । ଏତଦ୍ ବ୍ୟତୀତ ଶିଳ୍ପ ଜାତ ଦ୍ରବ୍ୟ ଉପରେ ବିଭିନ୍ନ ପ୍ରକାର ପ୍ରଚଳିତ କରକୁ ମଧ୍ୟ କୋହଳ କରାଯାଇଛି । ଏହା ଦ୍ୱାରା ଓଡ଼ିଶା ଖୁବ୍ କମ୍ ସମୟ ମଧ୍ୟରେ ଏକ ଶିଳ୍ପ ସମୃଦ୍ଧ ରାଜ୍ୟରେ ପରିଣତ ହୋଇ ପାରିବାର ଆଶା ଖୁବ୍ ଉଜ୍ଜ୍ୱଳ ।

---

ଶିଳ୍ପ ରାଷ୍ଟ୍ରମନ୍ତ୍ରୀ, ଓଡ଼ିଶା ।




ଭୁବନେଶ୍ୱରସ୍ଥ ଉତ୍କଳ ମଣ୍ଡପଠାରେ ଆୟୋଜିତ ଓଡ଼ିଆ ଯୁବ ଲେଖକ ସମ୍ମିଳନୀରେ ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ।



# ଗ୍ରାମ୍ୟ ଉନ୍ନୟନ ବିଭାଗରେ ଜଳସେଚନ

ଶ୍ରୀ ସହରାଇ ଓରାମ୍

ରାଜ୍ୟ ଗ୍ରାମ୍ୟ ଉନ୍ନୟନ ବିଭାଗ ଅଧୀନସ୍ଥ କ୍ଷୁଦ୍ର ଜଳସେଚନ ସଂସ୍ଥା ରାଜ୍ୟରେ ୨୦ ହେକ୍ଟରଠାରୁ ୨୦୦୦ ହେକ୍ଟର ଆୟାକଟ ଥିବା କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକର ନିର୍ମାଣ ଏବଂ ରକ୍ଷଣାବେକ୍ଷଣ କାର୍ଯ୍ୟ ତୁଲାଉଛି।

ଏହି ସଂସ୍ଥା ଦ୍ୱାରା ରାଜ୍ୟର ୧୦,୦୦,୦୦୦ ହେକ୍ଟର ଜମିକୁ ଜଳସେଚନ ଯୋଗାଇବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି। ତନ୍ମଧ୍ୟରୁ ୧୯୯୨–୯୩ ଆର୍ଥିକ ବର୍ଷ ସୁଦ୍ଧା ୩,୮୬,୧୦୦ ହେକ୍ଟର ଖରିଫ୍ ଋତୁରେ ଏବଂ ୬୧,୯୦୪ ହେକ୍ଟର ରବି ଋତୁରେ ଜଳସେଚନର ସୁବିଧା କରାଯାଇଛି। ଆମ ରାଜ୍ୟରେ ଏହି କ୍ଷୁଦ୍ର ଜଳସେଚନ ସଂସ୍ଥା ଅଧୀନରେ ସମୁଦାୟ ୪,୬୪୮ ଗୋଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ ଅଛି। ସେଥି ମଧ୍ୟରୁ ୨,୫୩୮ଟି ସମ୍ପୂର୍ଣ୍ଣ ପ୍ରକଳ୍ପ, ୭୨୨ଟି ଆଂଶିକ ଭଗ୍ନ ପ୍ରକଳ୍ପ, ୧,୨୮୭ଟି ସମ୍ପୂର୍ଣ୍ଣ ଭଗ୍ନ ପ୍ରକଳ୍ପ ଓ ୧୦୧ଟି ନିର୍ମାଣାଧୀନ ପ୍ରକଳ୍ପ ଅଛି।

ରାଜ୍ୟ ସରକାର ଚଳିତ ଅଷ୍ଟମ ପଞ୍ଚବାର୍ଷିକ ଯୋଜନା (୧୯୯୨–୯୭) କାଳ ମଧ୍ୟରେ କ୍ଷୁଦ୍ର ଜଳସେଚନ ପ୍ରକଳ୍ପଗୁଡ଼ିକର ଉନ୍ନତି ନିମନ୍ତେ ୧୭,୫୫୦·୦୦ ଲକ୍ଷ ଟଙ୍କା ଅନୁଦାନର ବ୍ୟବସ୍ଥା କରିଛନ୍ତି। ସେହି ଅର୍ଥ ମଧ୍ୟରୁ ୪୨୨୭·୦୦ ଲକ୍ଷ ଟଙ୍କା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଖର୍ଚ୍ଚ କରିବା ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି। ଉପରୋକ୍ତ ଅର୍ଥ ବିନିଯୋଗ କରାଯାଇ ଚଳିତ ଅଷ୍ଟମ ପଞ୍ଚବାର୍ଷିକ ଯୋଜନା ଶେଷ ସୁଦ୍ଧା ୩୮,୬୩୮ ହେକ୍ଟର ଜମି ଖରିଫ୍ ଋତୁରେ ଏବଂ ୧୦,୨୮୪ ହେକ୍ଟର ଜମି ରବି ଋତୁରେ ଜଳ ଯୋଗାଇବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି। ତନ୍ମଧ୍ୟରୁ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ୧୩,୧୧୮ ହେକ୍ଟର ଜମିକୁ ଖରିଫ୍ ଋତୁରେ ଏବଂ ୪,୩୮୯ ହେକ୍ଟର ଜମିକୁ ରବି ଋତୁରେ ଜଳ ଯୋଗାଇବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି।

୧୯୯୨ ଆର୍ଥିକ ବର୍ଷରେ କ୍ଷୁଦ୍ର ଜଳସେଚନ ସଂସ୍ଥା ପାଇଁ ୨୯୩୫·୦୦ ଲକ୍ଷ ଟଙ୍କା ବ୍ୟୟ ଅଟକଳ କରାଯାଇଥିଲା। ପରବର୍ତ୍ତୀ ଅବସ୍ଥାରେ ସରକାରଙ୍କର ବ୍ୟୟ ଅଟକଳ ସଙ୍କୁଚିତ ହେବାରୁ ପୂର୍ବରୁ କ୍ଷୁଦ୍ର ଜଳସେଚନ ସଂସ୍ଥା ପାଇଁ ବରାଦ କରାଯାଇଥିବା ୨୯୩୫ ଲକ୍ଷ ଟଙ୍କାରୁ ୨୩୩୫·୦୦ ଲକ୍ଷ ଟଙ୍କାକୁ ହ୍ରାସ କରାଯାଇଥିଲା। ଉକ୍ତ ଅର୍ଥ ମଧ୍ୟରୁ ୬୧୧·୫୦ ଲକ୍ଷ ଟଙ୍କା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ବ୍ୟୟ କରାଯାଉଛି। ଏହି ଆର୍ଥିକ ବର୍ଷରେ ମୋଟ ୫୫୦୪ ହେକ୍ଟର ଖରିଫ୍ ଏବଂ ୪୦୬ ହେକ୍ଟର ରବି ଜମିକୁ ଜଳସେଚନ ଯୋଗାଇହେବ ସ୍ଥଳେ ତନ୍ମଧ୍ୟରୁ ୨୨୩୯ ହେକ୍ଟର ଖରିଫ୍ ଏବଂ ୪୦୬ ହେକ୍ଟର ରବି ଜମିକୁ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଜଳ ଯୋଗାଇ ଦିଆଯାଇଛି।

ଚଳିତ ଆର୍ଥିକ ବର୍ଷ (୧୯୯୩–୯୪)ରେ ସରକାରଙ୍କଠାରୁ ୨୭୮୫·୦୦ ଲକ୍ଷ ଟଙ୍କା କ୍ଷୁଦ୍ର ଜଳସେଚନ ସଂସ୍ଥା ପାଇଁ ଅନୁଦାନ ମିଳିଥିଲା। କିନ୍ତୁ ପରବର୍ତ୍ତୀ ଅବସ୍ଥାରେ ସରକାରଙ୍କର ବ୍ୟୟ ଅଟକଳ ସଙ୍କୁଚିତ ହେବାରୁ ଏହି କ୍ଷୁଦ୍ର ଜଳସେଚନ ସଂସ୍ଥା ପାଇଁ ଉଦ୍ଦିଷ୍ଟ ଅନୁଦାନକୁ ସଙ୍କୁଚିତ କରାଇ ୨୧୮୫·୦୦ ଲକ୍ଷ ବ୍ୟୟ ବରାଦ କରାଯାଇଛି। ତନ୍ମଧ୍ୟରୁ ୬୪୭·୫୪ ଲକ୍ଷ ଟଙ୍କା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ବ୍ୟୟ କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି। ଚଳିତ ୧୨୩ଟି କ୍ଷୁଦ୍ର ଜଳସେଚନ ପ୍ରକଳ୍ପ କାର୍ଯ୍ୟ ଚାଲିଅଛି। ସରକାରଙ୍କର ନୂତନ ନୀତି ଅନୁଯାୟୀ ପ୍ରତି ନିର୍ବାଚନ ମଣ୍ଡଳୀରେ ଏକଗୋଟି ନୂତନ ପ୍ରକଳ୍ପ ଏବଂ ଦୁଇଗୋଟି ପୁନରୁଦ୍ଧାର. ପ୍ରକଳ୍ପ କାର୍ଯ୍ୟ କରିବା ନିଷ୍ପତ୍ତି ଅନୁଯାୟୀ ୧୯୯୧–୯୨ ଆର୍ଥିକ ବର୍ଷରେ ୨୨୩ ଗୋଟି, ୧୯୯୨–୯୩ ଆର୍ଥିକ ବର୍ଷରେ ୧୫୪ ଗୋଟି ଏବଂ ୧୯୯୩–୯୪ ଆର୍ଥିକ ବର୍ଷରେ ୨୬୨ ଗୋଟି ନୂତନ ପୁନରୁଦ୍ଧାର ପ୍ରକଳ୍ପ ସରକାରଙ୍କ ଦ୍ୱାରା ଚିହ୍ନିତ ହୋଇଅଛି। ଏତଦ୍ ବ୍ୟତୀତ ୧୯୯୧–୯୨ ଆର୍ଥିକ ବର୍ଷରେ ୨୯ ଗୋଟି, ୧୯୯୨–୯୩ ଆର୍ଥିକ ବର୍ଷରେ ୯୭ ଗୋଟି ଏବଂ ୧୯୯୩–୯୪ ଆର୍ଥିକ ବର୍ଷରେ ୪୯ ଗୋଟି ନୂତନ ପ୍ରକଳ୍ପ କାର୍ଯ୍ୟ କରିବା ପାଇଁ ଚିହ୍ନିତ ହୋଇଅଛି। ଉପରୋକ୍ତ ପ୍ରକଳ୍ପଗୁଡ଼ିକ ପାଇଁ ଚଳିତ ଆର୍ଥିକ ବର୍ଷରେ ବ୍ୟୟ ବରାଦ କରାଯାଇଛି।

ଚଳିତ ବର୍ଷ ଅସମ୍ପୂର୍ଣ୍ଣ ଥିବା ପ୍ରକଳ୍ପଗୁଡ଼ିକ ମଧ୍ୟରୁ ୫ ଗୋଟି ଏବଂ ପୁନରୁଦ୍ଧାର ପ୍ରକଳ୍ପଗୁଡ଼ିକ ମଧ୍ୟରୁ ୭୪ ଗୋଟି ପ୍ରକଳ୍ପକୁ ସମ୍ପୂର୍ଣ୍ଣ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି। ଏତଦ୍ ବ୍ୟତୀତ ଚଳିତ ବର୍ଷ ଶେଷ ସୁଦ୍ଧା ଅଧିକ ୧୦,୫୦୨ ହେକ୍ଟର ଖରିଫ୍ ଋତୁରେ ଏବଂ ୧,୫୩୫ ହେକ୍ଟର ରବି ଋତୁରେ ଜଳ ଯୋଗାଇବାର ବ୍ୟବସ୍ଥା କରାଯାଇଛି। ତନ୍ମଧ୍ୟରୁ ୨,୪୮୫ ହେକ୍ଟର ଏବଂ ୨୬୨ ହେକ୍ଟର ରବି ଋତୁରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଜଳ ଯୋଗାଇବାର ବ୍ୟବସ୍ଥା କରାଯାଇଛି।

ଆସନ୍ତା ଆର୍ଥିକ ବର୍ଷ (୧୯୯୪–୯୫) ମସିହାରେ ସରକାର କ୍ଷୁଦ୍ର ଜଳସେଚନ ସଂସ୍ଥାକୁ ୩୧୮୫·୦୦ ଲକ୍ଷ ଟଙ୍କା ଅନୁଦାନ ବ୍ୟବସ୍ଥା କରିଛନ୍ତି। ତନ୍ମଧ୍ୟରୁ ୬୭୪·୩୭ ଲକ୍ଷ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ବ୍ୟୟ କରିବା ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି। ଆସନ୍ତା ବର୍ଷ ଶେଷ ସୁଦ୍ଧା ନିର୍ମାଣାଧୀନ ଥିବା ପ୍ରକଳ୍ପଗୁଡ଼ିକ ମଧ୍ୟରୁ

୮ ଗୋଟି ଏବଂ ପୁନରୁଦ୍ଧାର ପ୍ରକଳ୍ପଗୁଡ଼ିକ ମଧ୍ୟରୁ ୧୦୭ ଗୋଟି ସମ୍ପୂର୍ଣ୍ଣ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ୧୯୯୪–୯୫ ଆର୍ଥିକ ବର୍ଷରେ ମୋଟ ୧୩,୬୩୯ ହେକ୍ଟର ଖରିଫ୍ ଋତୁରେ ଓ ୧,୪୮ ହେକ୍ଟର ରବି ଋତୁରେ ଜଳ ଯୋଗାଇବାକୁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ତନ୍ମଧ୍ୟରୁ ୬,୨୫୧ ହେକ୍ଟର ଖରିଫ୍ ଋତୁରେ ଏବଂ ୧,୨୫୮ ହେକ୍ଟର ରବି ଋତୁରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଜଳ ଯୋଗାଇବା ବ୍ୟବସ୍ଥା କରାଯାଇଛି ।

ଓଡ଼ିଶା ଉଠା ଜଳସେଚନ ନିଗମ ରାଜ୍ୟ ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ଏକ ନିଗମ । ନିଗମ ରାଜ୍ୟରେ ନୂତନ ଉଠା ଜଳସେଚନ ପ୍ରକଳ୍ପ ସ୍ଥାପନ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକର ରକ୍ଷଣାବେକ୍ଷଣ ଓ ଚଳାଇ ଜମିକୁ ଜଳ ଯୋଗାଣ ଦାୟିତ୍ୱ ବହନ କରିଥାଏ । ଏହା ବ୍ୟତୀତ ନିଗମ ମଧ୍ୟ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଭୂତଳ ଆକଳନ ତଥା ଏହାର ବିନିଯୋଗ ସମ୍ପର୍କରେ ତଥ୍ୟ ପରିବେଷଣ କରିବାର ଦାୟିତ୍ୱରେ ଅଛି ।

## ୧୯୯୨–୯୩ ମସିହା ଶେଷ ସୁଦ୍ଧା ହୋଇଥିବା କାର୍ଯ୍ୟର ବିବରଣୀ :

୧୯୯୨–୯୩ ମସିହା ଶେଷ ସୁଦ୍ଧା ରାଜ୍ୟରେ ମୋଟ ୭,୬୪୫ଟି ଉଠା ଜଳସେଚନ ପ୍ରକଳ୍ପ ସ୍ଥାପିତ ହୋଇଅଛି । ଏହି ପ୍ରକଳ୍ପଗୁଡ଼ିକର ସେଚ ଜମିର ଆକଳିତ ପରିମାଣ ଯଥାକ୍ରମେ ଖରିଫ୍ ଏବଂ ରବି ଋତୁ ପାଇଁ ୨·୮୦ ଲକ୍ଷ ହେକ୍ଟର ଏବଂ ୧·୭୮ ଲକ୍ଷ ହେକ୍ଟର ।

୧୯୯୨–୯୩ ବର୍ଷରେ କେତୋଟି ପ୍ରକଳ୍ପ ଚାଲିଥିଲା ଓ କେତେ ପରିମାଣ ଜମି ଜଳସେଚିତ ହୋଇଥିଲା, ତାହାର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା :

| ଋତୁ | କେତୋଟି ପ୍ରକଳ୍ପ ଚାଲିଥିଲା | କେତେ ଜମି ଜଳସେଚିତ ହୋଇଥିଲା (ହେକ୍ଟର) |
|---|---|---|
| ଖରିଫ୍ | ୩,୬୩୫ | ୩୧,୮୦୯ |
| ରବି | ୬,୯୦୧ | ୪୫,୬୬୯ |

୧୯୭୭–୭୮ ମସିହା ସୁଦ୍ଧା ପ୍ରଥମ ପର୍ଯ୍ୟାୟ ଭୂତଳ ଜଳ ଅନୁସନ୍ଧାନ କାର୍ଯ୍ୟ ସମଗ୍ର ରାଜ୍ୟରେ ଶେଷ ହୋଇଥିଲା ଓ ଦ୍ୱିତୀୟ ପର୍ଯ୍ୟାୟ ସର୍ବେକ୍ଷଣ କାର୍ଯ୍ୟ ହାତକୁ ନିଆଯାଇଥିଲା । ୧୯୯୨–୯୩ ମସିହା ଶେଷ ସୁଦ୍ଧା ରାଜ୍ୟର ବିଭିନ୍ନ ଅଞ୍ଚଳରେ ୬୧,୨୩୫ ବର୍ଗ କିଲୋମିଟର ପରିମିତ ଅଞ୍ଚଳରେ ଏହି ସର୍ବେକ୍ଷଣ କରାଯାଇଛି ।

## ୧୯୯୩–୯୪ ମସିହା ପାଇଁ କାର୍ଯ୍ୟକ୍ରମ :

୧୯୯୩–୯୪ ମସିହାରେ ୭୦୦ଟି ନୂତନ ପ୍ରକଳ୍ପ ସ୍ଥାପନ କରାଯାଇ ୧୪,୦୦୦ ହେକ୍ଟର ଅଧିକ ଜମିରେ ଜଳସେଚନର ବ୍ୟବସ୍ଥା କରିବା ପାଇଁ ଆପାତତଃ ପ୍ରସ୍ତାବ ରହିଛି । ବର୍ତ୍ତମାନ ସୁଦ୍ଧା ରାଜ୍ୟରେ ୯୪ଟି ନୂତନ ପ୍ରକଳ୍ପ ସ୍ଥାପିତ ହୋଇଛି ଓ ଏହିଗୁଡ଼ିକର ଆକଳିତ ସେଚ ଜମିର ପରିମାଣ ୧,୭୬୩ ହେକ୍ଟର ।

୧୯୯୩–୯୪ ଖରିଫ୍ ଋତୁରେ ୧,୬୬୦ଟି ପ୍ରକଳ୍ପ ଚାଲୁ କରାଯାଇ ୧୩,୬୮୯ ହେକ୍ଟର ଜମିକୁ ଜଳ ଯୋଗାଇ ଦିଆଯାଇଥିଲା । ଚଳିତ ରବି ଋତୁରେ ୯,୧୭୪ଟି ପ୍ରକଳ୍ପ ଚଳାଇ ୮୫,୪୦୮ ହେକ୍ଟର ଜମିକୁ ଜଳସେଚନ କରିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଅଛି ।

ଚଳିତ ବର୍ଷ ରାଜ୍ୟରେ ୪,୫୦୦ କିଲୋମିଟର ପରିମିତ ଅଞ୍ଚଳରେ ଦ୍ୱିତୀୟ ପର୍ଯ୍ୟାୟ ଭୂତଳ ଅନୁସନ୍ଧାନ ଓ ସର୍ବେକ୍ଷଣ କାର୍ଯ୍ୟ ନିର୍ବାହ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଅଛି । ୧୯୯୩ ଅକ୍ଟୋବର ମାସ ସୁଦ୍ଧା ୧,୬୧୩ ବର୍ଗ କିଲୋମିଟର ଅଞ୍ଚଳରେ ଏହି କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି ।

ଜର୍ମାନୀର K. F. W. କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରେ ୭୧୦ଟି ଉଠା ଜଳସେଚନ ପ୍ରକଳ୍ପ ସ୍ଥାପନ କରିବା ପାଇଁ ୫୫ ନିୟୁତ ଡଚ୍ ମାର୍କ (ପ୍ରାୟ ୧୦୦ କୋଟି ଟଙ୍କା) ଋଣ ଦେବା ପାଇଁ ରାଜି ହୋଇଛି । ଏହି ପ୍ରକଳ୍ପର ମୋଟ ଆକଳନ ୬୧·୧୧ ଡଚ୍ ମାର୍କ (୧୨୦ କୋଟି ଟଙ୍କା) । ଏହି ପ୍ରକଳ୍ପଗୁଡ଼ିକ ସ୍ଥାପିତ ହେଲେ ପ୍ରାୟ ୩୦ ହଜାର ହେକ୍ଟର ଜମି ସେଚିତ ହୋଇ ପାରିବ । ଏହା ଚଳିତ ବର୍ଷଠାରୁ କାର୍ଯ୍ୟକାରୀ ହେଉଛି । K. F. W ପ୍ରାୟ ୧୦ କୋଟି ୮୦ ଲକ୍ଷ ଟଙ୍କା ଏହି ବାବଦରେ ଭାରତ ସରକାରଙ୍କୁ ଦେଇସାରିଲାଣି । ଚଳିତ ବର୍ଷ ୧୨୩ଟି ପ୍ରକଳ୍ପ ସ୍ଥାପନ କରିବାର ବ୍ୟବସ୍ଥା ଅଛି । ଆସନ୍ତା ବର୍ଷ ଏହି କାର୍ଯ୍ୟ ଅଧିକ ତ୍ୱରାନ୍ୱିତ ହେବ ।

## ୧୯୯୪–୯୫ ମସିହା ପାଇଁ କାର୍ଯ୍ୟକ୍ରମ :

୧୯୯୪–୯୫ ବର୍ଷରେ ୭୦୦ଟି ନୂତନ ପ୍ରକଳ୍ପ ସ୍ଥାପନ କରି ୧୪,୦୦୦ ହେକ୍ଟର ଅଧିକ ଜମି ପାଇଁ ଜଳସେଚନର ସମ୍ଭାବ୍ୟ ସୃଷ୍ଟି କରିବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଅଛି ।

ସ୍ଥାପିତ ହୋଇଥିବା ପ୍ରକଳ୍ପମାନଙ୍କ ମଧ୍ୟରୁ ଆପାତତଃ ୧୦,୮୦୦ଟି ପ୍ରକଳ୍ପ ଚାଲୁ କରି ୧୯୯୪–୯୫ ବର୍ଷ ଖରିଫ୍ ଋତୁରେ ୧·୩୨ ଲକ୍ଷ ହେକ୍ଟର ଓ ରବି ଋତୁରେ ୧·୦୩ ଲକ୍ଷ ହେକ୍ଟର ଜମିକୁ ଜଳ ଯୋଗାଇ ଦେବାର ସମ୍ଭାବନା ରହିଛି ।

ଭୂତଳ ଜଳ ସର୍ବେକ୍ଷଣ ଓ ଅନୁସନ୍ଧାନ କ୍ଷେତ୍ରରେ ଉକ୍ତ ବର୍ଷ ୫,୦୦୦ ବର୍ଗ କିଲୋମିଟର ଜମିରେ ପର୍ଯ୍ୟାୟକ୍ରମେ ସର୍ଭେ କରିବା ପାଇଁ ମୋଟାମୋଟି ଲକ୍ଷ୍ୟ ରଖାଯାଇଛି ।

ଗ୍ରାମ୍ୟ ଉନ୍ନୟନ ବିଭାଗର ଏବମ୍ବିଧ ଉଦ୍ୟମ ସବୁମତେ ସଫଳ କରିବା ପାଇଁ ଯଥାସାଧ୍ୟ ଉଦ୍ୟମ ଚାଲୁ ରହିଛି ।

* ମନ୍ତ୍ରୀ, ଗ୍ରାମ୍ୟ ଉନ୍ନୟନ ବିଭାଗ ।



# ପ୍ରଗତି ପଥେ
# ଓଡ଼ିଶା ମହିଳା ବିକାଶ ସମବାୟ ନିଗମ

**ଶ୍ରୀ ପଦ୍ମନାଭ ବେହେରା**

ଓଡ଼ିଶାର ମହିଳାମାନଙ୍କର ସର୍ବାଙ୍ଗୀନ ଉନ୍ନତି କଳ୍ପେ ମହିଳା ସମବାୟ ସମିତିଗୁଡ଼ିକର ଏକ ତୁଙ୍ଗ ସମବାୟ ସଙ୍ଗଠନ ରୂପରେ ରାଜ୍ୟ ମହିଳା ବିକାଶ ସମବାୟ ନିଗମ ସରକାରଙ୍କର ଏକ ମାଧ୍ୟମ। ଏହି ଲକ୍ଷ୍ୟକୁ ଦୃଷ୍ଟିରେ ରଖି ରାଜ୍ୟ ମହିଳା ନିଗମ ୧୯୯୧ ମସିହାଠାରୁ ତା'ର ଉଦ୍ୟମ ଚଳାଇ ଆସୁଛି। ବର୍ତ୍ତମାନ ପର୍ଯ୍ୟନ୍ତ ବିଭିନ୍ନ କ୍ଷେତ୍ରରୁ ୩୦୦ ମହିଳା ସମିତି, ମହିଳା ନିଗମ ସହ ସମ୍ପୃକ୍ତ। ଏହାଦ୍ୱାରା ପ୍ରାୟ ୬୦,୦୦୦ ମହିଳା ପ୍ରତ୍ୟକ୍ଷ ତଥା ପରୋକ୍ଷ ଭାବରେ ନିଗମ ସହ ସଂଶ୍ଳିଷ୍ଟ।

ବିଭିନ୍ନ ଶ୍ରେଣୀର ଯଥା : ଗ୍ରାମୀଣ, ସହରୀ; ଧନୀ, ଦରିଦ୍ର, ଶିକ୍ଷିତ, ଅଶିକ୍ଷିତ ମହିଳାମାନଙ୍କର ଉନ୍ନତିମୂଳକ କାର୍ଯ୍ୟଗୁଡ଼ିକୁ ତ୍ୱରାନ୍ୱିତ କରିବା ପାଇଁ ମହିଳା ନିଗମ ବିଭିନ୍ନ ସରକାରୀ, ବେସରକାରୀ ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସହ ସହଯୋଗ ରକ୍ଷା କରିଥାଏ। ମୁଖ୍ୟତଃ ଗ୍ରାମୀଣ ମହିଳାମାନଙ୍କର ଆର୍ଥିକ, ସାମାଜିକ କ୍ଷେତ୍ରରେ ପରିବର୍ତ୍ତନ ଓ ପରିବର୍ଦ୍ଧନ ଆଣିବା ପାଇଁ ମହିଳା ନିଗମ ମହିଳା ସମିତି ଓ ମହିଳା ମଣ୍ଡଳ ମାଧ୍ୟମରେ ତା'ର କାର୍ଯ୍ୟ କରିଆସୁଅଛି।

ବିଗତ ଦୁଇ ଦଶକର ସ୍ୱଳ୍ପ ସମୟ ଭିତରେ ମହିଳାମାନଙ୍କୁ ଆର୍ଥିକ ମୁଖ୍ୟ ସ୍ରୋତରେ ସାମିଲ କରିବା ପାଇଁ ବିଭିନ୍ନ କ୍ଷେତ୍ରରେ ଯଥା– ବୈଷୟିକ, କୃଷି, ଶିକ୍ଷା ସଚେତନତା ଦିଗରେ ମହିଳା ନିଗମ ଉଦ୍ୟମ ଅବ୍ୟାହତ ରଖି ସେମାନଙ୍କୁ ଦିଗ୍‌ଦର୍ଶନ ଦେଉଅଛି। ଏ ସମସ୍ତ କ୍ଷେତ୍ରରେ ପ୍ରଶିକ୍ଷଣ ପ୍ରଦାନ କରି ମହିଳାମାନଙ୍କୁ ପ୍ରତିଦ୍ୱନ୍ଦ୍ୱିତା ମୂଳକ କ୍ଷେତ୍ରରେ ପ୍ରତିଯୋଗୀତାର ସମ୍ମୁଖୀନ ହେବାପାଇଁ ସକ୍ଷମ କରାଇପାରିଛି। ଯେଉଁ ସବୁ ବିଷୟ ଉପରେ ମହିଳା ନିଗମ ପ୍ରଶିକ୍ଷଣ ପ୍ରଦାନ କରିଛି, ତନ୍ମଧ୍ୟରୁ ମୁଖ୍ୟ କେତେଗୋଟି ହେଲା– ୫୦୦ ଜଣ ଗ୍ରାମୀଣ ମହିଳାଙ୍କୁ ଖାଦ୍ୟ ପ୍ରସ୍ତୁତି ଓ ଫଳ ସଂରକ୍ଷଣ, ୧୦୦ ଜଣ ଗ୍ରାମୀଣ ମହିଳାଙ୍କୁ ଇଲେକ୍‌ଟ୍ରୋନିକ ଖାଉଟି ଦ୍ରବ୍ୟ ତିଆରି, ୫୦ ଜଣଙ୍କୁ ଚମଡ଼ା ବ୍ୟାଗ୍ ତିଆରି, ୨୦ ଜଣଙ୍କୁ ଗାଲିଚ୍ଚ ବୁଣା, ୫୦ ଜଣଙ୍କୁ ଖାଦ୍ୟ ପରିବେଷଣ ଓ ୩ ଜଣଙ୍କୁ ଅଟୋରିକ୍ସା ଚଳାଇବା ଉପରେ ଶିକ୍ଷା ପ୍ରଦାନ କରିଛି। ବାଦ୍ୟ କର୍ମ ପଛାରେ ଅଧିକ ଭାବେ ସଂଶ୍ଳିଷ୍ଟ ତଥା କ୍ରିୟାଶୀଳ କରିବା ପାଇଁ ମହିଳା ନିଗମ ମହିଳାମାନଙ୍କୁ ଅଟୋରିକ୍ସା ବ୍ୟତୀତ କୁଡ଼ୋ, କରାଟେ ଆଦି ବିଷୟରେ ମୌଳିକ ଶିକ୍ଷା ଦେବାକୁ ଯୋଜନା କରୁଛନ୍ତି। ଏହା ଦ୍ୱାରା ମହିଳାମାନେ ଆପଣେଇ ଉପଯୋଗୀ ହୋଇପାରିବେ।

କେନ୍ଦ୍ର ତଥା ରାଜ୍ୟ ସରକାରଙ୍କର ମହିଳାମାନଙ୍କ ପାଇଁ ଥିବା ବିଭିନ୍ନ ଉନ୍ନତି ମୂଳକ ଯୋଜନାକୁ କାର୍ଯ୍ୟକାରୀ କରାଇବା ବ୍ୟତୀତ ମହିଳା ନିଗମ ଉପଯୁକ୍ତ କାର୍ଯ୍ୟକୁ ପରୀକ୍ଷା ମୂଳକ ଭାବେ କାର୍ଯ୍ୟକାରୀ କରିପାରିଛି ଓ ସଫଳ ରୂପାୟନର ଲକ୍ଷ୍ୟ ରଖୁଛି।

ସାଧାରଣତଃ ମହିଳାମାନେ ରୋଷେଇ କାମରେ ଜଙ୍ଗଲ ଜାତ ଦ୍ରବ୍ୟକୁ ଜାଳେଣୀ ରୂପେ ବ୍ୟବହାର କରିଥାନ୍ତି। ଜଙ୍ଗଲ ନଷ୍ଟ ହେବା, ପରିବେଶ ତଥା ସମଗ୍ର ମାନବ ଜାତି ପାଇଁ ବିପଦ। ମହିଳାମାନଙ୍କୁ ସାମାଜିକ ବନୀକରଣ ସମ୍ପର୍କରେ ସଚେତନ କରିବା ଲକ୍ଷ୍ୟରେ ମହିଳା ନିଗମ ରାଜ୍ୟ ସରକାରଙ୍କର ଜଙ୍ଗଲ ବିଭାଗ ସହାୟତାରେ ମହିଳା ଅନୁଷ୍ଠାନଗୁଡ଼ିକୁ ବୃକ୍ଷ ପ୍ରଶିକ୍ଷଣ କାର୍ଯ୍ୟରେ ସାମିଲ କରାଇ ଅଛି। ତାଲିମ ପ୍ରାପ୍ତ ମହିଳା ଓ ଅନେକଗୁଡ଼ିଏ ମହିଳା ସମିତିର ସଦସ୍ୟମାନଙ୍କୁ ବୃକ୍ଷ ରୋପଣ ତଥା ପରିବେଶ ସୁରକ୍ଷା ଉପରେ ଆବଶ୍ୟକୀୟ ସଚେତନତା ସୃଷ୍ଟି କରିବାରେ ନିଗମ ସଫଳ ହୋଇପାରିଛି।

ଓଡ଼ିଶା ପ୍ରଚୁର ପ୍ରାକୃତିକ ସମ୍ପଦରେ ଭରପୂର ହୋଇଥିଲେ ହେଁ ସୁଦକ୍ଷ ପରିଚାଳନା ଓ ବୈଷୟିକ ଜ୍ଞାନ କୌଶଳ ଅଭାବରେ ଲୋକମାନେ ଏହାର ପ୍ରକୃତ ବିନିଯୋଗ କରିପାରୁ ନାହାନ୍ତି। ବିଶେଷ କରି ଓଡ଼ିଶାର ମହିଳାମାନେ ଏ କ୍ଷେତ୍ରରେ ପଛୁଆ ଅଛନ୍ତି। ମହିଳାମାନେ ଯେପରି ପ୍ରତ୍ୟେକ ଉଦ୍ୟୋଗରେ ପାରଦର୍ଶିତା ହାସଲ କରି ପ୍ରତିଯୋଗିତାମୂଳକ କ୍ଷେତ୍ରର ସମ୍ମୁଖୀନ ହୋଇପାରିବେ ସେଥିନିମନ୍ତେ ନିଗମ ବୈଷୟିକ ଜ୍ଞାନ କୌଶଳ ଆହରଣ ତଥା ତାହାର ସୁଷ୍ଠୁ ଉପଯୋଗ କରିବା ପାଇଁ ଓଡ଼ିଶାର ୬ଟି ଜିଲ୍ଲାରେ ତା'ର ପ୍ରଶିକ୍ଷଣ କାର୍ଯ୍ୟ (Entrepreneur Development Programme) କରିଅଛି। ଏହି ପ୍ରଶିକ୍ଷଣ ପ୍ରାୟ ୬୦ ଜଣ ନୂତନ ଓ ପ୍ରତିଷ୍ଠିତ ଶିଳ୍ପୋଦ୍ୟୋଗୀମାନଙ୍କୁ ନୂତନ ଦିଗ୍‌ଦର୍ଶନ ଦେଇଥିଲା।

ସମଗ୍ର ଭାରତବର୍ଷରେ ଆର୍ଥିକ କାମରେ ଓଡ଼ିଶାର ସ୍ଥାନ ପ୍ରଥମ କହିଲେ ଅତ୍ୟୁକ୍ତି ହେବ ନାହିଁ। ବିଶେଷ କରି ଓଡ଼ିଶାର ମହିଳାମାନେ ସେମାନଙ୍କର ଅବସର ସମୟରେ ଏହାକୁ ବହୁଳ ଭାବରେ କରିଥାନ୍ତି। ଉକ୍ତ କଳା କୌଶଳକୁ ଲୋକଲୋଚନକୁ ଆଣି ଆଧୁନିକ ସଭ୍ୟତାର ଚାହିଦା ସହିତ ତାଳ ଦେବାକୁ ଆର୍ଥିକ କଳା ଉପରେ ଥିବା ସମସ୍ୟା ଉପରେ ରାଜ୍ୟସ୍ତରୀୟ ସମ୍ମିଳନୀ

ଦେଇ ମହିଳା ନିଗମ ୧୩ଟି ମହିଳା ଅନୁଷ୍ଠାନର ପ୍ରତିନିଧିଙ୍କୁ National Institute of Designs (N. D.), ଅହମଦାବାଦଠାରେ ଆର୍ଥିକ ବ୍ୟବସାୟର ଆଧୁନିକ କଳାକୌଶଳ ଓ ଡ଼ିଜାଇନ ଶିକ୍ଷା କରିବା ପାଇଁ ପଠାଇଥିଲା । ପ୍ରତ୍ୟେକ ପ୍ରତିନିଧିଙ୍କୁ ତାଙ୍କ ସମିତି ଅଧୀନରେ ଥିବା ଆଉ ୧୦ ଜଣ ମହିଳାଙ୍କୁ ଶିକ୍ଷା ପ୍ରଦାନ କରିବାକୁ ଉତ୍ସାହିତ କରାଯାଇଛି । କେନ୍ଦ୍ର ସରକାରଙ୍କର ହସ୍ତଶିଳ୍ପ କମିଶନରଙ୍କ ସହାୟତାରେ ଏହି ପ୍ରଶିକ୍ଷଣ ସମ୍ଭବ ହୋଇ ପାରିଛି ।

ଓଡ଼ିଶା ଗୋ–ପାଳନ କ୍ଷେତ୍ରରେ ମଧ୍ୟ ଭାରତରେ ଅଗ୍ରଣୀ । ପ୍ରାୟତଃ ମହିଳାମାନେ ଉକ୍ତ କାର୍ଯ୍ୟରେ ଲିପ୍ତ ରହି ନିଜର ତଥା ନିଜ ପରିବାରର ଆର୍ଥିକ ସହାୟତା କରିଥାନ୍ତି । ମହିଳାମାନଙ୍କୁ ଆର୍ଥିକ ଦୃଷ୍ଟିରୁ ସ୍ୱାବଲମ୍ବୀ କରିବା ପାଇଁ ମହିଳା ନିଗମ ୫୦ଟି ମହିଳା ସମବାୟ ଅନୁଷ୍ଠାନର ମହିଳାମାନଙ୍କୁ ଗୋପାଳନ, ତା'ର ପରିଚାଳନା ତଥା ଦକ୍ଷତା ବୃଦ୍ଧି କରିବା ପାଇଁ ପ୍ରଶିକ୍ଷଣ ଦେଇଛନ୍ତି । ଶିକ୍ଷା ସମାପ୍ତ ପରେ ସେମାନେ ଆହରଣ କରିଥିବା ଜ୍ଞାନର ଫଳାଫଳକୁ ବିଭିନ୍ନ ସମୟରେ ସମୀକ୍ଷା ମଧ୍ୟ କରାଯାଉଛି ।

ବିଭିନ୍ନ ସଙ୍ଗଠିତ କ୍ଷେତ୍ରରେ ମହିଳାମାନଙ୍କ ସଂଖ୍ୟା ପୁରୁଷମାନଙ୍କ ତୁଳନାରେ ବହୁତ କମ୍ । ଏହା ମାତ୍ର ଶତକଡ଼ା ଆଠ ଭାଗ । ବିଭିନ୍ନ କ୍ଷେତ୍ରରେ ମହିଳାମାନଙ୍କୁ ବହୁଳ ଭାବରେ ସଂଶ୍ଳିଷ୍ଟ କରାଇବା ପାଇଁ ନିଗମ ତା'ର ଉଦ୍ୟମ ସ୍ୱରୂପ ପ୍ରଥମ ଥର ପାଇଁ ବ୍ୟାଙ୍କ୍ ପ୍ରାକ୍ ପରୀକ୍ଷା ପ୍ରଶିକ୍ଷଣ ଦେଇଛି । ଏହା ଦ୍ୱାରା ଅନୁନ୍ନତ ଅଞ୍ଚଳର ମହିଳାମାନେ ପ୍ରତିଯୋଗିତାମୂଳକ ପରୀକ୍ଷାରେ ସଫଳ କାମ ହୋଇ ବିଭିନ୍ନ କ୍ଷେତ୍ରରେ ଯୋଗ ଦେଇ ନିଜର ସାମାଜିକ ତଥା ଅର୍ଥନୈତିକ ସ୍ଥିତି ସୁଦୃଢ଼ କରିପାରିବେ ।

ପଞ୍ଚାୟତ ରାଜ ବ୍ୟବସ୍ଥାରେ ମହିଳାମାନଙ୍କ ପାଇଁ ଶତକଡ଼ା ୩୩ ଭାଗ ସ୍ଥାନ ସଂରକ୍ଷଣକୁ କାର୍ଯ୍ୟକାରୀ କରିବାରେ ସର୍ବଭାରତୀୟ ସ୍ତରରେ ଓଡ଼ିଶା ହେଉଛି ପ୍ରଥମ ରାଜ୍ୟ । ମହିଳାମାନଙ୍କୁ ରାଜନୈତିକ କ୍ଷେତ୍ରରେ ପୂର୍ଣ୍ଣ ସ୍ୱାଧୀନତା ଦେଇ ରାଜନୀତିରୁ ଶୋଷଣ ଦୂରକରି ଏକ ସୁସ୍ଥ ସାମାଜିକ ତଥା ରାଜନୈତିକ ବାତାବରଣ ସୃଷ୍ଟିକରିବା ପାଇଁ ମହିଳା ନିଗମ ପଞ୍ଚାୟତ ରାଜ ଅନୁଷ୍ଠାନକୁ ନିର୍ବାଚିତ ହୋଇଥିବା ମହିଳା ପ୍ରତିନିଧିମାନଙ୍କୁ ରାଜନୀତି ସହ ସମ୍ପୃକ୍ତ କରାଇ ବିଭିନ୍ନ ଜନହିତକର କାର୍ଯ୍ୟ କରିବା ପାଇଁ ପ୍ରସ୍ତୁତି ହେବାକୁ ପ୍ରଶିକ୍ଷଣ ଦେଉଅଛି । ସେମାନଙ୍କୁ ପ୍ରଶିକ୍ଷଣ ଦେବା ପାଇଁ ନିଗମ ସମ୍ପ୍ରତି ତାଲିମ ପ୍ରଦାନକାରୀଙ୍କ ପାଇଁ ଏକ ତାଲିମ କାର୍ଯ୍ୟକ୍ରମ କରିଅଛି ।

ସମାଜରେ ଝିଅମାନଙ୍କୁ ଅବହେଳିତ ଘୃଣିତ ଚକ୍ଷୁରେ ନଦେଖି ସମାଜରେ ସେମାନଙ୍କର ଦାୟିତ୍ୱ ତଥା ଗୁରୁତ୍ୱ ଉପଲବ୍ଧି କରିବା ପାଇଁ ନିଗମ "ବାଳିକା ଶିଶୁ ଉପରେ ଜନ ଜାଗରଣ" (Media Campaign on Girl Child) ସୃଷ୍ଟି କରିବାର କାର୍ଯ୍ୟକ୍ରମ କରିଅଛି । ଓଡ଼ିଶାର ୩୦ଟି ବ୍ଲକରେ ନେତୃତ୍ୱ ତାଲିମ ଓ ସ୍ତ୍ରୀ, ପୁରୁଷ ବିଭେଦ ଉପରେ ଥିବା ମନୋଭାବକୁ ପରିବର୍ତ୍ତନ କରିବା ପାଇଁ ସଚେତନ କାର୍ଯ୍ୟକ୍ରମ (Leadership Training & Gender Sensitisation) କରିଅଛି । ସମଗ୍ର ଦେଶରେ ଏହା ହେଉଛି ପ୍ରଥମ ପଦକ୍ଷେପ ।

ମହିଳା ନିଗମ ସ୍ୱୟଂସାହାଯ୍ୟ ଗୋଷ୍ଠୀର (Self Help Group) ଉନ୍ନତି ପାଇଁ ମହିଳାମାନଙ୍କ ମଧ୍ୟରେ ସଞ୍ଚୟ ସମିତି ଗଠନ କରିବା ପାଇଁ ପ୍ରୋତ୍ସାହନ ଯୋଗାଇ ଦେଉଛି । ମହିଳା, ଯେଉଁମାନେ ଘରର ଚାରିକୋଣରେ ଆବଦ୍ଧ ଓ ଯାହାର ଆର୍ଥିକ ଅବସ୍ଥା ବହୁତ ଦୟନୀୟ ସେମାନେ ସରକାରୀ ଓ ବେସରକାରୀ ଯୋଜନାମାନଙ୍କରେ ଭାଗନେବାରୁ ବଞ୍ଚିତ ହେଉଛନ୍ତି । ସଞ୍ଚୟ ସମିତିର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ସଦସ୍ୟମାନଙ୍କୁ ଆବଶ୍ୟକ ସମୟରେ ସଞ୍ଚିତ ଧନ ଦ୍ୱାରା ସାହାଯ୍ୟ କରିବା । ଏହାଦ୍ୱାରା ମହିଳାମାନେ ବାହାର ଋଣ ଉପରେ ନିର୍ଭର ଶୀଳ ନହୋଇ ନିଜେ ନିଜର ସହାୟତା କରିପାରିବେ ।

ବିଶ୍ୱରେ ନୂତନ ଅର୍ଥନୈତିକ ଅଭ୍ୟୁଦୟର ନୀତି ନିୟମ ସମ୍ପର୍କିତ ଧାରଣା ମହିଳାମାନଙ୍କର ଆଶାନୁରୂପ ହୋଇନଥିବାରୁ ମଧ୍ୟମ ଧରଣର ଶିଳ୍ପ ପ୍ରତିଷ୍ଠା ପାଇଁ ଆର୍ଥିକ ସକ୍ଷମତା ଥିବା ମହିଳାମାନଙ୍କୁ ଉଦ୍ୟୋଗ ପ୍ରତିଷ୍ଠା ନିମିତ୍ତ ଆବଶ୍ୟକୀୟ ବୈଷୟିକ ଜ୍ଞାନ କୌଶଳର ପ୍ରଶିକ୍ଷଣ (Performance Improvement Programme) ଦେବାକୁ ନିଗମ ଲକ୍ଷ୍ୟ ରଖିଛି ।

ମହିଳା ସମିତିଗୁଡ଼ିକର ସୁଦୂର ପ୍ରସାରୀ କାର୍ଯ୍ୟକୁ ଲୋକଲୋଚନକୁ ଆଣିବା ପାଇଁ ମହିଳା ନିଗମ ପ୍ରଥମ ଥର ପାଇଁ ପରୀକ୍ଷାମୂଳକ ଭିତ୍ତିରେ ମସଲା ତିଆରି କାର୍ଯ୍ୟ ମହିଳା ସଙ୍ଗଠନମାନଙ୍କ ଦ୍ୱାରା ଆରମ୍ଭ କରିଛି । ବିଭିନ୍ନ ଜିଲ୍ଲାର ୧୦ଟି ମହିଳା ଅନୁଷ୍ଠାନଙ୍କଠାରୁ ବିଭିନ୍ନ ମସଲା ଗୁଣ୍ଡ ଯଥା– ଜିରା,ଧନିଆ, ଲଙ୍କା, ହଳଦୀ, ଗୋଲମରିଚ, କାଣ୍ଡି ତଥା ମହୁ, ଘିଅ ଆଦି କ୍ରୟ କରି ତାହାକୁ ମହିଳା ଅନୁଷ୍ଠାନ ସହଯୋଗରେ ପ୍ୟାକିଂ କରି ପ୍ରତିଯୋଗୀତା ମୂଳକ ବଜାରରେ ବିକ୍ରି କରିବାକୁ ସମର୍ଥ ହୋଇ ପାରିଛି । ଏହାଦ୍ୱାରା ପ୍ରାୟ ୬୦୦ ଜଣ ମହିଳାଙ୍କୁ ଆସ ନିଯୁକ୍ତିର ସୁଯୋଗ ପ୍ରଦାନ କରିପାରିଛି । ବଜାରରେ ଏହାର ଚାହିଦା ତଥା ଲୋକ ପ୍ରିୟତା ଅତି ଉତ୍ସାହଜନକ ହୋଇଥିବାରୁ ନିକଟ ଭବିଷ୍ୟତରେ ନିଗମ ଅନ୍ୟାନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ପ୍ରସ୍ତୁତ କରି ରାଜ୍ୟରେ ତଥା ରାଜ୍ୟ ବାହାରେ ବିକ୍ରୀ କରିବାକୁ ଲକ୍ଷ୍ୟ ରଖିଛି ।

ସାମ୍ପ୍ରତିକ ସମାଜରେ ବିଭିନ୍ନ କ୍ଷେତ୍ରରେ ପୁରୁଷମାନେ ଯେପରି ସଚେତନ ସେହି ଅନୁପାତରେ ମହିଳାମାନେ ସଚେତନ ନୁହନ୍ତି । ଏହି ସଚେତନତାର ପରିସରକୁ ପରିବ୍ୟାପ୍ତ କରି ସମସ୍ତ କ୍ଷେତ୍ରରେ ଦକ୍ଷତା ବୃଦ୍ଧି କରିବା ଲକ୍ଷ୍ୟରେ ମହିଳା ନିଗମ ''State Resource Centre'' ବା ରାଜ୍ୟ ସୂଚନା କେନ୍ଦ୍ର ପ୍ରତିଷ୍ଠାର ଲକ୍ଷ୍ୟ ରଖିଛି । ରାଜ୍ୟର ସୁଦୂର ଅଞ୍ଚଳରେ ବାସ କରୁଥିବା ମହିଳାମାନଙ୍କ ବାସ୍ତବ ସମସ୍ୟା ଓ ସେମାନଙ୍କ ମଧ୍ୟରେ ଥିବା ଅନ୍ତର୍ନିହିତ ଦକ୍ଷତା ସମ୍ପର୍କୀୟ ତଥ୍ୟଭିତ୍ତିକ ସୂଚନା ଯୋଜନାକାରୀ ଓ ପ୍ରଶାସକମାନଙ୍କର ସହଜଲବ୍ଧ କରାଇ ମହିଳାମାନଙ୍କ ପ୍ରଗତିକୁ ତ୍ୱରାନ୍ୱିତ କରାଇବା ଏହି କେନ୍ଦ୍ରର ଅନ୍ୟ ଏକ ମୁଖ୍ୟ ଲକ୍ଷ୍ୟ ।

ସରକାରୀ ଓ ବେସରକାରୀ ସଂସ୍ଥାର ଲୋକମାନଙ୍କର ଦକ୍ଷତା ତଥା ଶକ୍ତିକୁ ପୂର୍ଣ୍ଣ ମାତ୍ରାରେ ମହିଳାମାନଙ୍କ ବିକାଶ ଦିଗରେ ନିୟୋଜନ କରିବା ପାଇଁ ତଥା ମହିଳାମାନଙ୍କ ପାଇଁ ଥିବା ମନୋଭାବକୁ ସମାଜରୁ ଦୂର କରିବା ପାଇଁ ମହିଳା ବିକାଶ ସମବାୟ ନିଗମ ତା'ର ଆପ୍ରାଣ ଉଦ୍ୟମ ଅବ୍ୟାହତ ରଖି ଆଗେଇ ଚାଲିଛି ।

ରାଷ୍ଟ୍ରମନ୍ତ୍ରୀ, ସମାଜ କଲ୍ୟାଣ
ତଥା ଚେୟାରମେନ୍, ଓ: ମ: ବି: ସ: ନିଗମ ।

# ଆମ ଜଙ୍ଗଲ ସମ୍ପଦ ଓ ଆମେ

ଶ୍ରୀ ଅଦ୍ୱୈତ ପ୍ରସାଦ ସିଂହ

ଯେ କୌଣସି ରାଷ୍ଟ୍ରର ସମୁନ୍ନତ ଅବସ୍ଥା ବିଚାର କରିବାକୁ ହେଲେ ପ୍ରଥମେ ତା'ର ପ୍ରାକୃତିକ ବିଭବକୁ ଧ୍ୟାନକୁ ଆଣିବାକୁ ହୁଏ । ଯେଉଁ ଦେଶରେ ଯେତେ ଅଧିକ ପରିମାଣର ଜଙ୍ଗଲ ବା ଜାତୀୟ ସମ୍ପଦ ଅଛି ତା'ର ଉଜ୍ଜ୍ୱଳ ଭବିଷ୍ୟତ ରହିଛି ଏବଂ ତା' ସହିତ ଅଛି ଲୋକଙ୍କର ଜୀବନଧାରଣର ମାନ ଉନ୍ନତି ଲାଗି ଏକ ନିଶ୍ଚୟଯୋଗ୍ୟ ପ୍ରତିଶ୍ରୁତି ।

ଜାତୀୟ ଜଙ୍ଗଲ ନୀତି ନିର୍ଦ୍ଧାରଣ କଲାବେଳେ, ଦେଶର କଲ୍ୟାଣକୁ ଦୃଷ୍ଟିରେ ରଖି ଲୋକମାନଙ୍କର ହିତକୁ ପ୍ରାଧାନ୍ୟ ଦିଆଯାଇଥାଏ । ବ୍ରିଟିଶ୍ ଶାସନ କାଳରେ ଅରଣ୍ୟ ସମ୍ପଦ ଉପରେ ଯେଉଁ ପ୍ରାଧାନ୍ୟ ଦିଆଯାଉଥିଲା ତହିଁରେ ମୃତ୍ତିକା ଓ ଜଳ ସଂରକ୍ଷଣ ଏବଂ କୃଷିର ଉନ୍ନତି ଲାଗି ବେଶୀ କିଛିଟା ଗୁରୁତ୍ୱ ଦେଇ କେବଳ ନିସ୍ତାର କରି ଦେଉଥିବା, ଜଙ୍ଗଲ ନିକଟରେ ବାସ କରୁଥିବା ଲୋକମାନଙ୍କର ଦୈନନ୍ଦିନ ସୁବିଧା ଉପରେ ଅଧିକ ଅଙ୍କୁଶ ଲଗାଇ ଦିଆ ଯାଉଥିଲା । ସ୍ୱାଧୀନତା ପରେ ଆଗାମୀ ଦିନର ଜନସଂଖ୍ୟା ବୃଦ୍ଧି ଏବଂ ଅରଣ୍ୟ ସମ୍ପଦର ଦ୍ରୁତ ଅବକ୍ଷୟକୁ ଦୃଷ୍ଟିରେ ରଖି ଜାତୀୟ ଜଙ୍ଗଲ ନୀତିକୁ ନୂଆ ମୋଡ଼ ଦେବାକୁ ହେଲା ଯହିଁରେ ପ୍ରତ୍ୟେକ ରାଜ୍ୟ ଆୟତନର ନ୍ୟୂନପକ୍ଷରେ ଏକ ତୃତୀୟାଂଶ ଜଙ୍ଗଲ ରହିବାକୁ ପ୍ରସ୍ତାବ ରହିଲା । ତହିଁରେ ପାହାଡ଼ୀ ଅଞ୍ଚଳରେ ୬୦ ପ୍ରତିଶତ ଏବଂ ସମଭୂମିରେ ୪୦ ପ୍ରତିଶତ ଜଙ୍ଗଲ ରହିବ ବୋଲି ହେଲା ନିର୍ଦ୍ଦେଶିତ । ବ୍ୟବସାୟ, ପ୍ରତିରକ୍ଷା, ପରିବହନ ଲାଗି କାଠର ବ୍ୟବହାରକୁ ଯଦିଓ ବ୍ରିଟିଶ୍ ଶାସନ କାଳରେ ପ୍ରାଧାନ୍ୟ ଦିଆଯାଉଥିଲା, ୧୯୫୨ ମସିହା ନୀତି ଅନୁଯାୟୀ ନଦୀବନ୍ଧ ଯୋଜନାକୁ ଦୀର୍ଘସ୍ଥାୟୀ କରିବା ମୃତ୍ତିକା ଓ ଜଳ ସଂରକ୍ଷଣ ଲାଗି ଅଧିକ ଜଙ୍ଗଲର ଆବଶ୍ୟକତାକୁ ସମ୍ପୂର୍ଣ୍ଣ ଉପଲବ୍ଧି କରାଗଲା । ୧୯୮୮ ମସିହାରେ ଯେଉଁ ନୂତନ ଜଙ୍ଗଲ ନୀତିର ରୂପାୟନ କରାଗଲା ତହିଁରେ ବ୍ରିଟିଶ୍ ରାଜତ୍ୱରେ ଜଙ୍ଗଲ ସମ୍ପଦକୁ ସମ୍ପୂର୍ଣ୍ଣ ଶୋଷଣରୁ ମୁକ୍ତ ରଖି ଦେଶର କଲ୍ୟାଣ କଳ୍ପେ ଅଧିକ ବ୍ୟବସ୍ଥା ରଖାଗଲା । ଗାଣି ଗହଳରେ ଥିବା ଅବକ୍ଷୟ ପରିବେଶର ପୁନଃ ଉଦ୍ଧାର, ନଦୀବନ୍ଧ ଯୋଜନାର ସୁରକ୍ଷା, ଲୋକଙ୍କୁ ଅଧିକରୁ ଅଧିକତର ସଂପୃକ୍ତ କରି ଉନ୍ନତ ଜଙ୍ଗଲର ସୁରକ୍ଷା ତଥା ଉନ୍ନତି ଲାଗି ମୂଲ୍ୟବାନ ବୃକ୍ଷରୋପଣ ବ୍ୟବସ୍ଥା, ଐତିହାସିକ ସ୍ଥାନରେ ସବୁଜବଳୟ ସୃଷ୍ଟି, ସମାଜର ଦୁର୍ବଳ ଶ୍ରେଣୀ ଅର୍ଥାତ୍ ଅଧିକ ମହିଳା, ଆଦିବାସୀ ହରିଜନ ଶ୍ରେଣୀର ଲୋକଙ୍କୁ ଜଙ୍ଗଲଜାତ ଦ୍ରବ୍ୟରେ ସ୍ୱାବଲମ୍ବନଶୀଳ କରିବାକୁ ରଖାଗଲା ବ୍ୟବସ୍ଥା । ଅନ୍ୟ ଏକ ଅଭିନବ ପରିକଳ୍ପନା ରହିଲା, ସାମାଜିକ ବନୀକରଣ ଯୋଜନା ଜରିଆରେ ବ୍ୟାପକ ପରିମିତ ପତିତ ଅନାବାଦୀ ଜମିରେ ବୃକ୍ଷରୋପଣ ବ୍ୟବସ୍ଥା । ଏ ଭଳି ଜଙ୍ଗଲ ସୃଷ୍ଟି ପାଇଁ ଗ୍ରାମ୍ୟ ସୁରକ୍ଷା ଜଙ୍ଗଲ କମିଟି, ଗ୍ରାମ୍ୟ ବନ କମିଟି ଗଠନ ତଥା ଜଙ୍ଗଲ ଜମିକୁ ଅନ୍ୟ କାର୍ଯ୍ୟଲାଗି ବିନା କେନ୍ଦ୍ର ସରକାରଙ୍କର ଅନୁମୋଦନରେ ବ୍ୟବହାରକୁ ନିଷିଦ୍ଧ କରିବା ।

ପ୍ରଥମେ ଲୋକେ ଜଙ୍ଗଲଜାତ ପଦାର୍ଥର ଫଳଭୋକ୍ତା ଥିଲେ ଏବଂ ସରକାରଙ୍କ ଦାୟିତ୍ୱ ଥିଲା ଜଙ୍ଗଲ ସୃଷ୍ଟି । ବର୍ତ୍ତମାନର ନୂତନ ଜଙ୍ଗଲ ନୀତି ଅନୁଯାୟୀ ଲୋକେ ସରକାରୀ ସ୍ତର ତଥା ବେସରକାରୀ ସଂସ୍ଥାମାନଙ୍କ ପରାମର୍ଶ ଅନୁଯାୟୀ ଅରଣ୍ୟ ସମ୍ପଦ ସୃଷ୍ଟି କରିବେ ଏବଂ ସେହିମାନେ ହେବେ ତା'ର ଭୋକ୍ତା । ଗ୍ରାମ୍ୟ ଜଙ୍ଗଲ କମିଟି କେଉଁ ସ୍ଥାନରେ କେଉଁ କିସମର ଗଛ ଲାଗିବ ତା'ର ପରିଚାଳନା, ଅମଳ, ସୁଷମ ବଣ୍ଟନ ବା ବିକ୍ରିବଟା ବିଭାଗୀୟ ପରାମର୍ଶ ଅନୁଯାୟୀ କରିବେ । ଏହା ଗ୍ରାମର ସର୍ବସାଧାରଣ ସୃଷ୍ଟି କରିଥିବା ଜଙ୍ଗଲ ପାଇଁ ପ୍ରଯୁଜ୍ୟ । କୃଷିଭିତ୍ତିକ ଜଙ୍ଗଲ ସୃଷ୍ଟିରେ ଯେଉଁ ଉପଭୋକ୍ତା ଗୋଷ୍ଠୀ ନେଇ ବୃକ୍ଷ ରୋପଣ କରିଥିବେ କିମ୍ବା ଯେଉଁ ଗରିବ ଲୋକେ ସାମାଜିକ ବନୀକରଣ ଯୋଜନାରୁ ମାଗଣାରେ ଚାରା ନେଇ ନିଜ ନିଜ ଘର ଡିହ ବା କ୍ଷେତ ହୁଡ଼ାରେ ବୃକ୍ଷ ରୋପଣ କରିବେ ତନ୍ମଧ୍ୟରେ ଅଗଷ୍ଟି, ବିଲାତି ଅଗଷ୍ଟି, ବାବୁଲ, ସୁବାବୁଲ, ବଡ଼ ଗୁଲ୍ଲୁଣ୍ଡା, ସାନ ଗୁଲ୍ଲୁଣ୍ଡା, ଦେବଦାରୁ, ଗୋହିରା, ପଳାଶ, ପାଲଧୁଆ, ରାଧାଚୂଡ଼ା, ସୀମା କଣ୍ଟିଆ, ଗୁଡ଼ିସିରିଆ, ସୁନାଝରୀ, ମାଲିଆମ, ବାଡ଼ି ବାଉଁଶ, ବଳାଙ୍ଗି, ସୁନ୍ଦରକଣୀ ବାଉଁଶ ଇତ୍ୟାଦି ୧୮ଟି ଗଛର ଚଲାଣ କଟକଣା ବା ପାସ ରାଜ୍ୟ ଭିତରେ ରାଜ୍ୟ ସରକାର ଉଠାଇ ନେଇଛନ୍ତି । ଏହାଛଡ଼ା ଲୋକେ ସୃଷ୍ଟି କରିଥିବା ଜଙ୍ଗଲକୁ ଗ୍ରାମ୍ୟ ଜଙ୍ଗଲର ସ୍ୱୀକୃତି ଦେବା ଏବଂ ଉପଭୋକ୍ତା ଲଗାଇ ଥିବା ଗଛର ସ୍ୱତ୍ୱ ଅଧିକାର ପାଇଁ ପଟ୍ଟା ଦେବାର ଜନହିତକର କାର୍ଯ୍ୟ ଆରମ୍ଭ କରି ଦେଇଛନ୍ତି । ଏସମସ୍ତ ଭିତରେ ଲୋକଙ୍କ ମନରେ ପ୍ରବଳ ଆଗ୍ରହ ଚେତନା ଓ ଜାଗରଣ ସୃଷ୍ଟି ହେବାର ଲକ୍ଷ୍ୟ କରାଯାଉଛି । ନିଜ ଗ୍ରାମ ନିକଟର ଜଙ୍ଗଲର ସୁରକ୍ଷା ଦାୟିତ୍ୱ ଅନେକ ଅଞ୍ଚଳରେ ଜଙ୍ଗଲ ପ୍ରତି ଲୋକଙ୍କର ସ୍ନେହ ଶ୍ରଦ୍ଧା ପ୍ରଦର୍ଶନ ମଧ୍ୟ ଅନ୍ୟ ଏକ ସୁନ୍ଦର ଲକ୍ଷଣ ।

ସରକାରୀ କାର୍ଯ୍ୟରେ କାଠର ବ୍ୟବହାର, ଜଙ୍ଗଲରୁ ଗଛ କାଟିବା ନିଷେଧ ମଧ୍ୟ ରାଜ୍ୟ ସରକାରଙ୍କର ଅନ୍ୟ ଏକ ବଳିଷ୍ଠ ପଦକ୍ଷେପ । ବେସରକାରୀ ସଂସ୍ଥା ଓ ଲୋକେ ଯଦି ଏ ଦିଗରେ

ସରକାରଙ୍କୁ ସାହାଯ୍ୟ ଓ ସହଯୋଗ କରନ୍ତି ବର୍ଷ କେଇଟାରେ ପୁଣି ଆମର ଅବକ୍ଷୟିତ ଜଙ୍ଗଲ ସମ୍ପଦ ଯେଉଁ ୨୨ ପ୍ରତିଶତରେ ପହଞ୍ଚି ଯାଇ ଆମକୁ ଏକ ସଙ୍କଟମୟ ପରିସ୍ଥିତିରେ ଆଣି ଠିଆ କରିଛି ଧୀରେ ଧୀରେ ତାହା ସୁଧୁରି ଯାଇ ଗ୍ରାମାଞ୍ଚଳ ଲୋକଙ୍କର ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ ଅବସ୍ଥାରେ ଅନେକ କିଛିଟା ଉନ୍ନତି ସଂଘଟିତ କରିପାରିବ । ଏହା ଯେ କେବଳ ରାଜ୍ୟର ସାମଗ୍ରିକ ବିକାଶ ପାଇଁ ଏକାନ୍ତ ଆବଶ୍ୟକ, ତା'ନୁହେଁ ଜରୁରୀ ମଧ୍ୟ ।

ଦିନ ଥିଲା ଆମ ରାଜ୍ୟର ଜଙ୍ଗଲର, ପରିମାଣ ୪୫ ପ୍ରତିଶତ ଥିଲା ବୋଲି ଆମେ ଗର୍ବ ଓ ଆତ୍ମସନ୍ତୋଷ ଲାଭ କରୁଥିଲେ । ଜନସଂଖ୍ୟା ବୃଦ୍ଧି ସହିତ ଆମେ ଯେଉଁ ଅସ୍ୱାଭାବିକ ଅବସ୍ଥାରେ ପହଞ୍ଚିଛେ, ନିଜ ହାତରେ ନିଜେ ଜଙ୍ଗଲ ସୃଷ୍ଟି କରିବା ଏବଂ ରହିଥିବା ସ୍ୱଳ୍ପ ପରିମିତ ଜଙ୍ଗଲ ସମ୍ପଦର ସୁରକ୍ଷା ଲାଗି ହାତ ମିଳାଇବା ପ୍ରତିଟି ବ୍ୟକ୍ତିବିଶେଷ ଓ ଗୋଷ୍ଠୀର ଯେ ଗୋଟିଏ ମୁଖ୍ୟ ଦାୟିତ୍ୱ ହୋଇ ପଡ଼ିଛି ଏହା ଅନସ୍ୱୀକାର୍ଯ୍ୟ ।

୧୯୮୩–୮୪ ମସିହାରୁ ୧୯୯୨–୯୩ ମସିହା ପର୍ଯ୍ୟନ୍ତ ସାମାଜିକ ବନୀକରଣରେ ଯେଉଁ ଲକ୍ଷ୍ୟ ହାସଲ କରାଯାଇ ପାରିଛି–

| | | |
|---|---|---|
| ଗ୍ରାମ୍ୟ ଜଙ୍ଗଲ | ହେକ୍ଟର – | ୬୮,୧୪୫-୫ |
| ନଗ୍ନ ପାହାଡ଼ରେ ବୃକ୍ଷ ରୋପଣ | | ୧୨୩୫-୫ |
| ପୁନଃ ବନୀକରଣ | | ୨୨,୪୩୩-୮ |
| ପଥପାର୍ଶ୍ୱ ବୃକ୍ଷ ରୋପଣ | | ୩୩୯-୫ |
| ଅନୁଷ୍ଠାନ ପରିସରରେ ବୃକ୍ଷ ରୋପଣ | | ୩୩୪-୦ |
| କୃଷିଭିତ୍ତିକ ଜଙ୍ଗଲ ଗୃହ | | ୫୦୦୩-୫ |
| ଉଜୁଡ଼ା ଜଙ୍ଗଲର ପୁନରୁଦ୍ଧାର | | ୧୪,୧୯୫-୦ |
| ଚାରା ବିତରଣ (ସଂଖ୍ୟାରେ) | | ୧୨ କୋଟି |
| ଗ୍ରାମ ସଂଖ୍ୟା (ଯୋଜନା ପରିସର ଭିତରେ) | | ୧୦,୬୨୨ |

ଆମ ରାଜ୍ୟର ଜଙ୍ଗଲର ଆୟତନ ୫୭୮୩ ବର୍ଗ କିଲୋମିଟର କାଗଜ କଲମରେ ଥିଲେ ମଧ୍ୟ ଉତ୍ପାଦନକ୍ଷମ ଜଙ୍ଗଲର ଆୟତନ ୨୭,୦୮୭ ବର୍ଗ କିଲୋମିଟର । ଜନସଂଖ୍ୟାର ବୃଦ୍ଧି ସହିତ ଜାଳେଣୀ କାଠର ଚାହିଦା ବଢ଼ି ବଢ଼ି ଚାଲିଛି । ଏହାର ମୁଖ୍ୟ କାରଣ ହେଲା ଚାହିଦା ଓ ରୁଚିର ରହିଛି ପରିବର୍ତ୍ତନ । ଜାଳେଣୀ କାଠର ଚାହିଦା ୭୦ ଲକ୍ଷ ଟନ୍ ଥିଲା ବେଳେ ଆମ ଜଙ୍ଗଲରୁ କେବଳ ୬-୫ ଲକ୍ଷ ଟନ୍ ଜାଳେଣୀ କାଠ ମିଳିଥାଏ । ଜାଳେଣୀ କାଠର ଚାହିଦା ବଢ଼ିବା ଯୋଗୁଁ ହିଁ ଜଙ୍ଗଲ ସମ୍ପଦ ନଷ୍ଟ ହୋଇଯାଉଛି । ଉପକୂଳ ଅଞ୍ଚଳରେ ଏହା ଏତେ ଉତ୍କଟ ଆକାର ଧାରଣ କରିଛି ଯେ ଲୋକେ ଘସି ଗୋବରକୁ ଜାଳେଣୀ ରୂପେ ବ୍ୟବହାର କରିବାକୁ ବାଧ୍ୟ ହେଉଛନ୍ତି । ହୁଏତ ଏହି ଘସି ଗୋବର ଯଦି ସ୍ୱୟ ଜମିରେ ବ୍ୟବହୃତ ହୋଇପାରନ୍ତା ତା'ହେଲେ ଅଧିକ ଖାଦ୍ୟ ଶସ୍ୟ ଉତ୍ପାଦନ ହୋଇପାରନ୍ତା ।

ପ୍ରତି ବର୍ଷ ଆମ ରାଜ୍ୟରେ ପ୍ରାୟ ୪ ଲକ୍ଷ କ୍ୱିଣ୍ଟାଲ କେନ୍ଦୁପତ୍ର ଉତ୍ପାଦନ ହୋଇଥାଏ ଏବଂ ସ୍ଥାନୀୟ ବ୍ୟବହାର ବ୍ୟତୀତ ରାଜକୋଷକୁ ୧୦୦ କୋଟି ଟଙ୍କା ପର୍ଯ୍ୟନ୍ତ ଅର୍ଥ ଆମେ ପାଉଥାଉଁ ।

ଓଡ଼ିଶାର ବନ୍ୟ ପ୍ରାଣୀ ଆମର ଏକ ଦ୍ୱିତୀୟ ସମ୍ପଦ । ବ୍ରିଟିଶ୍ ଶାସନ କାଳରେ ଯେଉଁ ସବୁ ଆଇନ୍ କାନୁନ୍ ବନ୍ୟପ୍ରାଣୀ ସଂରକ୍ଷଣ ପାଇଁ କରାଯାଇଥିଲା ତାହା, ସେତେଟା ଫଳପ୍ରଦ ନଥିଲା । ବର୍ତ୍ତମାନ ଅନେକ ଆଇନ୍ କାନୁନ୍ ସରକାରଙ୍କର ଅନୁମୋଦନ ଲାଭ କରି ସାରିଛି ଏବଂ ବନ୍ୟପ୍ରାଣୀ ସଂରକ୍ଷଣ ପାଇଁ ସେଗୁଡ଼ିକ କଡ଼ାକଡ଼ି ଭାବରେ ଲାଗୁ ହୋଇଅଛି ।

ରାଜଧାନୀର ଅନତି ଦୂରରେ ସୁନ୍ଦର ପ୍ରାକୃତିକ ପରିବେଶରେ ରହିଛି ନନ୍ଦନକାନନ, ଯାହାକି ଧଳାବାଘ ପ୍ରଜନନ ପାଇଁ ବିଶ୍ୱ ବିଖ୍ୟାତ । ସେହିପରି ୧୭୫ ବର୍ଗ କିଲୋମିଟର ଚନ୍ଦକା ଅଭୟାରଣ୍ୟ ହାତୀମାନଙ୍କ ସୁରକ୍ଷା ପାଇଁ ଉଦ୍ଦିଷ୍ଟ । ଚିଲିକା ଓ ଭିତର କନିକା ଶୀତଦିନେ ଅସଂଖ୍ୟ ବିଦେଶୀଗତ ପକ୍ଷୀମାନଙ୍କର ସମାଗମରେ ଗହଳଚହଳ ହୋଇଉଠେ । ସେହି ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ପ୍ରତିବର୍ଷ ହଜାର ହଜାର ସଂଖ୍ୟାରେ ପରିଦର୍ଶକ ରାଜ୍ୟ ଓ ଦେଶ ବାହାରୁ ଏଠାକୁ ଆସନ୍ତି ।

## ବନ୍ୟପ୍ରାଣୀ ପ୍ରକଳ୍ପ

| ପ୍ରକଳ୍ପର ନାମ | ଅବସ୍ଥିତି | ଜିଲ୍ଲାର ନାମ |
|---|---|---|
| (୧) କୁମ୍ଭୀର ପ୍ରଜନନ | ରାମତୀର୍ଥ | ମୟୂରଭଞ୍ଜ |
| (୨) ଲୁଣି ପାଣି କୁମ୍ଭୀର | ଡାଙ୍ଗମାଳ | କେନ୍ଦ୍ରାପଡ଼ା |
| (୩) ଘଡ଼ିଆଳ କୁମ୍ଭୀର | ସାତକୋଶିଆ | ଅନୁଗୁଳ |
| (୪) ନନ୍ଦନକାନନ କୁମ୍ଭୀର | ନନ୍ଦନକାନନ | ଖୋର୍ଦ୍ଧା |
| (୫) ସମୁଦ୍ର କଇଁଛ | ନୂଆନଈ | ପୁରୀ |

ଏହା ବ୍ୟତୀତ ଆମ ରାଜ୍ୟରେ ଶିମିଳିପାଳ ଓ ଭିତର କନିକାର ୨ଟି ପ୍ରସ୍ତାବିତ ଜାତୀୟ ଉଦ୍ୟାନ ଯଥାକ୍ରମେ ମୟୂରଭଞ୍ଜ ଓ କେନ୍ଦ୍ରାପଡ଼ାରେ ଅବସ୍ଥିତ । ଓଡ଼ିଶାରେ ଥିବା ୯ଟି ହରିଣ ଉଦ୍ୟାନ ଓ ୧୭ଟି ଅଭୟାରଣ୍ୟ ବହୁ ସଂଖ୍ୟାରେ ଲୋକଙ୍କୁ ପ୍ରତିବର୍ଷ ଆକୃଷ୍ଟ କରିଥାଏ ।

ଅଧୁନା ନୂତନ ଜଙ୍ଗଲନୀତି ଜାତୀୟ ଜଙ୍ଗଲ ନୀତି ଏବଂ ୧୯୯୦ ମସିହାର ଜଙ୍ଗଲ ସଂରକ୍ଷଣ ଆଇନ୍‌ର ମୂଳଲକ୍ଷ୍ୟଗୁଡ଼ିକ ପର୍ଯ୍ୟାଲୋଚନା କଲେ ବନ ଉନ୍ନୟନ ପାଇଁ ନିଆଯାଉଥିବା ପଦକ୍ଷେପଗୁଡ଼ିକ ସ୍ପଷ୍ଟ ହେଇଉଠେ ।

* ଦ୍ରୁତ ଭାବରେ କ୍ଷୟ ହୋଇ ଯାଉଥିବା ନଷ୍ଟ ପରିବେଶର ଜଙ୍ଗଲ ସଂରକ୍ଷଣ ମାଧ୍ୟମରେ ପୁନରୁଦ୍ଧାର ।
* ଅନୁରୂପ ପ୍ରକ୍ରିୟାରେ ଲୋପ ହେବାକୁ ବସିଥିବା ବିଭିନ୍ନ ଉଦ୍ଭିଦ ପ୍ରାଣୀର ବଂଶ ରକ୍ଷା ।
* ବନ୍ୟା ମରୁଡ଼ିର ହ୍ରାସ ଓ ଜଳଭଣ୍ଡାରଗୁଡ଼ିକ ପୋତି ହୋଇଯାଉଥିବା ପ୍ରକ୍ରିୟାକୁ ପ୍ରତିହତ କରିବାକୁ ମୃତ୍ତିକା ଓ ଜଳ ସଂରକ୍ଷଣ ବ୍ୟବସ୍ଥା ।
* ଆମ ରାଜ୍ୟରେ ଦେଖାଦେଇଥିବା ପର୍ଯ୍ୟାପ୍ତ ପରିମିତ (ପ୍ରାୟ ୬୪ ହଜାର ବର୍ଗ କି.ମି.) ପତିତ ଅନାବାଦି ଜମିରେ ବହୁଳ ପରିମାଣର ବୃକ୍ଷରୋପଣ କରାଯିବାର ବ୍ୟବସ୍ଥା ।

* ଗ୍ରାମାଞ୍ଚଳ ଏବଂ ଆଦିବାସୀ ଲୋକଙ୍କର ଛୋଟ କାଠ, ଜାଳେଣୀ କାଠ, ଲଘୁ ବନଜାତ ଦ୍ରବ୍ୟ ଓ ଗୋ-ଖାଦ୍ୟର ସୁବିଧା ମେଣ୍ଟାଇବା ବ୍ୟବସ୍ଥା କରିବା ।
* ଜାତୀୟ ଜରୁରୀ ଆବଶ୍ୟକତା ମେଣ୍ଟାଇବା ପାଇଁ ଜଙ୍ଗଲର ଉତ୍ପାଦନ କ୍ଷମତା ବୃଦ୍ଧି କରିବା ।
* କାଠର ବିକଳ୍ପ ବ୍ୟବହାର ।
* ମହିଳାମାନଙ୍କୁ ନେଇ ଜଙ୍ଗଲରେ ପଡୁଥିବା ଚାପକୁ ହ୍ରାସ କରିବା ଉଦ୍ଦେଶ୍ୟରେ ବୃହତ୍ ଧରଣର ଗଣ ଆନ୍ଦୋଳନ ସୃଷ୍ଟି ।

ଯେତେ ଦିନ ପର୍ଯ୍ୟନ୍ତ ଲୋକମାନେ ନିଜର ସମସ୍ୟା ପ୍ରତି ସଚେତନଶୀଳତା ପ୍ରକାଶ ନକରିଛନ୍ତି, ସେତେଦିନ ଯାଏଁ ଆମର ଅର୍ଥନୈତିକ ବିକାଶ ସମ୍ଭବପର ନୁହେଁ, ଜାଳେଣୀ କାଠ ସମସ୍ୟା ଦୂର କରିବାକୁ ଲୋକେ ନିଜ ପାଇଁ ନିଜେ ଜଙ୍ଗଲ ସୃଷ୍ଟି କରିବା ଏକମାତ୍ର ପନ୍ଥା । ଗୋଟିଏ ଗୃହୀ ପରିବାର ସାମାଜିକ ବନୀକରଣ ଯୋଜନାରୁ ମାଗଣାରେ ମିଳୁଥିବା ବିଭିନ୍ନ କିସମର ଚାରା ନେଇ ବାର୍ଷିକ କୋଡ଼ିଏଟି କରି ଯଦି ନିଜ ନିଜର ଘର ପିଛ, ଶୁଷ୍କ ଜମି ହୁଡ଼ାରେ ଲଗାନ୍ତି ଏବଂ ଉଠାଉନ୍ତି ଦ୍ୱିତୀୟତଃ ତାହେଲେ ୬ ବର୍ଷ ମଧ୍ୟରେ ସେହି ପରିବାର ଅନେକ ପରିମାଣରେ ନିଜର ଛୋଟ କାଠ, ଜାଳେଣୀ କାଠ ଏବଂ ଗୋ-ଖାଦ୍ୟରେ ସ୍ୱାବଲମ୍ବନଶୀଳ ହୋଇ ପାରିବେ । ତା' ସହିତ ଜାଳେଣୀ କାଠର ବିକଳ୍ପ ବ୍ୟବସ୍ଥା ଅର୍ଥାତ୍ ଓଡ଼ିଶା ଶକ୍ତି ବିକାଶ ସଂସ୍ଥା ଦ୍ୱାରା ଯୋଗାଇ ଦିଆ ଯାଉଥିବା ସୂର୍ଯ୍ୟ ଚୁଲା, ଧୂମହୀନ ଚୁଲା କିମ୍ବା ଗୋଲା କୋଇଲା ଅଥବା ପ୍ରିସାଗ୍ରି ଚୁଲା ବହୁଳ ଭାବରେ ବ୍ୟବହାର କଲେ ଜଙ୍ଗଲ ଉପରେ ପଡୁଥିବା ଚାପ ଅନେକ ପରିମାଣରେ ହ୍ରାସ ହୋଇ ପାରିବ ।

ଜନ ଜୀବନର ମାନ ଉନ୍ନତି ପାଇଁ ପରିବେଶର ସୁରକ୍ଷା ଏବଂ ଅଧିକ ବୃକ୍ଷରୋପଣ ମାଧ୍ୟମରେ ବ୍ୟାପକ ଭାବରେ ନୂତନ ଜଙ୍ଗଲ ସୃଷ୍ଟି ହିଁ ଏକମାତ୍ର ପନ୍ଥା ।

---

**ମନ୍ତ୍ରୀ,**
**ଜଙ୍ଗଲ ଓ ସମବାୟ ବିଭାଗ ।**



ଆଠଗଡ଼ଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଏକ ମାର୍କେଟ କମ୍ପ୍ଲେକ୍ସ ଓ ଏକ କଲ୍ୟାଣ ମଣ୍ଡପର ଶିଳାନ୍ୟାସ କରୁଛନ୍ତି ।

# ସହର ଯୋଜନା ସଂସ୍ଥାର ଗତ ଚାରି ବର୍ଷର କାର୍ଯ୍ୟକଳାପ ଓ ଅଗ୍ରଗତି

ପ୍ରତ୍ୟେକ ଦେଶରେ ସହର ଓ ନଗରଗୁଡ଼ିକ ଉନ୍ନତିର ମୂଳ ଆଧାର ରୂପେ କାର୍ଯ୍ୟ କରନ୍ତି । ସେହି ପରିପ୍ରେକ୍ଷୀରେ ରାଜ୍ୟର ସମସ୍ତ ସହର ଓ ତା'ର ପରିବେଶର ସମନ୍ୱିତ ଓ ସୁଷମ ବିକାଶ ପାଇଁ ୧୯୫୪ ମାର୍ଚ୍ଚ ୨୯ରେ ଏକ ସହର ଯୋଜନା ସଂସ୍ଥା ଗଢ଼ାଯାଇ ତାହାକୁ ୧୯୭୪ ମସିହା ସେପ୍ଟେମ୍ବର ୬ ତାରିଖରେ ବିଭାଗୀୟ ମୁଖ୍ୟ କାର୍ଯ୍ୟକର୍ତ୍ତା ଭାବେ ସ୍ୱୀକୃତି ଦିଆଯାଇଥିଲା ।

ପୂର୍ବରୁ ଅବିଭକ୍ତ ଜିଲ୍ଲାରେ ୧୩ ଗୋଟି ଜିଲ୍ଲାସ୍ତରୀୟ ଯୋଜନା ଶାଖା ଅଫିସ କାର୍ଯ୍ୟ କରୁଛି । ବର୍ତ୍ତମାନ ଆମ ରାଜ୍ୟ ୩୦ଟି ଜିଲ୍ଲାରେ ବିଭକ୍ତ ହେଲା ପରେ ପ୍ରାୟ ପ୍ରତ୍ୟେକ ଅଫିସ ପାଇଁ କାର୍ଯ୍ୟର ପରିସର ବୃଦ୍ଧି ଘଟିଛି ।

ବର୍ତ୍ତମାନର ଲୋକପ୍ରିୟ ସରକାରଙ୍କର କାର୍ଯ୍ୟକାଳ ଆରମ୍ଭ ହେବା ପରେ ପ୍ରାୟ ୧୯୯୦-୯୧ ବର୍ଷଠାରୁ ଏହି ନିର୍ଦ୍ଦେଶାଳୟର କାର୍ଯ୍ୟର ଆଭିମୁଖ୍ୟ ମଧ୍ୟ ଯଥେଷ୍ଟ ବୃଦ୍ଧି ପାଇଛି । ଏହି ସଂସ୍ଥାର କାର୍ଯ୍ୟ ପରିସରକୁ ମୁଖ୍ୟତଃ ପାଞ୍ଚ ଭାଗରେ ବିଭକ୍ତ କରାଯାଇପାରେ, ଯଥା-(୧) ମାଷ୍ଟର ପ୍ଲାନ୍ ପ୍ରସ୍ତୁତି, (୨) ସମନ୍ୱିତ କ୍ଷୁଦ୍ର ଓ ମଧ୍ୟମ ସହରର ବିକାଶ ଯୋଜନାର କାର୍ଯ୍ୟକାରିତା, (୩) ଯୋଜନା କର୍ତ୍ତୃପକ୍ଷମାନଙ୍କ ମାଧ୍ୟମରେ ସେଗୁଡ଼ିକର ସଫଳ ରୂପାୟନ, (୪) ଖୁଡ଼ା ଓ ଚୁଡ଼ା ଭଳି ନୂତନ ନଗର ବିକାଶ ସଂସ୍ଥାମାନଙ୍କୁ ବୈଷୟିକ ସହାୟତା ଓ (୫) ନିର୍ମାଣ କେନ୍ଦ୍ର ମାଧ୍ୟମରେ କଳିଙ୍ଗ କୁଟୀର ଗ୍ରାମ୍ୟ ଗୃହ ନିର୍ମାଣ ଯୋଜନାର ଅଗ୍ରଗତି ।

## (୧) ମାଷ୍ଟର ପ୍ଲାନ୍ ପ୍ରସ୍ତୁତି :

୧୯୯୧ ଜନଗଣନା ଅନୁଯାୟୀ ଓଡ଼ିଶାରେ ୧୨୪ଟି ସହର ରହିଅଛି – ସାଧାରଣତଃ ସହର ଏବଂ ଏହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳ ପାଇଁ ମାଷ୍ଟର ପ୍ଲାନ୍ ପ୍ରସ୍ତୁତ କରାଯାଇଥାଏ । ୧୯୮୯-୯୦ ଆର୍ଥିକ ବର୍ଷ ଶେଷ ସୁଦ୍ଧା ୬୦ ଗୋଟି ମାଷ୍ଟର ପ୍ଲାନ୍ ପ୍ରସ୍ତୁତ ହୋଇଥିଲା ଏବଂ ସେଥିରୁ ୩୮ ଗୋଟି ଚୂଡ଼ାନ୍ତ କରାଯାଇଥିଲା ।

୧୯୯୦-୯୧, ୧୯୯୧-୯୨, ୧୯୯୨-୯୩ ଏବଂ ଚଳିତ ଆର୍ଥିକ ବର୍ଷର ଏ ଯାବତ୍ ମୋଟ ୮ଟି ମାଷ୍ଟର ପ୍ଲାନ୍ ପ୍ରସ୍ତୁତ ହୋଇଅଛି ଏବଂ ପୂର୍ବ ପ୍ରସ୍ତୁତ ମାଷ୍ଟର ପ୍ଲାନ୍ ମଧ୍ୟରୁ ଦୁଇଗୋଟି ଚୂଡ଼ାନ୍ତ କରାଯାଇଅଛି ।

ଟାଉନ୍ ପ୍ଲାନିଂ ଆଇନ ଅନୁଯାୟୀ ମାଷ୍ଟର ପ୍ଲାନ୍‌ର ପୁନଃପ୍ରସ୍ତୁତି ବ୍ୟବସ୍ଥା ରହିଅଛି । ତଦନୁଯାୟୀ ୬ ଗୋଟି ପୁରାତନ ମାଷ୍ଟର ପ୍ଲାନ୍‌ର ପୁନଃପ୍ରସ୍ତୁତି କାର୍ଯ୍ୟ ଏ ସମୟ ମଧ୍ୟରେ ଗ୍ରହଣ କରାଯାଇଅଛି ।

## (୨) ସମନ୍ୱିତ କ୍ଷୁଦ୍ର ଓ ମଧ୍ୟମ ସହର ବିକାଶ ଯୋଜନା :

ଏହି ପ୍ରକଳ୍ପ ଭାରତ ସରକାରଙ୍କ ଦ୍ୱାରା କେନ୍ଦ୍ରୀୟ ସମର୍ଥିତ ସ୍କିମ୍ ଭାବେ ଷଷ୍ଠ ଯୋଜନା କାଳରେ ପ୍ରଚଳନ କରାଯାଇଥିଲା । ଏହି ଯୋଜନାର ରୂପାୟନ ପାଇଁ କେନ୍ଦ୍ର ସରକାରଙ୍କ ସହାୟତା (ଋଣ ଆକାରରେ) ଏବଂ ରାଜ୍ୟ ସରକାରଙ୍କ ଅନୁଦାନ ତଥା ଆନୁଷ୍ଠାନିକ ଅର୍ଥର ବ୍ୟବସ୍ଥା କରାଯାଇଅଛି । ଯୋଗ୍ୟ ବିବେଚିତ ପ୍ରକଳ୍ପଗୁଡ଼ିକ ପାଇଁ ଋଣ ଅର୍ଥ ଉପରେ ନିମ୍ନ ହାରରେ ସୁଧ ସହ (୫ ବର୍ଷର ନିର୍ମାଣ ସମୟ ବ୍ୟତୀତ) ୨୫ ବର୍ଷରେ ପରିଶୋଧ କରିବାର ବ୍ୟବସ୍ଥା ଅଛି । ଷଷ୍ଠ ଏବଂ ସପ୍ତମ ଯୋଜନା ଶେଷ ସୁଦ୍ଧା ୧୩ ଗୋଟି ସହର ମଞ୍ଜୁରୀ ପାଇଁ ଏ ସ୍କିମ୍‌ରେ ଅନ୍ତର୍ଭୁକ୍ତ ହୋଇଥିଲା ।

୧୯୯୦-୯୧ ରୁ ୧୯୯୨-୯୩ ଆର୍ଥିକ ବର୍ଷ ସୁଦ୍ଧା ୧୩ ଗୋଟି ସହର ଏଥିରେ ଅନ୍ତର୍ଭୁକ୍ତ ହୋଇଅଛି । ଚଳିତ ଆର୍ଥିକ ବର୍ଷରେ ଅନ୍ତର୍ଭୁକ୍ତ ୭ ଗୋଟି ସହର ମଧ୍ୟରୁ ଅଦ୍ୟାବଧି ୫ ଗୋଟି ପ୍ରକଳ୍ପ ରିପୋର୍ଟ ପ୍ରସ୍ତୁତ ହୋଇ ମଞ୍ଜୁରୀ ପାଇଁ ପ୍ରେରଣ କରାଯାଇଅଛି ।

୧୯୮୯-୯୦ ସୁଦ୍ଧା ୮୬୫ ଗୋଟି ଦୋକାନ ଘର/ ରେସ୍ତୋରାଁ/ପିଣ୍ଡି, ବସ୍‌ଷ୍ଟାଣ୍ଡ, ୨ ଗୋଟି ଟ୍ରାଫିକ୍ ଆଇଲାଣ୍ଡ, ଗୋଟିଏ ମାଲ୍‌ଗୋଦାମ ଘର, ଟ୍ରକ୍ ଟର୍ମିନାଲ୍, ୪ ଗୋଟି ସୁଲଭ ଶୌଚାଳୟ ନିର୍ମାଣ କରାଯାଇଥିଲା ଓ ନିମ୍ନଲିଖିତ ବାସୋପଯୋଗୀ ଭୂମି ଯୋଗାଇ ଦିଆଯାଇଥିଲା ।

| | |
|---|---|
| ଉଚ୍ଚଆୟକାରୀ ଶ୍ରେଣୀ | ୬୩ |
| ମଧ୍ୟମ ଆୟକାରୀ ଶ୍ରେଣୀ | ୧୬୬ |
| ନିମ୍ନ ଆୟକାରୀ ଶ୍ରେଣୀ | ୩୫୪ |
| ଆର୍ଥିକ ଦୁର୍ବଳ ଶ୍ରେଣୀ | ୫୮୯ |
| ମୋଟ୍ | ୧,୧୫୪ |

ଷଷ୍ଠ ଓ ସପ୍ତମ ଯୋଜନା କାଳରେ (୧୯୮୯ ସୁଦ୍ଧା) ସ୍ୱୀକୃତି ପାଇଥିବା ସହରଗୁଡ଼ିକରେ ୧୯୯୨–୯୩ ପର୍ଯ୍ୟନ୍ତ ଓ ୧୯୯୧ ପରେ ସ୍ୱୀକୃତି ପାଇଥିବା ସହରମାନଙ୍କରେ ଏ ଯାବତ୍ ସୃଷ୍ଟି କରାଯାଇଥିବା ସମ୍ପତ୍ତିମାନ ନିମ୍ନରେ ପ୍ରଦତ୍ତ ହେଲା ।

| | ୧୯୮୯–୯୦ ପୂର୍ବରୁ | ୧୯୯୦–୯୧ ପରେ |
|---|---|---|
| ଦୋକାନ ଘର/ପିଣ୍ଡି/କିଓସ୍/ହୋଟେଲ୍‌ଷ୍ଟେ |  | ୧,୦୦୭ |
| ହେଲ୍ଥ ଓ ବସ୍‌ଷ୍ଟାଣ୍ଡ୍/ବସ୍‌ବେ | ୧ | ୩/୨୪ |
| ସୁଲଭ ଶୌଚାଳୟ | .. | ୧ |
| ରାସ୍ତାର ଲମ୍ବ | ୬୬୨ କି.ମି. | ୨୬-୮୨ କି.ମି. |
| **ବାସୋପଯୋଗୀ ଭୂମି :** | | |
| ଉଚ୍ଚ ଆୟକାରୀ ଶ୍ରେଣୀ | ୫୭ | ୨୫ |
| ମଧ୍ୟମ ଆୟକାରୀ ଶ୍ରେଣୀ | ୧୦୨ | ୨୫୦ |
| ନିମ୍ନ ଆୟକାରୀ ଶ୍ରେଣୀ | ୨୫୦ | ୩୯୪ |
| ଆର୍ଥିକ ଦୁର୍ବଳ ଶ୍ରେଣୀ | ୨୨୭ | ୪୩୪ |
| | ୬୨୪ | ୧,୧୦୩ |

## (୩) ଯୋଜନା କର୍ତ୍ତୃପକ୍ଷ :

ମହାମଣ୍ଡଳୀୟ ବିନିୟମ (ଯୋନିଂ ରେଗୁଲେସନ୍) ଲାଗୁ କରାଇ ମାଷ୍ଟର ପ୍ଲାନ୍‌ର ଉଦ୍ଦିଷ୍ଟ ବଳୟ ମଧ୍ୟରେ ବିଭିନ୍ନ ପ୍ରକାରର ବିକାଶମୂଳକ ସ୍କିମ୍‌ର ରୂପାୟନ ମାଧ୍ୟମରେ ଆଞ୍ଚଳିକ ଉନ୍ନୟନ ସଂସ୍ଥା ଏବଂ ସ୍ୱତନ୍ତ୍ର ଯୋଜନା କର୍ତ୍ତୃପକ୍ଷମାନେ କାର୍ଯ୍ୟ କରନ୍ତି । ରାଜ୍ୟରେ ୫ ଗୋଟି ଆଞ୍ଚଳିକ ଉନ୍ନୟନ ସଂସ୍ଥା ଏବଂ ୩୧ ଗୋଟି ସ୍ୱତନ୍ତ୍ର ଯୋଜନା କର୍ତ୍ତୃପକ୍ଷଙ୍କ କାର୍ଯ୍ୟାଳୟ କାର୍ଯ୍ୟ କରୁଅଛି । ଏହି ଯୋଜନା କର୍ତ୍ତୃପକ୍ଷମାନେ ୧୯୯୩ ସୁଦ୍ଧା ବିଭିନ୍ନ ପ୍ରକାରର ମୋଟ ୫,୦୧୦ ଗୋଟି ଗୃହ ନିର୍ମାଣ କରାଇଛନ୍ତି ।

## ଅଭିବୃଦ୍ଧି କେନ୍ଦ୍ର (ଗ୍ରୋଥ୍ ସେଣ୍ଟର୍) ଓ ଗୋଷ୍ଠୀ ସଦର ମହକୁମା (ଫୋକାଲ୍ ପଏଣ୍ଟ) :

ନଅ ଗୋଟି ଅଭିବୃଦ୍ଧି କେନ୍ଦ୍ର ଓ ୩୧ ଗୋଟି ଗୋଷ୍ଠୀ ସଦର ମହକୁମାରେ ବିଭିନ୍ନ ବିକାଶ ମୂଳକ ସ୍କିମ୍‌ଗୁଡ଼ିକ ପାଇଁ ପ୍ରୋଜେକ୍ଟ ରିପୋର୍ଟ ପ୍ରସ୍ତୁତ କରାଯାଇ ରାଜ୍ୟ ଗୃହ ନିର୍ମାଣ ସଂସ୍ଥାକୁ ୧୯୯୦–୯୧ ସୁଦ୍ଧା ଦିଆଯାଇଛି । ୧୯୯୧–୯୨ ବର୍ଷରେ ଏହିଭଳି ୮ ଗୋଟି ଗୋଷ୍ଠୀ ସଦର ମହକୁମା ଏବଂ ଗୋଟିଏ ଅଭିବୃଦ୍ଧି କେନ୍ଦ୍ର ପାଇଁ ପ୍ରୋଜେକ୍ଟ ରିପୋର୍ଟ ପ୍ରସ୍ତୁତ ହୋଇ ଉପରୋକ୍ତ ସଂସ୍ଥାକୁ ଦିଆଯାଇଛି । ରାଜ୍ୟ ଗୃହ ନିର୍ମାଣ ସଂସ୍ଥା ସମସ୍ତ ପ୍ରୋଜେକ୍ଟ ରିପୋର୍ଟକୁ ହୁଡ୍‌କୋର ଅନୁମୋଦନ ପାଇଁ ପଠାଇଛନ୍ତି ।

## (୪) ରାଜ୍ୟ ସହର ବିକାଶ ସଂସ୍ଥା ଏବଂ ଜିଲ୍ଲା ସହର ବିକାଶ ସଂସ୍ଥା (ସୁଡା ଓ ଡୁଡା) :

ରାଜ୍ୟ ସ୍ତରରେ ସହରାଞ୍ଚଳଗୁଡ଼ିକର ସମନ୍ୱିତ ବିକାଶ ତଥା ଉପଯୁକ୍ତ କାର୍ଯ୍ୟକାରିତା ଓ ସୁପରିଚାଳନା ନିମନ୍ତେ ରାଜ୍ୟ ସହର ବିକାଶ ସଂସ୍ଥା (ସୁଡା) ଓ ଜିଲ୍ଲା ସହର ବିକାଶ ସଂସ୍ଥା (ଡୁଡା) ଗଠନ କରାଯାଇଛି । ଜିଲ୍ଲା ସହର ଯୋଜନା କାର୍ଯ୍ୟାଳୟଗୁଡ଼ିକୁ ଜିଲ୍ଲା ସହର ବିକାଶ ସଂସ୍ଥାର ବୈଷୟିକ ଅଙ୍ଗ ଭାବେ କାର୍ଯ୍ୟ କରିବା ପାଇଁ ଘୋଷଣା କରାଯାଇଛି । ପୌର ସ୍ଥାନୀୟ ନିକାୟଗୁଡ଼ିକର ସ୍କିମ୍‌ଗୁଡ଼ିକୁ ବ୍ୟବସ୍ଥିତ ଓ ଅନୁମୋଦନରେ ସାହାଯ୍ୟ କରିବା ତଥା ବାସ୍ତବ ଓ ଆର୍ଥିକ ଅଗ୍ରଗତିକୁ ପର୍ଯ୍ୟାଲୋଚନା କରିବା ନିମନ୍ତେ ଏହି କାର୍ଯ୍ୟାଳୟ ସାହାଯ୍ୟ କରୁଅଛି ।

## (୫) ନିର୍ମାଣ କେନ୍ଦ୍ର ସ୍ଥାପନା କଳିଙ୍ଗ କୁଟୀର ଗ୍ରାମ୍ୟ ଗୃହ ନିର୍ମାଣ ଯୋଜନା :

ସୁଲଭ ମୂଲ୍ୟରେ ସ୍ଥାନୀୟ ପଦାର୍ଥ ବ୍ୟବହାର ପୂର୍ବକ ଘର ତିଆରି ଉପକରଣ ପ୍ରସ୍ତୁତ କରି ଯୋଗାଇବା, କାରିଗରମାନଙ୍କୁ ତାଲିମ୍ ଦେବା ଏବଂ ଘର ତିଆରିର ସରଳ ଓ ସହଜ ଉପାୟ ଲୋକଙ୍କ ପାଖରେ ପହଞ୍ଚାଇବାରେ ନିର୍ମାଣ କେନ୍ଦ୍ର ବିଶେଷ ଭାବେ ସହାୟକ ହୋଇଅଛି । ପୁନଶ୍ଚ ଏହା ସମାଜର ପ୍ରତ୍ୟେକ ବର୍ଗର ବ୍ୟକ୍ତିଙ୍କୁ ସ୍ୱଳ୍ପ ଖର୍ଚ୍ଚରେ ଅଗ୍ନି ନିରୋଧକ ବାସଗୃହ ନିର୍ମାଣ ପାଇଁ ଉପଯୁକ୍ତ ଜ୍ଞାନ କୌଶଳ ଯୋଗାଇ ଅଛି । ନିର୍ମାଣ କେନ୍ଦ୍ରର ଉତ୍ପାଦନ ପ୍ରଣାଳୀ ସମର୍ଥନୀୟ ବିକାଶ ଚିନ୍ତାଧାରାରେ ଅନୁପ୍ରାଣିତ, ତେଣୁ ଏହା ପରିବେଶ ସୁରକ୍ଷା ପାଇଁ ଅନୁକୂଳ ।

୧୯୯୩–୯୪ ବର୍ଷ ମଧ୍ୟରେ ହୁଡ୍‌କୋ ୧୭ ଗୋଟି ସ୍ଥାନରେ ନିର୍ମାଣ କେନ୍ଦ୍ର ସ୍ଥାପନ ପାଇଁ ମଞ୍ଜୁରୀ ଦେଇ ସାରିଛି । ଏହା ମଧ୍ୟରୁ ଅଧିକାଂଶ ଉତ୍ପାଦନ ଆରମ୍ଭ କରିଛନ୍ତି ଏବଂ କଳିଙ୍ଗ କୁଟୀର ଗ୍ରାମ୍ୟ ଗୃହ ନିର୍ମାଣ ଯୋଜନାରେ ଅଂଶ ଗ୍ରହଣ କରିଛନ୍ତି । ୧୯୯୪–୯୫ ବର୍ଷରେ ୩୫ ଗୋଟି ସ୍ଥାନରେ ନିର୍ମାଣ କେନ୍ଦ୍ର ସ୍ଥାପନା କରିବା ପାଇଁ ହୁଡ୍‌କୋ ସମ୍ମତି ପ୍ରଦାନ କରିଅଛି ଏବଂ ୮୮ ଗୋଟି ସ୍ଥାନରେ ସ୍ଥାପନା ନିମନ୍ତେ ଭାରତ ସରକାରଙ୍କର ନଗର ଉନ୍ନୟନ ମନ୍ତ୍ରଣାଳୟ ଏବଂ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରଣାଳୟର ସହମତି ପାଇବା ପରେ ଚୂଡ଼ାନ୍ତ କରାଯିବ ।

# ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ : ଗ୍ରାମାଞ୍ଚଳ ଦାରିଦ୍ର୍ୟ ଦୂରୀକରଣରେ ଏହାର ଭୂମିକା

ଶ୍ରୀ ନୀଳାଞ୍ଜନ ସାନ୍ୟାଲ୍

ପ୍ରାକ୍ ସ୍ୱାଧୀନତା କାଳରୁ ଦାରିଦ୍ର୍ୟ ଦୂରୀକରଣ ଆମ ଯୋଜନାର ମୁଖ୍ୟ ଆଭିମୁଖ୍ୟ ହୋଇ ଆସିଅଛି । ଯୋଜନାବଦ୍ଧ ଉଦ୍ୟମ ସତ୍ତ୍ୱେ ଏହି ସମସ୍ୟା ଏବେ ବି ଉତ୍କଟ ରୂପେ ଆମ ପ୍ରଗତି ଓ ବିକାଶ ପଥରେ ମୁଖ୍ୟ ଅନ୍ତରାୟ ଅଟେ । ବିଶେଷ କରି ଗ୍ରାମାଞ୍ଚଳରେ ଏହି ସମସ୍ୟା ଅତି ମାତ୍ରାରେ ଗମ୍ଭୀର ଅଟେ, ଯେଉଁଠାରେ କି ଦେଶର ଜନସଂଖ୍ୟାର ଶତକଡ଼ା ୭୪ ଭାଗ ଲୋକ ବାସ କରନ୍ତି । ଜାତୀୟ ନମୁନା ସର୍ଭେ ତଥ୍ୟ ଉପରେ ଆଧାରିତ ଯୋଜନା ଆୟୋଗଙ୍କ ନିମ୍ନୋକ୍ତ ଅଟକଳରୁ ଏହା ସ୍ପଷ୍ଟ ପ୍ରତୀୟମାନ ହୁଏ । ୧୯୭୭-୭୮ ମସିହାରେ ସର୍ବଭାରତୀୟ ସ୍ତରରେ ସହରାଞ୍ଚଳରେ ୩୮·୨ ଶତାଂଶ ଓ ଗ୍ରାମାଞ୍ଚଳରେ ୫୧·୨ ଶତାଂଶ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ବାସ କରୁଥିଲେ । ୧୯୮୭-୮୮ ମସିହା ପାଇଁ ଏହି ଅଟକଳ ଯଥାକ୍ରମେ ୨୦·୧ ଓ ୩୩·୪ ଅଟେ । ଓଡ଼ିଶା ପାଇଁ ଏହି ପରିସଂଖ୍ୟାନ ୧୯୭୭-୭୮ରେ ଯଥାକ୍ରମେ ୪୨·୮ ଓ ୬୭·୯ ଏବଂ ୧୯୮୭-୮୮ ପାଇଁ ୨୪·୧ ଓ ୪୮·୩ ଅଟେ ଓ ଏହା ଅନ୍ୟ ସମସ୍ତ ରାଜ୍ୟ ତୁଳନାରେ ସର୍ବାଧିକ ଅଟେ ।

ଗ୍ରାମାଞ୍ଚଳରେ ଦାରିଦ୍ର୍ୟ ଦୂରୀକରଣର ମୁଖ୍ୟ ଉଦ୍ଦେଶ୍ୟ ନେଇ ୧୯୭୮-୭୯ ମସିହାଠାରୁ ଆଇ: ଆର୍: ଡ଼ି: ପି: ଓଡ଼ିଶାରେ ୧୧୨ଟି ବ୍ଲକ୍ ସମେତ ଦେଶର କେତୋଟି ନିର୍ଦ୍ଦିଷ୍ଟ ବ୍ଲକ୍‌ରେ କାର୍ଯ୍ୟକାରୀ କରାଯାଇଥିଲା । ୧୯୮୦ ମସିହା ଅକ୍ଟୋବର ୨ ତାରିଖଠାରୁ ଏହା ଦେଶର ସମସ୍ତ ବ୍ଲକ୍‌କୁ ସମ୍ପ୍ରସାରିତ କରାଗଲା । ୧୯୮୦-୮୧ ମସିହାଠାରୁ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ସମାନ ଆର୍ଥିକ ସହାୟତାରେ ଏହି କାର୍ଯ୍ୟକ୍ରମ ଓଡ଼ିଶାର ସମସ୍ତ ବ୍ଲକ୍‌ରେ କାର୍ଯ୍ୟକାରି କରାଯାଉଅଛି । ଗ୍ରାମାଞ୍ଚଳର ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରଗୁଡ଼ିକୁ ବ୍ୟାଙ୍କ୍ ଋଣ ଓ ସରକାରୀ ରିହାତି ମାଧ୍ୟମରେ ଅର୍ଥ ଉପାର୍ଜନକ୍ଷମ ଉପକରଣ, କାର୍ଯ୍ୟକାରୀ ମୂଳଧନ ଓ ଆବଶ୍ୟକୀୟ ଜ୍ଞାନ କୌଶଳ ଯୋଗାଇ ଦିଆଯାଇଥାଏ, ଯଦ୍ୱାରା ସେମାନେ ନିୟମିତ ଆୟକରି ଦାରିଦ୍ର୍ୟ ସୀମାରେଖା ଉପରକୁ ଉଠିବାକୁ ସକ୍ଷମ ହେବେ । ଚିହ୍ନିତ ପରିବାରଗୁଡ଼ିକୁ ପ୍ରାଥମିକ, ସହାୟକ ଓ ସହ ସହାୟକ ବିଭାଗରେ ଯୋଗାଇ ଦିଆଯାଉଥିବା ଅର୍ଥନୈତିକ ଧନ୍ଦାମାନଙ୍କ ମଧ୍ୟରେ କୃଷି, ଜଳ ସେଚନ, ଫଳ, ପନିପରିବା ଚାଷ, ଭୂ-ଉନ୍ନୟନ, ପ୍ରାଣୀ ପାଳନ, ଗ୍ରାମ୍ୟ ଶିଳ୍ପ ଓ ସେବା ତଥା କ୍ଷୁଦ୍ର ବ୍ୟବସାୟ ଆଦି ମୁଖ୍ୟ ଅଟେ ।

କ୍ଷୁଦ୍ର ଚାଷୀମାନଙ୍କୁ ଶତକଡ଼ା ୨୫ ଭାଗ, ନାମମାତ୍ର ଚାଷୀ, କୃଷି ଶ୍ରମିକ, ଅଣ କୃଷି ଶ୍ରମିକ ଓ ଗ୍ରାମ୍ୟ କାରିଗରମାନଙ୍କୁ ଶତକଡ଼ା ୩୩/୧/୩ ଭାଗ ରିହାତି ଦେବାର ବ୍ୟବସ୍ଥା ଅଛି । ପରିବାର ପିଛା ଉକ୍ତ ରିହାତିର ସର୍ବୋଚ୍ଚ ସୀମା ଅଣ ମରୁଡ଼ି ପ୍ରବଣ ଅଞ୍ଚଳ ପାଇଁ ୪,୦୦୦ ଟଙ୍କା ଏବଂ ମରୁଡ଼ି ପ୍ରବଣ ଅଞ୍ଚଳ ପାଇଁ ୫,୦୦୦ ଟଙ୍କା ଅଟେ । ତଫସିଲଭୁକ୍ତ ଜାତି ଓ ଉପଜାତି ଏବଂ ଶାରୀରିକ ଅକ୍ଷମ ହିତାଧିକାରୀମାନଙ୍କ ପାଇଁ ଶତକଡ଼ା ୫୦ ଭାଗ ରିହାତି ଓ ପରିବାର ପିଛା ସର୍ବୋଚ୍ଚ ୬,୦୦୦ ଟଙ୍କା ପର୍ଯ୍ୟନ୍ତ ଦିଆଯାଇଥାଏ । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ବ୍ୟକ୍ତିଗତ ଜଳସେଚନ ଯୋଜନା କାର୍ଯ୍ୟକାରୀ କରାଗଲେ ଉପରଲିଖିତ ମତେ ରିହାତି ବ୍ୟବସ୍ଥା ଅଛି, ମାତ୍ର ରିହାତି ଅର୍ଥର ସର୍ବୋଚ୍ଚ ସୀମା ଲାଗୁ ହୁଏ ନାହିଁ ।

ଏହି କାର୍ଯ୍ୟକ୍ରମରେ ତଫସିଲଭୁକ୍ତ ଜାତି ଓ ଉପଜାତି ପରିବାର ପାଇଁ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ସାହାଯ୍ୟ ପାଇଁ ବଛାଯାଇଥିବା ପରିବାରଗୁଡ଼ିକ ମଧ୍ୟରୁ ବ୍ଲକ୍ ସ୍ତରରେ ସର୍ବନିମ୍ନ ଶତକଡ଼ା ୫୦ ଭାଗ ତଫସିଲଭୁକ୍ତ ଜାତି ଓ ଉପଜାତିମାନଙ୍କ ମଧ୍ୟରୁ ହେବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଯେଉଁ ବ୍ଲକ୍‌ରେ ସେମାନଙ୍କ ସଂଖ୍ୟା ୫୦ ପ୍ରତିଶତରୁ ଅଧିକ ସେପରି ବ୍ଲକ୍‌ରେ ସମାନୁପାତିକ ହାରରେ ସେମାନଙ୍କୁ ସାହାଯ୍ୟ ପାଇଁ ବଛା ଯିବାର ବ୍ୟବସ୍ଥା ଅଛି । ସେହିପରି ହିତାଧିକାରୀମାନଙ୍କ ମଧ୍ୟରୁ ସର୍ବନିମ୍ନ ୫୦ ପ୍ରତିଶତ ମହିଳା ଓ ୨୫ ପ୍ରତିଶତ ସବୁଜ ପତ୍ରିକାଧାରୀ ହେବାର ନିର୍ଦ୍ଦିଷ୍ଟ ହୋଇଛି ।

ଗତ ୪ ବର୍ଷ ଅର୍ଥାତ୍ ୧୯୯୦-୯୧ଠାରୁ ୧୯୯୩-୯୪ ମଧ୍ୟରେ ୪,୭୯,୦୬୩ ପରିବାରଙ୍କୁ ଏହି କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଥିଲା । ଏହି ସମୟ ମଧ୍ୟରେ ଡିସେମ୍ବର ୧୯୯୩ ସୁଦ୍ଧା ୪,୦୮,୮୯୩ ପରିବାରଙ୍କୁ ଉପକୃତ କରାଯାଇ ପାରିଛି । ଏହା ଧାର୍ଯ୍ୟ ଲକ୍ଷ୍ୟର ୮୫ ପ୍ରତିଶତ ଅଟେ । ଉପକୃତ ହୋଇଥିବା ହିତାଧିକାରୀମାନଙ୍କ ମଧ୍ୟରୁ ୨୬ ପ୍ରତିଶତ ତଫସିଲଭୁକ୍ତ ଜାତି ଓ ୩୧ ପ୍ରତିଶତ ତଫସିଲଭୁକ୍ତ ଉପଜାତି ଓ ୩୮ ପ୍ରତିଶତ ମହିଳା ଅଟନ୍ତି । ଆମ ସାମାଜିକ ବ୍ୟବସ୍ଥାନୁସାରେ ମହିଳାମାନଙ୍କ ନାମରେ ଜମିପଟ୍ଟା ନଥିବା ଯୋଗୁଁ ଭୂ-ସମ୍ବନ୍ଧୀୟ ପ୍ରକଳ୍ପଗୁଡ଼ିକ ପାଇଁ ବ୍ୟାଙ୍କ୍ ଋଣ ପାଇବାର ପ୍ରତିବନ୍ଧକ ସୃଷ୍ଟି କରିଥାଏ । ପୁନଶ୍ଚ ଗ୍ରାମାଞ୍ଚଳରେ ମହିଳାମାନେ ଅର୍ଥନୈତିକ ଧନ୍ଦା କରିବା ପାଇଁ ଉତ୍ସାହିତ ହୋଇ ନଥାନ୍ତି । ଏହା ମହିଳାମାନଙ୍କ ପାଇଁ ଧାର୍ଯ୍ୟ ଲକ୍ଷ୍ୟ ହାସଲର ମୁଖ୍ୟ ଅନ୍ତରାୟ

ହୋଇଥାଏ । କିନ୍ତୁ ବିଗତ ବର୍ଷମାନଙ୍କରେ ନିଷ୍ପାପର ଉଦ୍ୟମ ଯୋଗୁଁ ମହିଳା ହିତାଧିକାରୀଙ୍କ ସଂଖ୍ୟା କ୍ରମାଗତ ବୃଦ୍ଧି ଘଟିଛି ।

ଏହି ୪ ବର୍ଷ ସମୟ ମଧ୍ୟରେ ଡିସେମ୍ବର ୧୯୯୩ ସୁଦ୍ଧା ମୋଟ ୧୫,୧୨୯·୮୧ ଲକ୍ଷ ଟଙ୍କା ଏହି ଯୋଜନା ପାଇଁ ଉପଲବ୍ଧ ଥିଲାବେଳେ ୧୩,୧୯୪·୦୪ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇ ପାରିଛି । ଏହି ଖର୍ଚ୍ଚ ମୋଟ ଉପଲବ୍ଧ ଅର୍ଥର ୮୬ ପ୍ରତିଶତ ଅଟେ । ଏହି ସମୟ ମଧ୍ୟରେ ହିତାଧିକାରୀମାନଙ୍କୁ ଦିଆଯାଇଥିବା ସରକାରୀ ରିହାତିର ପରିମାଣ ୧୦,୮୬୫·୪୦ ଲକ୍ଷ ଟଙ୍କା ଓ ବ୍ୟାଙ୍କ୍ ଋଣର ପରିମାଣ ୧୨,୬୯୫·୬୭ ଲକ୍ଷ ଟଙ୍କା ଅଟେ ।

ଉକ୍ତ ସମୟ ମଧ୍ୟରେ ଅଧିକ ଉପାର୍ଜନକ୍ଷମ ଧନ୍ଦା ଯୋଗାଇଦେବାର ଉଦ୍ଦେଶ୍ୟ ରଖି ପରିବାର ପିଛା ବିନିଯୋଗ ରାଶିକୁ ବର୍ଦ୍ଧିତ କରିବାର ଲକ୍ଷ୍ୟ ରଖାଯାଇଥିଲା । ୧୯୯୦-୯୧ ମସିହାରେ ପରିବାର ପିଛା ହାରାହାରି ବିନିଯୋଗ ରାଶି ୪,୨୩୨ ଟଙ୍କାରୁ ବୃଦ୍ଧିହୋଇ ୧୯୯୧-୯୨ରେ ୬,୩୫୪ ଟଙ୍କା, ୧୯୯୨-୯୩ରେ ୬,୬୫୦ ଟଙ୍କା ଓ ୧୯୯୩-୯୪ରେ (ଡିସେମ୍ବର ୧୯୯୩ ସୁଦ୍ଧା) ଏହା ୭,୦୯୬ ଟଙ୍କା ହୋଇ ପାରିଅଛି ।

ଏହି କାର୍ଯ୍ୟକ୍ରମର ସଫଳ ରୂପାୟନ କ୍ଷେତ୍ରରେ ସହାୟକ ବିଭାଗରେ ଆଇ଼ ଆର଼ ଡ଼ି଼ ହିତାଧିକାରୀମାନଙ୍କ ଆବଶ୍ୟକୀୟ ପ୍ରଯୁକ୍ତି ଜ୍ଞାନ କୌଶଳର ଅଭାବ ଓ ସେମାନଙ୍କ ଉତ୍ପାଦିତ ସାମଗ୍ରୀର ବିକ୍ରୟ ନିମନ୍ତେ ଉପଯୁକ୍ତ ବଜାର ସୁବିଧାର ଅଭାବ ମୁଖ୍ୟ ଅନ୍ତରାୟ ଅଟେ । ଏହି ସବୁ ପ୍ରତିବନ୍ଧକକୁ ଦୂର କରିବା ପାଇଁ କେନ୍ଦ୍ର ସରକାର ଓ କାପାର୍ଟ (CAPART) ସଂସ୍ଥା ସହିତ ବିଶଦ ବିଚାର ବିମର୍ଶ କରି ରାଜ୍ୟ ସରକାର ଓଡ଼ିଶା ଗ୍ରାମ୍ୟ ଉନ୍ନୟନ ବାଣିଜ୍ୟ ସମିତି (ORMAS) ଭଳି ଏକ ସ୍ୱୟଂଶାସିତ ସଂସ୍ଥା ସ୍ଥାପନ କରିଛନ୍ତି । ଉତ୍ପାଦନ ବୃଦ୍ଧି ପାଇଁ ହିତାଧିକାରୀମାନଙ୍କୁ ଆବଶ୍ୟକୀୟ ପ୍ରଯୁକ୍ତି ବିଦ୍ୟା, ପ୍ରଶିକ୍ଷଣ ଯୋଗାଇ ଦେବା ଓ ସେମାନଙ୍କ ଦ୍ୱାରା ଉତ୍ପାଦିତ ଦ୍ରବ୍ୟରୁ ଶତକଡ଼ା ୫୦ ଭାଗ ଦ୍ରବ୍ୟ ପାଇଁ ବଜାର ସୁବିଧା ଯୋଗାଇ ଦେବା, ଏହା ମୁଖ୍ୟ ଉଦ୍ଦେଶ୍ୟ ଅଟେ ।

ଏହି ଲକ୍ଷ୍ୟ ହାସଲ କରିବାପାଇଁ ଓରମାସ୍ ଜିଲ୍ଲାସ୍ତରେ ଜିଲ୍ଲାଯୋଗାଣ ଓ ବାଣିଜ୍ୟ ସମିତି (D. S. M. S.) ଗଠନ ପଞ୍ଜିକରଣ କରାଯାଇଛି । ପ୍ରାଥମିକ ପର୍ଯ୍ୟାୟରେ ୧୯ଟି ଅବିଭକ୍ତ ଜିଲ୍ଲାମାନଙ୍କରେ ଥିବା ବହୁମୁଖୀ ଗୋଷ୍ଠୀ କେନ୍ଦ୍ର ସହାୟତାରେ ଡ଼ି଼ ଏସ଼ ଏମ଼ ଏସ଼ ପାଇଁ ସଂଗୃହିତ ଦ୍ରବ୍ୟର ପରିଚିତି କରାଯିବ । ୧୯୯୬ ମସିହା ସୁଦ୍ଧା ଅବଶିଷ୍ଟ ୩ଟି ଅତିରିକ୍ତ ଜିଲ୍ଲାକୁ DWCRA କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ କରାଯାଇ ପ୍ରତ୍ୟେକ ବ୍ଲକ୍‌ରେ ଜବାହାର ରୋଜଗାର ଯୋଜନାରେ ବହୁମୁଖୀ ଗୋଷ୍ଠୀ କେନ୍ଦ୍ର ସ୍ଥାପନ କରାଯିବାର ପରିକଳ୍ପନା କରାହୋଇଛି । ଏତଦ୍ ବ୍ୟତୀତ ପ୍ରତ୍ୟେକ ବ୍ଲକ୍‌ରେ ୧୦ଟି କରି ଦ୍ରବ୍ୟ ବିକ୍ରୟ ନିର୍ଗମନ ଶାଖା ଗଠନ କରାଯିବାର ଯୋଜନା କରାହୋଇଛି । ଏହି ଶାଖାଗୁଡ଼ିକର ପରିଚାଳନା ଭାର ୧୦ ଜଣିଆ ଗ୍ରାମ୍ୟ ଯୁବକଙ୍କୁ ନେଇ ଗଠିତ ସମିତି ଉପରେ ନ୍ୟସ୍ତ ରହିବ । ଏହି ଯୁବକମାନେ ଆଇ଼ ଆର଼ ଡ଼ି଼ କାର୍ଯ୍ୟକ୍ରମ ପାଇଁ ଯୋଗ୍ୟ ବିବେଚିତ ହେବା ବିଧେୟ । ଏମାନଙ୍କୁ ଆବଶ୍ୟକୀୟ ପ୍ରଶିକ୍ଷଣ ଡ଼ି଼ ଏସ଼ ଏମ଼ ଦ୍ୱାରା ଦିଆଯିବ ।

ଉପରୋକ୍ତ ବିଶ୍ଳେଷଣରୁ ଜଣାଯାଏ ଯେ ସଂଖ୍ୟା ଅନୁସାରେ ଆଇ଼ ଆର଼ ଡ଼ି଼ ପି଼ର ଗତ ୫ ବର୍ଷ ମଧ୍ୟରେ ସନ୍ତୋଷଜନକ ଅଗ୍ରଗତି ହୋଇଅଛି । ଭାରତ ସରକାରଙ୍କ ଦ୍ୱାରା ୧୯୯୧ ମସିହାରେ କରାଯାଇଥିବା ସମବର୍ତ୍ତୀ ମୂଲ୍ୟାୟନ ତଥ୍ୟ ଅନୁସାରେ ଓଡ଼ିଶାରେ ଶତକଡ଼ା ୮ ଭାଗ ହିତାଧିକାରୀ ଦାରିଦ୍ର୍ୟ ସୀମାରେଖା ଉପରକୁ ଯିବାପାଇଁ ସକ୍ଷମ ହୋଇଛନ୍ତି । ଏଥିରୁ ପ୍ରତୀୟମାନ ହୁଏ ଯେ କାର୍ଯ୍ୟକ୍ରମର ଗୁଣାତ୍ମକମାନର ଅଭିବୃଦ୍ଧି ବିଶେଷ ଭାବରେ ଘଟିନାହିଁ । ଏହାର କାରଣ ହିତା ଧିକାରୀମାନର ଉଚ୍ଚଟ ଦାରିଦ୍ର୍ୟ ଉପଯୁକ୍ତ ପ୍ରଶିକ୍ଷଣର ଅଭାବ ଏବଂ ସର୍ବୋଚ୍ଚ ଭାବରେ ଉତ୍ପାଦିତ ଦ୍ରବ୍ୟର ଉଚ୍ଚ ବିକ୍ରୟ ସୁବିଧାର ଅଭାବ ଅଟେ । ଏ ଅଭାବଗୁଡ଼ିକର ଦୂରୀକରଣ ପାଇଁ ଓରମାସ୍‌ର ସୃଷ୍ଟି କରାଯାଇଅଛି । ନିକଟ ଭବିଷ୍ୟତରେ ଏହାର ଉପକାରିତା ଉପଲବ୍ଧ ହେବ ବୋଲି ଆଶା କରାଯାଏ ।

---

ନିର୍ଦ୍ଦେଶକ, ସ୍ୱତନ୍ତ୍ର ପ୍ରକଳ୍ପ-ତଥା-ଅତିରିକ୍ତ ଶାସନ ସଚିବ,
ପଞ୍ଚାୟତ ରାଜ ବିଭାଗ, ଓଡ଼ିଶା ।




ମାନ୍ୟବର ରାଜ୍ୟପାଳ ଶ୍ରୀ ବି଼ ସତ୍ୟନାରାୟଣ ରେଡ୍ଡୀ "ଆବିଷ୍କାର" ସ୍ୱେଚ୍ଛାସେବୀ ଅନୁଷ୍ଠାନର ଶାରୀରିକ ବିକଳାଙ୍ଗ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ଖୋର୍ଦ୍ଧା ବରୁଣେଇ ପାହାଡ଼ ଆରୋହଣ ଅଭିଯାନ ଉଦ୍‌ଘାଟନ କରୁଛନ୍ତି ।

# ସମସ୍ତଙ୍କ ପାଇଁ ଶିକ୍ଷା

ଶ୍ରୀ ରବୀନ୍ଦ୍ର କୁମାର ଜେନା

୧୯୯୦ ମସିହାରେ ୟୁନେସ୍କୋ ଓ ୟୁନିସେଫ ଭଳି ଆନ୍ତର୍ଜାତିକ ସଂସ୍ଥା ଜରିଆରେ ଏକ ଶିକ୍ଷା ସମ୍ମିଳନୀର ଆୟୋଜନ କରାଯାଇଥିଲା। ଏଥିରେ ମୁଖ୍ୟ ବିଷୟବସ୍ତୁ ଥିଲା "ସମସ୍ତଙ୍କ ନିମିତ୍ତ ଶିକ୍ଷା" ଏକାନ୍ତ ଆବଶ୍ୟକ। ଏହି ସମ୍ମିଳନୀରେ ୧୫୭ ଗୋଟି ଦେଶର ପ୍ରତିନିଧି ଯୋଗ ଦେଇଥିଲେ। ଆଲୋଚନା ଶେଷରେ ଏକ ସିଦ୍ଧାନ୍ତରେ ସମସ୍ତେ ଉପନୀତ ହୋଇଥିଲେ ଯେ ଆଗାମୀ ୨୦୦୦ ମସିହା ସୁଦ୍ଧା ସବୁ ଲୋକଙ୍କୁ ଶିକ୍ଷା ପାଇବାର ସୁବିଧା ଯୋଗାଇ ଦିଆଯିବ।

ଏହି ସମ୍ମିଳନୀ ପରେ ବିଭିନ୍ନ ଦେଶ ତରଫରୁ ସମସ୍ତଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା କରା ଯାଉଛି। ତେବେ ଆମ ଦେଶରେ ମଧ୍ୟ ଅନୁରୂପ ବ୍ୟବସ୍ଥା କରାଯାଉଛି। ଏଦିଗରେ ଆମକୁ ୟୁନେସ୍କୋ ଓ ୟୁନିସେଫ ଭଳି ସଂସ୍ଥା ସହଯୋଗ ଓ ପ୍ରେରଣା ଯୋଗାଉଛନ୍ତି। "ସମସ୍ତଙ୍କ ପାଇଁ ଶିକ୍ଷା" ସବୁରିଙ୍କ ମନରେ ଏକ ବିସ୍ମୟ ଆଣିଛି। ସମ୍ବିଧାନ ଅନୁସାରେ ଆମେ ସମସ୍ତ ନାଗରିକଙ୍କୁ ଶିକ୍ଷା ଦେବାର ବ୍ୟବସ୍ଥା କରିବା କଥା ଓ ସେଥି ନିମିତ୍ତ ସାର୍ବଜନୀନ ପ୍ରାଥମିକ ଶିକ୍ଷା ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି। ତେବେ ଏ ପ୍ରଗତି କଥନ ?

ତେବେ ସମସ୍ତଙ୍କ ପାଇଁ ଶିକ୍ଷା କାର୍ଯ୍ୟକ୍ରମ ମଧ୍ୟରେ ମୁଖ୍ୟତଃ କେତେ ଗୋଟି ବିଷୟ ପ୍ରତି ଧ୍ୟାନ ଦେବାକୁ ପଡ଼ିବ ଯାହାକି ଏକାନ୍ତ ଜରୁରୀ ମନେହୁଏ। ସେଥି ମଧ୍ୟରୁ ପ୍ରଥମତଃ ଅଭାବଗ୍ରସ୍ତ ପରିବାରର ଲୋକ ନିଜର ପିଲାମାନଙ୍କୁ ଶିକ୍ଷା ଦେଇ ପାରୁନାହାନ୍ତି। ସେଭଳି ପରିବାରର ଶିଶୁମାନଙ୍କୁ ଅତି ଛୋଟ ଅବସ୍ଥାରୁ ଯତ୍ନନେଇ ଶିକ୍ଷା ପ୍ରତି ଆକୃଷ୍ଟ କରିବାକୁ ପଡ଼ିବ। ତାହେଲେ ସେମାନେ ଯଥା ସମୟରେ ସ୍କୁଲ୍‌ରେ ପାଠ ପଢ଼ିପାରିବେ।

ସାର୍ବଜନୀନ ପ୍ରାଥମିକ ଶିକ୍ଷା ଜରିଆରେ ସମସ୍ତଙ୍କୁ ଶିକ୍ଷା ଦେବାର ବ୍ୟବସ୍ଥା ଥିଲେ ମଧ୍ୟ ତାହା ଠିକ୍‌ଭାବେ କାର୍ଯ୍ୟ କାରୀ ହେଉନାହିଁ। ସମସ୍ତ ଶିଶୁମାନେ ୧୪ ବର୍ଷ ବୟସ ପର୍ଯ୍ୟନ୍ତ ପ୍ରାଥମିକ ଶିକ୍ଷା ପାଇବେ ବୋଲି ସ୍ଥିର ହୋଇଥିଲେ ହେଁ ଏହା ସଫଳ ହୋଇ ପାରିନାହିଁ। ବହୁ ଶିଶୁ ବିଭିନ୍ନ କାରଣରୁ ବିଦ୍ୟାଳୟକୁ ଯାଇ ନାହାନ୍ତି। ଏଣୁ ଏଥିପ୍ରତି ଗୁରୁତ୍ୱ ଦିଆଯିବା ଏକାନ୍ତ ଜରୁରୀ।

ଯେଉଁମାନେ କୌଣସି କାରଣରୁ ପାଠନପଢ଼ି ରହିଗଲେ ସେମାନେ ବୟସ୍କ ହେଲେ ସେଭଳି ବୟସ୍କ ବ୍ୟକ୍ତିଙ୍କୁ ପ୍ରୌଢ଼ଶିକ୍ଷା ଜରିଆରେ ଅଣ ଆନୁଷ୍ଠାନିକ ଭାବେ ଶିକ୍ଷା ଦେବାର ବ୍ୟବସ୍ଥା କରାଯାଉଛି। ଫଳରେ ୧୫ ରୁ ୩୫ ବର୍ଷ ବୟସର ସମସ୍ତ ନିରକ୍ଷର ବୟସ୍କ ବ୍ୟକ୍ତି ପାଠପଢ଼ି ସାକ୍ଷର ହେବେ। ଏହି କାର୍ଯ୍ୟକ୍ରମର ସୁଫଳ ଆମେ ଦୀର୍ଘ ୪୭ ବର୍ଷ ମଧ୍ୟରେ ପାଇ ପାରିଲୁ ନାହିଁ। ଏହି ବୟସର ବହୁ ଲୋକ ଏବେ ମଧ୍ୟ ନିରକ୍ଷର ରହିଛନ୍ତି ଓ ସେମାନଙ୍କ ଭବିଷ୍ୟତ ବଂଶଧରମାନଙ୍କ ବିଷୟରେ ଚିନ୍ତିତ ହେଲେ ଶିକ୍ଷାପ୍ରାପ୍ତି ନିମିତ୍ତ ଚିନ୍ତା କରୁ ନାହାନ୍ତି।

ଆମ ଦେଶର ମହିଳା ନିରକ୍ଷରଙ୍କ ସଂଖ୍ୟା ଶତକଡା ୬୦.୩୮ ଦଶମିକ ଥିବାବେଳେ ଆଦିବାସୀ ମହିଳାଙ୍କର ନିରକ୍ଷର ସଂଖ୍ୟା ଶତକଡା ୯୨ ଭାଗ ରହିଛି। ଏଣୁ ଅନଗ୍ରସର ଶ୍ରେଣୀର ଲୋକଙ୍କୁ ଶିକ୍ଷା ଦେବା ସହିତ ମହିଳାମାନଙ୍କ ସାକ୍ଷରତା ହାର ବୃଦ୍ଧି କରିବା ନିମିତ୍ତ "ସମସ୍ତଙ୍କ ପାଇଁ ଶିକ୍ଷା"ର ଆବଶ୍ୟକତା ଏକାନ୍ତ ଜରୁରୀ। ମହିଳା ନିରକ୍ଷର ସଂଖ୍ୟା ଅଧିକ ଥିବାରୁ ଜନସଂଖ୍ୟା ବୃଦ୍ଧି ରୋକିବା ଦିଗରେ ଆମର ସମସ୍ତ ଉଦ୍ୟମ ପ୍ରାୟତଃ ବ୍ୟର୍ଥ ହେଉଛି ଅଥବା ଆମେ ଆଶାନୁରୂପ ଫଳ ପାଇପାରୁ ନାହୁଁ। ଯେଉଁଠି ମହିଳାମାନେ ଶିକ୍ଷିତ, ସେମାନେ ଜନସଂଖ୍ୟା ବୃଦ୍ଧି ରୋକିବା ଦିଗରେ ସଫଳ ହୋଇ ପାରିଛନ୍ତି। ଏଣୁ ସମସ୍ତଙ୍କୁ ଶିକ୍ଷା ଦିଆଗଲେ ଦେଶର ଓ ସମାଜର ମଙ୍ଗଳ ହେବ ବୋଲି ଚିନ୍ତାଶୀଳ ବ୍ୟକ୍ତିମାନେ ମତ ପ୍ରକାଶ କରିଛନ୍ତି।

ଆମେ ୭୩ ତମ ଓ ୭୪ ତମ ସମ୍ବିଧାନ ସଂଶୋଧନ କରିବା ସମୟରେ ଶିକ୍ଷା ପରିଚାଳନା ଦାୟିତ୍ୱ ପଞ୍ଚାୟତ ରାଜ ଓ ନଗରାଞ୍ଚଳକୁ ଦେଇଥିଲୁ। ଉନ୍ନତ ଧରଣର ମୌଳିକ ଶିକ୍ଷା ପ୍ରବର୍ତ୍ତନ କରିବା, ବିଦ୍ୟାଳୟକୁ ଆସୁନଥିବା ପିଲାମାନଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା କରିବାର ପରିକଳ୍ପନା କରାଯାଇଥିଲା। ମୌଳିକ ଶିକ୍ଷା ପାଇଲେ ପିଲାମାନେ କର୍ମଠ ଓ ଉତ୍ତମ ବ୍ୟବହାର ଶିକ୍ଷା କରିପାରିବେ ବୋଲି ଆଶା କରାଯାଏ। ପ୍ରୌଢ଼ଶିକ୍ଷା ଜରିଆରେ ଲେଖିବା, ପାଠପଢ଼ିବା ଓ ଗଣିତ ଶିକ୍ଷା ସହିତ ଆନୁଷ୍ଠାନିକ ଓ ଅଣଆନୁଷ୍ଠାନିକ ଶିକ୍ଷାକୁ ବଳୁ ରଖିଲେ ନବ ସାକ୍ଷରମାନେ ପୁନର୍ବାର ନିରକ୍ଷର ହେବାର ସମ୍ଭାବନା ନଥାଏ।

ଏଣୁ "ସମସ୍ତଙ୍କ ପାଇଁ ଶିକ୍ଷା" ସମ୍ପର୍କୀୟ ଯୋଜନା ପ୍ରସ୍ତୁତ କରିବାକୁ ଯିବାବେଳେ ଉପରୋକ୍ତ ବିଷୟ ପ୍ରତି ଧ୍ୟାନ ଦେବାକୁ ହେବ। ସେଥି ସହିତ ଏହି ଯୋଜନାକୁ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ କରି ଏହାର ତଦାରଖ ଠିକ୍‌ଭାବେ କରାଗଲେ ଆମେ ଏହାର ସୁଫଳ ପାଇ ପାରିବା। ଆମ ରାଜ୍ୟରେ ନିକଟ ଅତୀତରେ ଏ

ସମ୍ପର୍କୀୟ ବହୁ ଆଲୋଚନା କରାଯାଇଛି । ବିଶିଷ୍ଟ ଶିକ୍ଷାବିତ୍, ଶିକ୍ଷକ, ଶିକ୍ଷକ ସଂଘ, କର୍ମଜୀବୀ, ଅବସରପ୍ରାପ୍ତ ଶିକ୍ଷାବିତ୍, ପ୍ରଶାସକ, ରାଜନୀତିକ ନେତୃବୃନ୍ଦ ଏ ସବୁ ଆଲୋଚନାରେ ଅଂଶଗ୍ରହଣ କରି "ସମସ୍ତଙ୍କ ପାଇଁ ଶିକ୍ଷା"କୁ ସଫଳ କରିବାକୁ ହେଲେ ଏହାର ନିମ୍ନୋକ୍ତ ଦିଗ ପ୍ରତି ଧ୍ୟାନ ଦେବାକୁ ପରାମର୍ଶ ଦେଇଛନ୍ତି । ତନ୍ମଧ୍ୟରୁ ମୁଖ୍ୟତଃ –

(କ) ପ୍ରାକ୍ ଶୈଶବ ଯତ୍ନ ଓ ଶିକ୍ଷା ।

(ଖ) ସାର୍ବଜନୀନ ପ୍ରାଥମିକ ଶିକ୍ଷା ।

(ଗ) ଶିକ୍ଷାର ବିଷୟବସ୍ତୁ, ପ୍ରଣାଳୀ ଓ ଗୁଣାତ୍ମକ ଅଭିବୃଦ୍ଧି ଘଟାଇବା ।

(ଘ) ବୟସ୍କଙ୍କ ପାଇଁ ପ୍ରୌଢ଼ଶିକ୍ଷା ସହିତ ନିରନ୍ତର ଶିକ୍ଷା ।

(ଙ) ପରିବେଶ ସୃଷ୍ଟି କରି ଜନସାଧାରଣଙ୍କୁ ଶିକ୍ଷା ପ୍ରତି ଆକୃଷ୍ଟ କରିବା ।

(ଚ) ଗୋଷ୍ଠୀ ସହଯୋଗ ଲୋଡ଼ିବା ।

(ଛ) ଶିକ୍ଷିତମାନଙ୍କୁ ସ୍ୱତନ୍ତ୍ର ତାଲିମ ଦେବା ।

(ଜ) ସମସ୍ତଙ୍କ ପାଇଁ ଶିକ୍ଷା ସମ୍ପର୍କୀୟ ସ୍ୱତନ୍ତ୍ର ବ୍ୟବସ୍ଥା ।

(ଝ) ଶିକ୍ଷା ଯୋଜନା କରିବା ଓ ପରିଚାଳନା କରିବା ।

(ଞ) ସମ୍ବଳ ସଂଗ୍ରହ କରିବା (ଅଭ୍ୟନ୍ତରୀଣ ଓ ବାହ୍ୟିକ) ।

ଆମ ରାଜ୍ୟରେ ୨,୦୦୦ ମସିହା ସୁଦ୍ଧା ସମସ୍ତଙ୍କ ପାଇଁ ଶିକ୍ଷା ବ୍ୟବସ୍ଥା କରାଯିବାର ଆୟୋଜନ ଚାଲିଛି । ଇତି ମଧ୍ୟରେ ଏ ସମ୍ପର୍କୀୟ ଆଲୋଚନା ବହୁବାର ବିଭିନ୍ନ ସ୍ତରରେ ହୋଇଯାଇଛି । ବହୁ ବିଶିଷ୍ଟ ଶିକ୍ଷାବିତ୍, ସରକାରୀ ପ୍ରଶାସକ, ବେସରକାରୀ ଅନୁଷ୍ଠାନ କର୍ମକର୍ତ୍ତା, ପ୍ରବୀଣ ଶିକ୍ଷକ, ଶିକ୍ଷକ ମହାସଂଘ କର୍ମକର୍ତ୍ତାଗଣ ଯୋଗଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଛନ୍ତି ଓ ସେମାନଙ୍କର ସୁଚିନ୍ତିତ ମତାମତ ମଧ୍ୟ ଦେଇଛନ୍ତି । ବହୁ ସମ୍ବାଦପତ୍ର, ସମ୍ପାଦକଗଣ ଏ ସମ୍ପର୍କୀୟ ବିସ୍ତୃତ ଆଲୋଚନା ସେମାନଙ୍କର ସମ୍ବାଦପତ୍ରରେ ପ୍ରକାଶ କରି ଏହାର ବିଭିନ୍ନ ଦିଗ ସମ୍ପର୍କରେ ସର୍ବ ସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରାଉଛନ୍ତି । ନିକଟ ଅତୀତରେ ରାଜ୍ୟର କେତେକ ଅବସରପ୍ରାପ୍ତ କୁଳପତି, ଶିକ୍ଷା ନିର୍ଦ୍ଦେଶକ, ଅଧ୍ୟାପକ, ବିଶିଷ୍ଟ ଶିକ୍ଷାବିତ୍ ଏହି ଶିକ୍ଷା ସମ୍ପର୍କୀୟ ଯେଉଁ ସୁଚିନ୍ତିତ ମତାମତ ଦେଇଛନ୍ତି ତାହା ଏଠାରେ ଉଲ୍ଲେଖ କରା ଯାଉଛି ।

"ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମକୁ ସଫଳ କରିବାକୁ ହେଲେ ବିଭିନ୍ନ ଦିଗ ପ୍ରତି ଧ୍ୟାନ ଦେବାକୁ ହେବ ସେଗୁଡ଼ିକ ମଧ୍ୟରେ ମୁଖ୍ୟତଃ ହେଉଛି –

(କ) ପ୍ରାକ୍ ଶୈଶବ ଯତ୍ନ ଓ ଶିକ୍ଷା ।

(ଖ) ସାର୍ବଜନୀନ ପ୍ରାଥମିକ ଶିକ୍ଷା ।

(ଗ) ଶିକ୍ଷାର ବିଷୟବସ୍ତୁ, ପ୍ରଣାଳୀ ଓ ଗୁଣାତ୍ମକ ଅଭିବୃଦ୍ଧି ।

(ଘ) ବୟସ୍କ ଓ ନିରନ୍ତର ଶିକ୍ଷା ।

(ଙ) ପରିବେଶ ସୃଷ୍ଟି ଓ ଜନସାଧାରଣଙ୍କୁ ଶିକ୍ଷା ପ୍ରତି ଆକୃଷ୍ଟ କରିବା ।

(ଚ) ଗୋଷ୍ଠୀ ସହଯୋଗ ।

(ଛ) ଶିକ୍ଷକମାନଙ୍କ ନିମିତ୍ତ ଶିକ୍ଷା ।

(ଜ) ସମସ୍ତଙ୍କ ପାଇଁ ଶିକ୍ଷା ସମ୍ପର୍କୀୟ ସ୍ୱତନ୍ତ୍ର ବ୍ୟବସ୍ଥା ।

(ଝ) ଶିକ୍ଷାଯୋଜନା ଓ ପରିଚାଳନା ।

(ଞ) ସମ୍ବଳ ସଂଗ୍ରହ (ଆଭ୍ୟନ୍ତରୀଣ ଓ ବାହ୍ୟିକ) ।

ପ୍ରାକ୍ ଶୈଶବ ଯତ୍ନ ଓ ଶିକ୍ଷା କହିଲେ ଆମକୁ ପିଲାର ଜନ୍ମଠାରୁ ୬ ବର୍ଷ ବୟସ ପର୍ଯ୍ୟନ୍ତ ବୁଝିବାକୁ ପଡ଼ିବ, ଏହି ଅବସ୍ଥାରେ ପିଲାକୁ ଶିକ୍ଷା ଦେବାକୁ ହେଲେ ପ୍ରଥମେ ଶିଶୁର ମା'କୁ ଶିକ୍ଷା ଦିଆଯିବା କଥା । ଶିଶୁର ମା' ଶିକ୍ଷିତ ହେଉ ଅଥବା ନିରକ୍ଷର ହେଉ ସେ ଶିଶୁର ଯତ୍ନ ସମ୍ପର୍କୀୟ ଶିକ୍ଷା ପାଇବା ଦରକାର । ଏମିତି ହେବା ଦରକାର ଯେ ମା'ର ଗର୍ଭାବସ୍ଥାଠାରୁ ମା'ର ଯତ୍ନନେବା ଶିଶୁ ଜନ୍ମ ହେବା ପରେ ଶିଶୁର ଯତ୍ନନେବା, ଲାଳନ ପାଳନ କିପରି କଲେ ଶିଶୁର ଗଠନ ଉତ୍ତମ ହେବ, ଆଦି ସମ୍ପର୍କୀୟ ଶିକ୍ଷା ସମସ୍ତ ମହିଳାମାନେ ଲାଭ କରିବା ଦରକାର ।

ଶୈଶବ ଅବସ୍ଥାରେ ଶାରୀରିକ ଗଠନ, ପିଲାର ସାମାଜିକ ଚଳଣୀ, ହାବଭାବ, ରୀତିନୀତି, ଚାଲିଚଳଣ, ଭାଷା, ଗୋଷ୍ଠୀ ସମ୍ପର୍କ ଯେପରି ରକ୍ଷାଯାଇ ପାରିବ ସେ ସମ୍ପର୍କରେ ମା' ଶିକ୍ଷାପାଇ ପିଲାକୁ ଅନୁରୂପ ଭାବେ ଗଢ଼ିତୋଳିବା ଦରକାର । ପିଲାଟି ସ୍ୱଚ୍ଛନ୍ଦ ଭାବରେ ନାଚିକୁଦି ଖେଳିବ, ମନଖୁସିରେ ଗୀତ ଗାଇବ, ଛବି ଆଙ୍କିବ, ଗପ ଶୁଣିବ ଓ ଗପ କହିବାରେ ଉପଯୁକ୍ତ ଶିକ୍ଷା ପାଇବା ଦରକାର । ଏହା କରାଯାଇ ପାରିଲେ ସେ ସ୍ୱେଚ୍ଛାରେ ବିଦ୍ୟାଳୟକୁ ଯାଇ ଶିକ୍ଷାଲାଭ କରିବାକୁ ଆଗ୍ରହୀ ହେବ । ଶିଶୁକୁ ଶିକ୍ଷା ଦେବା ପାଇଁ ମା'କୁ ନିରନ୍ତର ଶିକ୍ଷକ ରୂପେ ଦାୟିତ୍ୱ ଗ୍ରହଣ କରିବାକୁ ପଡ଼ିବ ସେଥି ନିମିତ୍ତ ତାକୁ ବାରମ୍ବାର ତାଲିମ ନେବାକୁ ହେବ । ଏଥି ନିମିତ୍ତ ଗ୍ରାମସ୍ତରରେ ମହିଳାମାନଙ୍କୁ ସ୍ୱତନ୍ତ୍ର ତାଲିମ ବ୍ୟବସ୍ଥା ଶିଶୁ ବିକାଶ ସଂସ୍ଥା ଜରିଆରେ କରିବାକୁ ହେବ ।

ଶିଶୁ ବିକାଶ ଯୋଜନା ମାଧ୍ୟମରେ ଯେଉଁଳି ଅଙ୍ଗନବାଡ଼ି କର୍ମୀ, ସୁପରଭାଇଜରମାନଙ୍କୁ ସାମୟିକ ତାଲିମ ଦିଆ ଯିବାର ବ୍ୟବସ୍ଥା ରହିଛି ଠିକ୍ ଅନୁରୂପ ବ୍ୟବସ୍ଥା ଗ୍ରାମୀଣ ମହିଳାମାନଙ୍କ ପାଇଁ କରାଗଲେ ସେମାନେ ନିଜ ନିଜ ଛୁଆର ଯତ୍ନ ବେଶ୍ ଭଲଭାବେ ନେଇପାରିବେ । ଏଥିପାଇଁ ଗ୍ରାମ୍ୟ ଶିକ୍ଷା କମିଟି, ପଞ୍ଚାୟତ ସମିତି ଜିଲ୍ଲା ପରିଷଦ ଓ ସର୍ବୋପରି ଶିକ୍ଷା ନିର୍ଦ୍ଦେଶାଳୟ ଓ ଶିକ୍ଷା ବିଭାଗ ସମେତ ଜିଲ୍ଲା ସାମାଜିକ ଉନ୍ନୟନ ବିଭାଗ ମାନେ ପର୍ଯ୍ୟାପ୍ତ ସହଯୋଗ ପ୍ରଦାନ କରିବେ । ଗ୍ରାମୀଣ ମହିଳାମାନଙ୍କୁ ଶିଶୁ ପାଳନ ସମ୍ପର୍କୀୟ ତାଲିମ ଦେବା ସମୟରେ ନାଚ ଗୀତ, ଚିତ୍ରାଙ୍କନ ସମ୍ପର୍କୀୟ ଶିକ୍ଷା ପ୍ରଦାନ କରାଯିବା ଉଚିତ୍ ।

ଗ୍ରାମ୍ୟ ଶିକ୍ଷା କମିଟି ଗ୍ରାମାଞ୍ଚଳରେ ପ୍ରାକ୍ ଶୈଶବ ଯତ୍ନ ଓ ଶିକ୍ଷା ଦାୟିତ୍ୱ ବହନ କରିବେ ଓ ସହରାଞ୍ଚଳରେ ବସ୍ତି ବାସିନ୍ଦାଙ୍କ ପାଇଁ

ଏହି ଦାୟିତ୍ୱ ମ୍ୟୁନିସିପାଲିଟି ବହନ କରିବେ । ପ୍ରତି ୪୦୦ ପରିବାର ରହୁଥିବା ଗ୍ରାମରେ ଗୋଟିଏ ଲେଖାଏ ପ୍ରାକ୍ ଶୈଶବ ଯତ୍ନ ଓ ଶିକ୍ଷା କେନ୍ଦ୍ର ପ୍ରତିଷ୍ଠା ହେବା ଦରକାର । ଯେଉଁଠାରେ ଏଭଳି କେନ୍ଦ୍ର ପ୍ରତିଷ୍ଠା ହୋଇ ପାରିବାର ସୁବିଧା ସୁଯୋଗ୍ ନଥିବ ସେ କ୍ଷେତ୍ରରେ ସ୍ଥାନୀୟ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଏହି ଦାୟିତ୍ୱ ବହନ କରିବେ ।

ତେବେ ଏହି କେନ୍ଦ୍ରଗୁଡ଼ିକ ସାଧାରଣ ଶିକ୍ଷା ଉପକରଣ ଯଥା, ମ୍ୟାପ୍, ଗ୍ଲୋବ୍, ପୋଷ୍ଟର ବିଜ୍ଞାନଉପକରଣ, ଖେଳ ଉପକରଣ, ପାଠ୍ୟପୁସ୍ତକ, ସାଧନ ପୁସ୍ତକ ଆଦି ଯୋଗାଇ ଦିଆଯିବ । ଶିକ୍ଷାକେନ୍ଦ୍ର ନିକଟରେ ଗୋଟିଏ ଛୋଟ ଖେଳପଡ଼ିଆ ରହିବା ଦରକାର, ଏଗୁଡ଼ିକର ରକ୍ଷଣାବେକ୍ଷଣ ନିମିତ୍ତ ଓ କେନ୍ଦ୍ରର ସୁପରିଚାଳନା ଭାର ଜଣେ ସାମୟିକ ସ୍ୱେଚ୍ଛାସେବୀଙ୍କୁ ଦିଆଯିବ ସେଥି ନିମିତ୍ତ ସ୍ୱେଚ୍ଛାସେବୀଙ୍କୁ କିଛି ପାରିଶ୍ରମିକ ଦିଆଯିବା ଦରକାର, ଏହି କେନ୍ଦ୍ରରେ ମହିଳା ସମିତି ସଭ୍ୟମାନେ ନିୟମିତଭାବେ ମିଳିତ ହୋଇ ଆଲୋଚନାଚକ୍ର ମାଧ୍ୟମରେ ଶିଶୁ ବିକାଶ କାର୍ଯ୍ୟକ୍ରମ, ଶିକ୍ଷା କାର୍ଯ୍ୟକ୍ରମ ଆଦି କରାଇଲେ ଏହା ବେଶ୍ ଫଳପ୍ରଦ ହେବ ।

ଆମ ରାଜ୍ୟର କେତେକ ଉନ୍ନତ ବ୍ଲକ୍ ଓ ଗ୍ରାମ ପଞ୍ଚାୟତଗୁଡ଼ିକର ସାକ୍ଷରତା ହାର ଜାତୀୟ ସ୍ତରରେ ପହଞ୍ଚିଛି, ଯାହାକି ମାତ୍ର ଶତକଡା ୫୨ ଭାଗ, ୧୯୯୭ ମସିହା ସୁଦ୍ଧା ସମସ୍ତ ଗ୍ରାମ ପଞ୍ଚାୟତରେ ୬ ବର୍ଷ ବୟସର ପିଲାମାନଙ୍କୁ ପ୍ରାଥମିକ ଶିକ୍ଷାର ପରିସରଭୁକ୍ତ କରାଯିବ ଓ ୧୧ ବର୍ଷ ବୟସର ସମସ୍ତ ବାଳକ ବାଳିକା ୨,୦୦୦ ମସିହା ବେଳକୁ ଶିକ୍ଷା ନପାଇ ରହିନଥିବେ । ଏଣୁ ୬ ବର୍ଷରୁ ୧୪ ବର୍ଷ ବୟସର ସମସ୍ତ ପିଲା ୫+୩ ଅର୍ଥାତ୍ ନିମ୍ନ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ଶିକ୍ଷା ସମାପ୍ତ କରିଥିବେ । ଏହି ଉଚ୍ଚ ପ୍ରାଥମିକ ଶିକ୍ଷା ୮ମ ଶ୍ରେଣୀ ପର୍ଯ୍ୟନ୍ତ ରଖିବାକୁ ପଡ଼ିବ, ଦୀର୍ଘ ୮ ବର୍ଷ ଶିକ୍ଷାକାଳ ମଧ୍ୟରେ ବିଦ୍ୟାଳୟମାନଙ୍କରୁ ଯେପରି ପିଲାମାନେ ପାଠ ତ୍ୟାଗୀ ନ ହୁଅନ୍ତି ତାହା ମଧ୍ୟ ଦେଖିବାକୁ ହେବ ।

ବର୍ତ୍ତମାନ ପ୍ରଚଳିତ ଶିକ୍ଷାରେ ଜଣେ ଛାତ୍ର ଶତକଡା ୩୦ ନମ୍ବର ରଖି ପାସ୍ କରିବାର ବ୍ୟବସ୍ଥା ରହିଛି । ତେବେ ଏହି ବ୍ୟବସ୍ଥାକୁ ୮୦ ରୁ ୧୦୦ ପ୍ରତିଶତ ବଢାଯିବା ଆବଶ୍ୟକ । ତାହାହେଲେ ପିଲାର ଶିକ୍ଷା କ୍ଷେତ୍ରରେ ଗୁଣାତ୍ମକ ଅଭିବୃଦ୍ଧି ଘଟିବ । ଏହି ବ୍ୟବସ୍ଥା ଲାଗୁ କରିବାକୁ ଗଲେ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକର ଯୋଗ୍ୟତା ଅନ୍ୟୁନ ଗ୍ରାଜୁଏଟ୍ ହେବା ଏକାନ୍ତ ଜରୁରୀ । ସେଥି ସହିତ ଶିକ୍ଷକ କର୍ମଠ ହୋଇ ୬ ବର୍ଷରୁ ୧୧ ବର୍ଷ ବୟସର ଛାତ୍ର ଛାତ୍ରୀଙ୍କୁ ଅନ୍ୟୁନ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତ ପାଠ୍ୟକ୍ରମକୁ ଶିକ୍ଷା ଦେବାର ଯୋଗ୍ୟତା ହାସଲ କରିବା ଦରକାର । ଆବଶ୍ୟକ ସ୍ଥଳେ ସାମୟିକ ଭାବେ ଶିକ୍ଷକଙ୍କୁ ତାଲିମ ଦେବାକୁ ମଧ୍ୟ ପଡ଼ିବ ।

ସମସ୍ତଙ୍କ ପାଇଁ ଶିକ୍ଷା ବ୍ୟବସ୍ଥାରେ ପାରମ୍ପରିକ ପାଠ୍ୟ ଖସଡ଼ାର ପରିବର୍ତ୍ତନ ହେବା ଦରକାର । ମଝିରେ ମଝିରେ ଶିକ୍ଷାର୍ଥୀମାନଙ୍କର ଲବ୍ଧଜ୍ଞାନ ପରୀକ୍ଷା କରିଯିବା, ଦୁର୍ବଳ ଶ୍ରେଣୀର ଶିକ୍ଷାର୍ଥୀମାନଙ୍କ ପ୍ରତି ବିଶେଷ ଧ୍ୟାନ ଦିଆଯିବା ଫଳରେ ସମସ୍ତ ଶିକ୍ଷାର୍ଥୀ ଦକ୍ଷତାର ସହ ଉତ୍ତୀର୍ଣ୍ଣ ହେବେ । ଏଥିନିମିତ୍ତ ଏକ ସ୍କୁଲ କମ୍ପ୍ଲେକ୍ସ ପଞ୍ଚାୟତ ଓ ବ୍ଲକ ସ୍ତରରେ ଗଠନ କରାଯିବାର ବ୍ୟବସ୍ଥା ରହିବା ଆବଶ୍ୟକ ରାଜ୍ୟ ସ୍କୁଲ ଓ ଗଣ ଶିକ୍ଷା ମନ୍ତ୍ରୀ ମହୋଦୟ ଏ ସମ୍ପର୍କରେ ଏକ ଘୋଷଣାନାମ କରିଛନ୍ତି ଯାହାକି ନିକଟ ଅତୀତରେ ପତ୍ର ପତ୍ରିକାରେ ପ୍ରକାଶ ପାଇଛି । ସ୍କୁଲ୍ କମ୍ପ୍ଲେକ୍ସଗୁଡ଼ିକ ଗଠନ ହେବାପରେ ଶିକ୍ଷାର ଗୁଣାତ୍ମକ ବିକାଶ ଘଟିବ ବୋଲି ଆଶା କରାଯାଏ ।

ସ୍କୁଲ କମ୍ପ୍ଲେକ୍ସ ଗଠିତ ହେବାପରେ ଶିକ୍ଷକମାନଙ୍କୁ ମଝିରେ ମଝିରେ ସ୍ୱଳ୍ପ କାଳୀନ ତାଲିମ ଦେବାର ବ୍ୟବସ୍ଥା କରାଯିବ । ଏହାଦ୍ୱାରା ଶିକ୍ଷକମାନେ ଅତ୍ୟାଧୁନିକ ଶିକ୍ଷାର ବିକାଶ ସମ୍ପର୍କୀୟ ଜ୍ଞାନ ଆହରଣ କରିବାର ସୁଯୋଗ ମିଳିବ । ଏ ଦିଗରେ ଜିଲ୍ଲା ଶିକ୍ଷା ଓ ତାଲିମ ସଂସ୍ଥା ରାଜ୍ୟ ଶିକ୍ଷାଗବେଷଣା ଓ ଶିକ୍ଷକ ତାଲିମ ପ୍ରତିଷ୍ଠାନ ବିଭିନ୍ନ ଶିକ୍ଷକ ତାଲିମ ମହାବିଦ୍ୟାଳୟଗୁଡ଼ିକର ଅଭିଜ୍ଞ ଶିକ୍ଷକ ଓ ଅଧ୍ୟାପକମାନଙ୍କର ସହାୟତା ନିଆଯିବ ।

ଉପରୋକ୍ତ କାର୍ଯ୍ୟକ୍ରମକୁ ପରୀକ୍ଷା କରିବା ନିମିତ୍ତ ରାଜ୍ୟ ସରକାରଙ୍କ ସମ୍ପୃକ୍ତ ବିଭାଗ ଓ ନିର୍ଦ୍ଦେଶାଳୟର ସମ୍ପୃକ୍ତ ଅଫିସରମାନଙ୍କ ନିମିତ୍ତ ଅନୁରୂପ ସ୍ୱଳ୍ପକାଳୀନ ତାଲିମ ଓ ପ୍ରଶାସନିକ ବ୍ୟବସ୍ଥା କରାଯିବ, ଅଧିକ ସଂଖ୍ୟାକ ନିରୀକ୍ଷକଙ୍କୁ ନିଯୁକ୍ତ କରାଯାଇ ସେମାନଙ୍କୁ ମାତ୍ର ୨/୩ ଗୋଟି ପଞ୍ଚାୟତର ଶିକ୍ଷା ଦାୟିତ୍ୱ ଦିଆଗଲେ ଉକ୍ତ କାର୍ଯ୍ୟକ୍ରମ ଅଧିକ ଫଳପ୍ରଦ ଓ ଗତିଶୀଳ ହେବ ବୋଲି ଆଶା କରାଯାଏ । କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ପାଇଁ ୟୁନିସେଫ୍ ସାହାଯ୍ୟପ୍ରାପ୍ତ ଅଞ୍ଚଳରେ ବ୍ଲାକବୋର୍ଡ଼ ଅପରେସନ କରିଥାରେ ପ୍ରାଥମିକ ବିଦ୍ୟାଳୟର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ହେବ ।

ରାଜ୍ୟର ଉପାନ୍ତ ଅଞ୍ଚଳରେ ପ୍ରାଥମିକ ପୁସ୍ତକକୁ ଦ୍ୱିଭାଷିକ କରାଯିବା ଦରକାର ଏହା କରାଗଲେ ଅନଗ୍ରସର ଶ୍ରେଣୀର ଓ ଅନ୍ୟଭାଷାଭାଷୀ ଶିକ୍ଷାର୍ଥୀଙ୍କ ପାଇଁ ଏହା ଉପଯୋଗୀ ହୋଇପାରିବ । ତେବେ ଏହି ଦ୍ୱିଭାଷିକ ପୁସ୍ତକ କେତେଦୂର ଉପଯୋଗୀ ହୋଇପାରୁଛି ତାହାର ସମୀକ୍ଷା ହେବା ଦରକାର । ବିଦ୍ୟାଳୟଗୁଡ଼ିକର ପରିଚାଳନା ଦାୟିତ୍ୱ ବାହାର ଶିକ୍ଷକଙ୍କ ଦ୍ୱାରା ନ୍ୟସ୍ତ ହେବା ଦରକାର । ଏହା କରାଗଲେ ସେମାନେ ବିଦ୍ୟାଳୟହତା ମଧ୍ୟରେ ରହି ଶିକ୍ଷାର୍ଥୀମାନଙ୍କ ଶିକ୍ଷା ପ୍ରତି ଧ୍ୟାନ ଦେବେ ଓ ବିଦ୍ୟାଳୟର ପରିବେଶ ନିର୍ମଳ ଓ ପରିଷ୍କାର ରଖିପାରିବେ । ଅବଶ୍ୟ ଏଭଳି ଶିକ୍ଷକମାନଙ୍କ ନିମିତ୍ତ ଗୃହ ଯୋଗାଣ ସମସ୍ୟା ଦେଖାଦେଇପାରେ । ସେଭଳି କ୍ଷେତ୍ରରେ ସ୍ଥାନୀୟ ଶିକ୍ଷକ ଓ ଶିକ୍ଷୟିତ୍ରୀମାନେ ରହି ଏଥିପ୍ରତି ଦୃଷ୍ଟି ଦେବେ । ଯେଉଁ ଗ୍ରାମରେ ବିଦ୍ୟାଳୟ ନଥାଇ ଅଣଆନୁଷ୍ଠାନିକ ଶିକ୍ଷା କେନ୍ଦ୍ରଥିବ ସେଠାରେ ଏଭଳି ବିଦ୍ୟାଳୟ ଦାୟିତ୍ୱ ସେହି ଶିକ୍ଷକଙ୍କୁ ଦିଆଯାଇପାରେ ।

ସମୀକ୍ଷାରୁ ଯାହା ଜଣାଯାଇଛି ଅନୁନ୍ନତ ଜିଲ୍ଲାମାନଙ୍କରେ ମହିଳାମାନଙ୍କର ସଂଖ୍ୟା ୧୩ ଦଶମିକ ୫ ଓ ଅନୁନ୍ନତ ଶ୍ରେଣୀର ଛାତ୍ର ଛାତ୍ରୀମାନଙ୍କୁ ପାଠ୍ୟ ଉପକରଣ ଓ ପୋଷାକପତ୍ର ଯୋଗାଇ

ଦେବାର ବ୍ୟବସ୍ଥା ରହିବା ଦରକାର । ସେମାନଙ୍କ ମଧ୍ୟରୁ ଯେଉଁ ଛାତ୍ର ଛାତ୍ରୀମାନେ ଅଷ୍ଟମ ଶ୍ରେଣୀ ପାଠ୍ୟ ଶେଷ କରି ବିଶେଷ କୃତିତ୍ୱ ଅର୍ଜନ କରିପାରିବେ ସେମାନଙ୍କୁ ଅନ୍ୟୁନ ୨,୦୦୦ ଟଙ୍କା ଏକ ସଞ୍ଚୟ ସାର୍ଟିଫିକେଟ ଦିଆଗଲେ ସେମାନେ ଓ ଅନ୍ୟମାନେ ଶିକ୍ଷା ପ୍ରତି ଆଗ୍ରହ ପ୍ରକାଶ କରିବେ । ଅବଶ୍ୟ ମୁନ୍ନୁ ଶ୍ରେଣୀର ଛାତ୍ର ଛାତ୍ରୀଙ୍କୁ ଏଭଳି ସଞ୍ଚୟ ସାର୍ଟିଫିକେଟ ଦିଆନଯାଇ ଯେଉଁମାନଙ୍କର ଅଭିଭାବକ ବାର୍ଷିକ (୨୦,୦୦୦ ଟଙ୍କା) କୋଡ଼ିଏ ହଜାର ଟଙ୍କାରୁ କମ୍ ଆୟ କରୁଥିବେ ସେହିଭଳି ପରିବାରର ପିଲାମାନଙ୍କ ପାଇଁ ଏହି ସଞ୍ଚୟ ସାର୍ଟିଫିକେଟ ବ୍ୟବସ୍ଥା ରହିବା ଦରକାର ଏହା ବ୍ୟତୀତ ଶିକ୍ଷା ପ୍ରତି ଲୋକମାନଙ୍କୁ ଆକୃଷ୍ଟ କରିବାକୁ ହେଲେ ପ୍ରତ୍ୟେକ ଗ୍ରାମରେ ଏକ ପାଠାଗାର ପ୍ରତିଷ୍ଠାହେବା ଦରକାର । ସେହି ପାଠାଗାରକୁ ଟେଲିଭିଜନ, ରେଡ଼ିଓ ଆଦି ଗଣ ମାଧ୍ୟମ ଯୋଗାଇ ଦେବାର ବ୍ୟବସ୍ଥା ମଧ୍ୟ କରାଯିବା ଉଚିତ୍ ।

ଯଦି ଆମେ ନିଷ୍ଠାର ସହିତ "ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମ କରିବାକୁ ଯିବା ତାହାହେଲେ କେବଳ ଯେ ଶିକ୍ଷାନୁଷ୍ଠାନଗୁଡ଼ିଏ ଖୋଲିଦେଲେ, ଶିକ୍ଷକ ନିଯୁକ୍ତି କରିଦେଲେ ଚଳିବ ନାହିଁ । ସେଥିସହିତ ଶିକ୍ଷାର ଗୁଣାତ୍ମକ ବିକାଶ ହେଉଛି କି ନାହିଁ ? ଛାତ୍ର ଛାତ୍ରୀମାନେ ତା' ଦ୍ୱାରା ଉପକୃତ ହେଉଛନ୍ତି କି ନାହିଁ ? ଏ ସବୁକୁ ମଧ୍ୟ ଦେଖିବାକୁ ହେବ ।

ଏଣୁ ଅଧିକ ଯୋଗ୍ୟ ଓ ତାଲିମପ୍ରାପ୍ତ ଶିକ୍ଷକଙ୍କୁ ନିଯୁକ୍ତି ଦେବା ଆବଶ୍ୟକ ସଂଖ୍ୟକ ପାଠ୍ୟ ଉପକରଣ ଛାତ୍ର ଛାତ୍ରୀଙ୍କୁ ଯୋଗାଇବା, ପାଠ୍ୟ ଉପକରଣଗୁଡ଼ିକ ଅଧିକ ଗୁଣମାନର ହେବା ଦରକାର । ସେଥିମଧ୍ୟରେ ଆଧୁନିକ ବିଜ୍ଞାନ ସମ୍ମତ ବିଷୟବସ୍ତୁର ଅବତାରଣା ହେବା ଦରକାର ସର୍ବନିମ୍ନ ଶିକ୍ଷଣସ୍ତରକୁ ଭିତ୍ତିକରି ପାଠ୍ୟପୁସ୍ତକ ପ୍ରଣୟନ ନହେଲେ ତାହା ଛାତ୍ର ଛାତ୍ରୀଙ୍କ ପକ୍ଷେ ଦୁର୍ବୋଧ୍ୟ ବା ବୋଧଗମ୍ୟ ହେଉଛି ତାହା ଦେଖିବାର କଥା । ଏଣୁ ଶିକ୍ଷାର ଗୁଣାତ୍ମକ ଅଭିବୃଦ୍ଧି ନିମିତ୍ତ ପାଠ୍ୟ ପୁସ୍ତକଗୁଡ଼ିକୁ ନୂତନ ଭାବେ ପ୍ରଣୟନ ହେବା ଦରକାର । ସେଥିରେ ନିମ୍ନଲିଖିତ ବିଷୟ ପ୍ରତି ଧ୍ୟାନ ଦିଆଯିବ ।

(୧) ସମସ୍ତ ଛାତ୍ର ଛାତ୍ରୀଙ୍କ ପାଇଁ ଗୋଟିଏ ପାଠ୍ୟ ପୁସ୍ତକ ହେଲେ ତାହା ଚଳିବ ନାହିଁ । ଏହା କେତେକଙ୍କ ପକ୍ଷେ ସହଜ ଓ ବୋଧଗମ୍ୟ ହେବା ବେଳେ ଆଉ କେତେକଙ୍କ ପକ୍ଷେ ଦୁର୍ବୋଧ ହୋଇପାରେ । ଏଣୁ ସାମାଜିକ ଓ ସାଂସ୍କୃତିକ ଚଳଣି ଓ ସ୍ଥାନୀୟ ସମସ୍ୟାକୁ ଭିତ୍ତିକରି ପୁସ୍ତକର ବିଷୟବସ୍ତୁ ସନ୍ନିବେଶିତ ହେବା ଦରକାର । ସେଥିସହିତ ଗ୍ରାମାଞ୍ଚଳ, ସହରାଞ୍ଚଳ ବସ୍ତି ବାସିନ୍ଦା, ଆଦିବାସୀ, ଶ୍ରମିକ ଶ୍ରେଣୀର ପିଲାମାନଙ୍କ ଚାହିଦା ଓ ଚଳଣି ଅନୁସାରେ ଭିନ୍ନ ଭିନ୍ନ ପୁସ୍ତକ ପ୍ରଣୟନ କରାଗଲେ ସେଗୁଡ଼ିକୁ ସେମାନେ ଅଧିକ ଗ୍ରହଣ କରିବେ ଓ ସେଗୁଡ଼ିକ ଯଥାରୀତି ଉପଯୋଗୀ ହୋଇ ପାରିବ ।

(୨) ଏହି ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକ ପ୍ରସ୍ତୁତି ନିମିତ୍ତ ଏକ ସ୍ୱତନ୍ତ୍ର କମିଟି ଗଠନ ହେବା ଦରକାର । ପ୍ରାଥମିକ ଓ ମାଧ୍ୟମିକ ଶ୍ରେଣୀର ଛାତ୍ର ଛାତ୍ରୀଙ୍କ ପାଇଁ ଅଲଗା ଅଲଗା କମିଟି ରହିଲେ ଭଲହେବ । ପ୍ରତ୍ୟେକ ବୋର୍ଡ଼ରେ ଅନ୍ୟୁନ ୫ ଜଣରୁ ୭ ଜଣ ସଦସ୍ୟ ରହିବା ଦରକାର । ଏମାନେ ପାଠ୍ୟ ପୁସ୍ତକର ବିଷୟବସ୍ତୁ, ଶବ୍ଦ ଓ ବାକ୍ୟ ଗଠନ, ପୁସ୍ତକର ଅଙ୍ଗସଜ୍ଜା, ତ୍ରୁଟି ଆଦି ବିଷୟରେ ଅନୁଧ୍ୟାନ କରି ସେମାନଙ୍କର ସୁଚିନ୍ତିତ ମତାମତ ଦେବେ ।

(୩) ଆମ ଦେଶର ଶତକଡା ୮୦ ଭାଗ ଲୋକ କୃଷିଜୀବୀ, ଏଣୁ ସେମାନଙ୍କ ଜୀବନ ଉପଯୋଗୀ ହେଲାଭଳି କୃଷି ଭିତ୍ତିକ ବିଷୟ ସହ ସାମାଜିକ ଜୀବନରେ ପ୍ରତିଫଳିତ ହେଉଥିବା ବିଷୟଗୁଡ଼ିକ ଆଧାର କରି ପାଠ୍ୟକ୍ରମରେ ସନ୍ନିବେଶିତ କରିବା ଦରକାର, ଏତଦ୍ ବ୍ୟତୀତ ମାନବ ସମ୍ବଳର ବିକାଶ କିପରି ସାଧିତ ହୋଇପାରିବ ଓ ସବୁ ଶ୍ରେଣୀର ଛାତ୍ର ଛାତ୍ରୀ ଉପକୃତ ହେବେ ସେଥିପ୍ରତି ଧ୍ୟାନ ଦିଆଯିବ ।

(୪) ପାଠ୍ୟ ପୁସ୍ତକର ବିଷୟବସ୍ତୁ ନିର୍ଦ୍ଧାରଣ ନିମିତ୍ତ ଅଭିଜ୍ଞ ଲେଖକମାନଙ୍କର ଆବଶ୍ୟକତା ଯଥେଷ୍ଟ ବେଶୀ । ବିଶେଷ କରି ଶିକ୍ଷକ ତଥା ଲେଖକମାନଙ୍କ ସହାୟତାରେ ଏହି ପାଠ୍ୟପୁସ୍ତକ ପ୍ରଣୟନ କରାଯିବା ଦରକାର । ସେଥିପାଇଁ ଗ୍ରାମାଞ୍ଚଳଠାରୁ ଆରମ୍ଭ କରି ଆଦିବାସୀ ବହୁଳ ଅଞ୍ଚଳରେ ରହୁଥିବା ଶିକ୍ଷକମାନଙ୍କ ସମେତ ସହରାଞ୍ଚଳ ଶିକ୍ଷକମାନଙ୍କ ସହାୟତା ନିଆଯାଇପାରେ । ଏହା ପରେ ବିଶିଷ୍ଟ ଶିକ୍ଷାବିତ୍‌ମାନଙ୍କ ଦ୍ୱାରା ଅଥବା ଅଭିଜ୍ଞ ଶିକ୍ଷା ଗବେଷକଙ୍କ ସହାୟତାରେ ଏହାର ଯାଞ୍ଚ କରାଯାଇପାରେ ଓ ଆବଶ୍ୟକ ସ୍ଥଳେ ସେଗୁଡ଼ିକର ପୁନର୍ବିନ୍ୟାସ କରାଯାଇପାରେ ।

(୫) ପାଠ୍ୟ ପୁସ୍ତକ ପ୍ରସ୍ତୁତ ହେବା ସମୟରେ ଦେଶର ଐକ୍ୟରକ୍ଷା ଯେପରି ବାଧାପ୍ରାପ୍ତ ନ ହୁଏ, ସ୍ତ୍ରୀ, ପୁରୁଷ ଭେଦ ନରହେ, ପରିବେଶର ସୁରକ୍ଷା କରିବା, ସାମାଜିକ ଭେଦଭାବ ଦୂରକରି ଐକ୍ୟଭାବ ଆଣିବା, ଛୋଟ ପରିବାର ଗଠନ କରିବା, ନୂତନ ବିଜ୍ଞାନ ସମ୍ମତ ପ୍ରଣାଳୀରେ ଶିକ୍ଷାର ବିଷୟବସ୍ତୁମାନ ସନ୍ନିବେଶିତ ହେବା ଦରକାର ।

(୬) ଛାତ୍ର ଛାତ୍ରୀମାନଙ୍କର ବୟସ ସୀମା ଓ ପାଠ୍ୟକ୍ରମକୁ ଲକ୍ଷ୍ୟ ରଖି ପାଠ୍ୟପୁସ୍ତକର କଳେବର ହେବା ଦରକାର । ସେଥି ସହିତ ସ୍ଥାନୀୟ ଭାଷାର ପ୍ରଚଳିତ ଢଗଢମାଳିଗୁଡ଼ିକ ପିଲାମାନଙ୍କ ମନକୁ ଛୁଇଁଲାପରି ବିଷୟବସ୍ତୁ ରହିବା ଦରକାର ।

ପାଠ୍ୟକ୍ରମ ପ୍ରସ୍ତୁତି, ପୁସ୍ତକ ପ୍ରଣୟନ ଆଦି କାର୍ଯ୍ୟଗୁଡ଼ିକୁ କରିବାକୁ ହେଲେ ରାଜ୍ୟର ଶିକ୍ଷା ଗବେଷଣା ଓ ଶିକ୍ଷକ ତାଲିମ ପ୍ରତିଷ୍ଠାନ ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ରାଜ୍ୟ ବୈଷୟିକ ଶିକ୍ଷା ତାଲିମ ଅନୁଷ୍ଠାନ (ଏସ୍. ଆଇ. ଇ. ଟି.), ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ, ଗୁରୁ ତାଲିମ ମହାବିଦ୍ୟାଳୟଗୁଡ଼ିକର ସହାୟତା

ନିଆଗଲେ ସେଠାରେ କାର୍ଯ୍ୟରତ ଅଧ୍ୟାପକମାନଙ୍କ ଅଭିଜ୍ଞତାକୁ ବିନିଯୋଗ କରି ଶିକ୍ଷା ପଦ୍ଧତିର ପୁନର୍ବିନ୍ୟାସ ଆବଶ୍ୟକ ସ୍ଥଳେ କରାଯାଇପାରିବ । ଏହା କରାଗଲେ ଶିକ୍ଷାର୍ଥୀ ମନରେ ଶିକ୍ଷାପ୍ରତି ଆଗ୍ରହ ସୃଷ୍ଟି କରିବାରେ ସମର୍ଥ ହେବ । ଏସବୁ କାର୍ଯ୍ୟନିମିତ୍ତ ସ୍ୱତନ୍ତ୍ର ନିୟମ ପ୍ରଣୟନ କରାଯିବା ଦରକାର ଓ ତାହା କିପରି ଯଥାରୀତି ଭାବେ କାର୍ଯ୍ୟକାରୀ ହୋଇ ପାରିବ ସେଥି ନିମିତ୍ତ ଉପଯୁକ୍ତ ଧ୍ୟାନ ଦିଆଯିବା ଉଚିତ୍ ।

ବର୍ତ୍ତମାନ ବିଜ୍ଞାନ ଯୁଗ, ବିଜ୍ଞାନର ପ୍ରଗତି ସହିତ ଆମକୁ ସମ ତାଳରେ ଗତି କରିବାକୁ ପଡ଼ିବ ଏଥି ନିମିତ୍ତ ଇଲେକ୍ଟ୍ରୋନିକ୍ ଗଣ ମାଧ୍ୟମ ଯଥା ରେଡ଼ିଓ, ଟେପ୍ ରେକର୍ଡ଼ର ଆଦିର ବିନିଯୋଗ କରାଯାଇ ଉନ୍ନତ ଗୁଣ ମାନର ଶିକ୍ଷା ପ୍ରଦାନ କରିବା ଆବଶ୍ୟକ । ଏଣୁ ଶିକ୍ଷକମାନେ ନିଜର ଶିକ୍ଷଣ ପଦ୍ଧତିକୁ ଉନ୍ନତ ମାର୍ଗରେ ପରିଚାଳିତ କରିବାକୁ ଯତ୍ନବାନ ହେବା ଦରକାର । ଏ ଦିଗରେ (ଏସ୍: ଆଇ: ଇ: ଟି:), ରାଜ୍ୟ ବୈଷୟିକ ଶିକ୍ଷା ଅନୁଷ୍ଠାନର ସହଯୋଗ ଦରକାର । ରାଜ୍ୟରେ ଯଦି ପ୍ରାଥମିକ ଶିକ୍ଷା ବୋର୍ଡ଼ ଗଠିତ ହୁଏ ତାହେଲେ ଏ ଦିଗରେ ସେହି ବୋର୍ଡ଼ ବିହିତ ପଦକ୍ଷେପ ନେଇ ପାରିବ ।

ବିଦ୍ୟାଳୟମାନଙ୍କରେ ଉନ୍ନତ ମାନର ଶିକ୍ଷା ପ୍ରଦାନ କରି ଛାତ୍ର ଛାତ୍ରୀମାନଙ୍କର ମାନସିକ ବିକାଶ ଘଟାଇବା ଦିଗରେ ଶିକ୍ଷକମାନଙ୍କ ଭୂମିକା ଯେପରି ଗୁରୁତ୍ୱପୂର୍ଣ୍ଣ ବାପା, ମା' ଓ ଅଭିଭାବକମାନଙ୍କର ମଧ୍ୟ ଅନୁରୂପ ଭୂମିକା ରହିଛି । ଏଣୁ ଶିକ୍ଷକମାନେ ଛାତ୍ର ଛାତ୍ରୀଙ୍କର ଶିକ୍ଷାର ଉନ୍ନତିକଳ୍ପେ ଘନଘନ ଆଲୋଚନା କରିବା ଦରକାର । ଏହି ଆଲୋଚନା ସମୟରେ ଛାତ୍ରମାନଙ୍କ ପିତା, ମାତା ଓ ଅଭିଭାବକମାନେ ଯୋଗଦେଇ ସେମାନଙ୍କ ପିଲାଙ୍କ ସ୍ଥିତି ସମ୍ପର୍କରେ ଅବଗତ ହେବେ ଓ ସେମାନଙ୍କର ଅଭିଜ୍ଞତାକୁ ସମ୍ବଳ କରି ଛାତ୍ର ଛାତ୍ରୀଙ୍କୁ ସଦୁପଦେଶ ଦେବେ । ସେମାନେ ମଧ୍ୟ ଭାବିବେ ଯେ ସେମାନେ ବିଦ୍ୟାଳୟର ଏକ ଅବିଚ୍ଛେଦ୍ୟ ଅଙ୍ଗ ।

"ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମ ଶୁରୁ କରାଗଲେ ବିଦ୍ୟାଳୟମାନଙ୍କରେ ସ୍ଥିର ହୋଇଥିବା କାର୍ଯ୍ୟକାରୀ ଦିବସକୁ ବୃଦ୍ଧି କରାଯାଇ ଛୁଟି ଦିବସକୁ କମାଇ ଦେବାକୁ ହେବ । ପ୍ରାକ୍ ଶୈଶବ ଶିକ୍ଷା ପାଇଁ ପ୍ରତିଦିନ ଅନ୍ୟୁନ ତିନିଘଣ୍ଟା ଶିକ୍ଷାଦାନ ସମୟ ରଖାଯିବା ଦରକାର । ପ୍ରାଥମିକ ବିଦ୍ୟାଳୟରେ ୫ ଘଣ୍ଟା ସମୟକୁ ବାଢ଼ିଦେଇ ଅଧଘଣ୍ଟା ଲେଖାଏଁ ଖେଳକୁଦ, ଘର ସଫେଇ ଆଦି କାର୍ଯ୍ୟକ୍ରମ ରଖାଯିବା ଦରକାର । ଏହାପରେ ଉପର ଶ୍ରେଣୀର ପିଲାମାନଙ୍କ ପାଇଁ ୬ ଘଣ୍ଟା ଶିକ୍ଷାଦାନ ନିର୍ଦ୍ଧାରଣ କରିବାକୁ ପଡ଼ିବ । ଆବଶ୍ୟକ ମନେହେଲେ ପୂର୍ବ ପ୍ରଚଳିତ ଚାଟଶାଳୀ ଭଳି ଦୁଇବେଳା ଶିକ୍ଷାନୁଷ୍ଠାନ ଖୋଲିରଖିଲେ ଭଲ ହେବ । ଶିକ୍ଷାର୍ଥୀମାନେ ମଧ୍ୟ ଉପକୃତ ହେବେ ।

ବିଦ୍ୟାଳୟମାନଙ୍କରେ ଛାତ୍ର ଛାତ୍ରୀଙ୍କର ଜ୍ଞାନ ବୃଦ୍ଧି ଘଟୁଛି କି ନାହିଁ, ଶିକ୍ଷାର ମାନ କେତେ ଦୂର ଅଗ୍ରଗତି ହେଉଛି ଏସବୁ କଥା ଜାଣିବା ନିମିତ୍ତ ପରୀକ୍ଷା ପଦ୍ଧତି ଅନୁସୃତ ହୋଇଥାଏ, ଚିରା ଚରିତ ପ୍ରଥା ଅନୁସାରେ ବର୍ଷକ ମଧ୍ୟରେ ୨/୩ ଥର ଛାତ୍ରମାନଙ୍କୁ ପରୀକ୍ଷା କରାଗଲେ ଶିକ୍ଷକଙ୍କର ଦାୟିତ୍ୱ ସରିଯାଇଥାଏ । କିନ୍ତୁ "ସମସ୍ତଙ୍କ ପାଇଁ ଶିକ୍ଷା" କାର୍ଯ୍ୟକ୍ରମ ଶୁରୁ ରହିଲେ ସ୍ୱତନ୍ତ୍ର ଭାବେ ପ୍ରତ୍ୟେକ ପିଲା ନିମିତ୍ତ ଏକ ପ୍ରଗୋନ୍ନତି ଚିଠା ପ୍ରସ୍ତୁତ ହୋଇ ବିଦ୍ୟାଳୟରେ ରଖିବାକୁ ହେବ । ଶିକ୍ଷକ ପ୍ରତ୍ୟେକ ମାସରେ ଛାତ୍ରର ଆନ୍ତରୀଣ ପରୀକ୍ଷା କରି ଏହି ରେକର୍ଡ଼ରେ ଲିପିବଦ୍ଧ କରିବା ସଙ୍ଗେ ଛାତ୍ର ଛାତ୍ରୀଙ୍କ ଅଭିଭାବକଙ୍କୁ ପ୍ରଗୋନ୍ନତି ସମ୍ପର୍କରେ ଅବଗତି କରାଇବେ ।

ରାଜ୍ୟରେ ପ୍ରତିଷ୍ଠିତ ରାଜ୍ୟ ବୈଷୟିକ ଶିକ୍ଷା ଅନୁଷ୍ଠାନ (ଏସ୍: ଆଇ: ଇ: ଟି:) ଇଲେକ୍ଟ୍ରୋନିକ୍ ଗଣ ମାଧ୍ୟମର ପ୍ରୟୋଗ କରି ଶିକ୍ଷା ପ୍ରଦାନ କରିଥାନ୍ତି । ରାଜ୍ୟରେ ପ୍ରାଥମିକ ଶିକ୍ଷା ବୋର୍ଡ଼ ଗଠନ ହେବା ପରେ ଏହି ବୈଷୟିକ ଶିକ୍ଷା ପ୍ରତିଷ୍ଠାନର ସହାୟତା ନେଇ ପ୍ରାକ୍ ପ୍ରାଥମିକ ସ୍ତରରୁ ଗଣ ମାଧ୍ୟମ ଜରିଆରେ ଶିକ୍ଷା ପ୍ରଦାନ କରାଇଲେ ଏହା ନେଇ ଆଦୃତ ହେବ ଓ ଛାତ୍ରମାନେ ଏହାକୁ ଭଲ ଭାବେ ଗ୍ରହଣ କରିବେ ଏ କ୍ଷେତ୍ରରେ ଅନଗ୍ରସର ଶ୍ରେଣୀ ଓ ଆଦିବାସୀ ଛାତ୍ରମାନଙ୍କ ପାଇଁ ସ୍ୱତନ୍ତ୍ର ଭାବେ ଶିକ୍ଷକ ଉପକରଣ ପ୍ରସ୍ତୁତ ହୋଇ ଗଣ ମାଧ୍ୟମ ଜରିଆରେ ପ୍ରଦର୍ଶିତ ହେବା ଦରକାର ।

ବାପା, ମା' ଓ ଅଭିଭାବକମାନେ ପିଲାର ଜ୍ଞାନ ବୃଦ୍ଧି ଘଟାଇବାରେ ସହାୟକ ହୋଇଥାନ୍ତି କାରଣ ପିଲା ବହୁ ସମୟ ଘରେ ରହେ ଓ କମ୍ ସମୟ ବିଦ୍ୟାଳୟରେ ରହିଥାଏ । ବିଦ୍ୟାଳୟର ଶିକ୍ଷକ ଛାତ୍ରର ବାପା ମା' ଅଭିଭାବକମାନଙ୍କୁ ବିଦ୍ୟାଳୟକୁ ଡାକି ଛାତ୍ରମାନଙ୍କର ଶିକ୍ଷାର ଉନ୍ନତି କଳ୍ପେ ଆଲୋଚନା କଲେ ଓ ସେମାନଙ୍କର ଅଭିଜ୍ଞତାକୁ ସମ୍ବଳ କରି ପରାମର୍ଶ ଦେଲେ ତାହା ବେଶ୍ ଫଳପ୍ରଦ ହେବ ।

ବିଦ୍ୟାଳୟମାନଙ୍କରେ ଥିବା କାର୍ଯ୍ୟକାରୀ ଦିବସକୁ ବୃଦ୍ଧି କରାଯିବା ଦରକାର । ଯେତେ ସଂଖ୍ୟକ ଛୁଟି ତାହା ମଧ୍ୟ କମାଇ ଦିଆଯିବା ଦରକାର । ସେଥି ସହିତ ଶିକ୍ଷଣ ସମୟର ପରିବର୍ତ୍ତନ ଆବଶ୍ୟକ ପଡ଼ିବ । ପ୍ରାକ୍ ଶୈଶବ ଶିକ୍ଷା ପାଇଁ ଦୈନିକ ଅନ୍ୟୁନ ତିନି ଘଣ୍ଟା ଶିକ୍ଷାଦାନ ସମୟ ରଖାଯିବା ଦରକାର । ପ୍ରାଥମିକ ବିଦ୍ୟାଳୟରେ ୫ ଘଣ୍ଟା ଓ ଉପର ଶ୍ରେଣୀ ନିମନ୍ତେ ୬ ଘଣ୍ଟା ସମୟ ନିର୍ଦ୍ଧାରଣ କରାଯିବା ଦରକାର । ଏଥି ସହିତ ଖେଳକୁଦ ଓ ଘର ସଫେଇ ପାଇଁ ଅଧଘଣ୍ଟା ଲେଖାଏଁ କରି ଏକ ଘଣ୍ଟା ସମୟ ଦିଆଯିବା ଦରକାର । ଆବଶ୍ୟକ ମନେହେଲେ ପୂର୍ବ ପ୍ରଚଳିତ ଚାଟଶାଳୀ ଭଳି ଦୁଇବେଳା ଶିକ୍ଷା ଦାନ ବ୍ୟବସ୍ଥା ଖୋଲିରଖିଲେ ଭଲ ହେବ ।

ଶିକ୍ଷକମାନେ ଶ୍ରେଣୀ ଗୃହକୁ ଯିବା ପୂର୍ବରୁ ପାଠ୍ୟ ଖସଡ଼ା ଓ ସେଦିନର ପାଠ ପଢ଼ାର ବିଷୟବସ୍ତୁକୁ ଅନୁଧ୍ୟାନ କରି ଯିବାର ଯେଉଁ ପ୍ରଥା ରହିଛି ତାହା ପ୍ରାୟତଃ ଅନୁସୃତ ହେଉନାହିଁ । କେବଳ ନିଜର ଅଭିଜ୍ଞତାକୁ ଭିତ୍ତିକରି ଶିକ୍ଷା ଦେଉଥାନ୍ତି । ଏହି ଅର୍ଥରେ ଶିକ୍ଷାଦାନ ସଫଳ ହେଉନାହିଁ । ଏଣୁ ଏଥିପ୍ରତି ଗୁରୁତ୍ୱ ଦିଆଯାଇ ପାଠ୍ୟ ଖସଡ଼ା ଅନୁସାରେ ପ୍ରତ୍ୟେକ ଦିନ ଓ ପିରିଅଡ଼ର ପାଠ୍ୟକୁ ଶିକ୍ଷକ ପୂର୍ବରୁ ଟିକେ ଅନୁଧ୍ୟାନ କରି ଗଲେ ଓ ତଦନୁସାରେ ଶିକ୍ଷାଦାନ କଲେ ଓ ଶିକ୍ଷାର୍ଥୀଙ୍କଠାରୁ ଲବ୍ଧଜ୍ଞାନ ପରୀକ୍ଷାଠାରୁ ଆରମ୍ଭ କରି ପୂର୍ବଦିନର ପାଠ ଆଦାୟ କରିବା ଦରକାର । ଏସବୁ ପ୍ରତି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଗୁରୁତ୍ୱର ସହ ଉପଲବ୍ଧି କରି କାର୍ଯ୍ୟାନୁଷ୍ଠାନ କରିବା ଦରକାର । ମଝିରେ ମଝିରେ ଶିକ୍ଷକମାନଙ୍କ ସ୍ୱାଭାବିକ ଶିକ୍ଷାଦାନ କିପରି ଉନ୍ନତ ମାର୍ଗରେ ପରିଚାଳିତ ହେବ ତାହା ପରାମର୍ଶ କରିବା ଦରକାର ।

---

ସହକାରୀ ନିର୍ଦ୍ଦେଶକ,
ରାଜ୍ୟ ଗଣ ଶିକ୍ଷା ନିର୍ଦ୍ଦେଶାଳୟ,
ଭୁବନେଶ୍ୱର ।

# ଓଡ଼ିଶା ମାଛ ଜାଆଁଳ ନିଗମ ଦ୍ୱାରା ମାଛ ଜାଆଁଳ ଉତ୍ପାଦନ

**ହରିଶଙ୍କର ବଡ଼ପଣ୍ଡା**

ଓଡ଼ିଶା ପ୍ରଦେଶର ଜଳ ସମ୍ପଦକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇପାରେ ଯଥା- ମଧୁର ପାଣି ଓ ଲୁଣିପାଣି। ଏ ପ୍ରଦେଶରେ ପୋଖରୀ/ଜଳାଶୟ ୬୩,୮୯୭ ହେକ୍ଟର, ଜଳ ଭଣ୍ଡାର ୨,୫୬,୦୦୦ ହେକ୍ଟର, [illegible] ୧,୮୦,୦୦୦ ହେକ୍ଟର ନଦୀ ଓ କେନାଲ ୧,୪୫,୪୦୦ ହେକ୍ଟର ପରିମିତ ମଧୁର ପାଣି ଜଳ ସମ୍ପଦ ଅଛି। ଏ ମଧ୍ୟରୁ ୩୯,୯୯୬ ହେକ୍ଟର ପରିମିତ ପୋଖରୀ/ଜଳାଶୟରେ ବର୍ତ୍ତମାନ ମାଛ ଚାଷ କରାଯାଉଛି। ଜଳ ଭଣ୍ଡାରରେ ଯୋଜନାନୁଯାୟୀ ମାଛ ଚାଷ କରିବା ଏବେ ଆରମ୍ଭ ହେଲାଣି। ତେଣୁ ଏ ପ୍ରଦେଶର ଜଳ ସମ୍ପଦର ଯଦିଓ ବାର୍ଷିକ ୧,୫୨,୬୯୭ ମେଟ୍ରିକ୍ ଟନ ମାଛ ଉତ୍ପାଦନ କରିବାର କ୍ଷମତା ଅଛି ଏବେ କେବଳ ୫୮,୭୨୦ ମେଟ୍ରିକ୍ ଟନ ମାଛ ଉତ୍ପାଦନ ହେଉଛି। ଏଣୁ ଅଧିକ ଜଳାଶୟ ପୋଖରୀ ତଥା ଜଳ ଭଣ୍ଡାରରେ ଅଧିକ ପରିମାଣର ମାଛ ଉତ୍ପାଦନ ପାଇଁ ବୈଜ୍ଞାନିକ ପଦ୍ଧତିରେ ମାଛ ଚାଷ କରିବାକୁ ଚେଷ୍ଟା ଅତ୍ୟାବଶ୍ୟକ ହେଉଅଛି।

## ପୋଖରୀ ମାଛ ଚାଷ କାର୍ଯ୍ୟକ୍ରମ :

[illegible] ସାଲରେ ଏ ପ୍ରଦେଶରେ ଯେତେବେଳେ ମତ୍ସ୍ୟ ଚାଷୀ ଉନ୍ନୟନ ସଂସ୍ଥା ସବୁ ଗଠିତ ହେଲା ସେତେବେଳରୁ ତଳ ଲିଖିତ କାର୍ଯ୍ୟକ୍ରମ ସବୁ ହାତକୁ ନିଆଗଲା।

(୧) ଯୋଜନାନୁମୋଦିତ ମାଛ ଚାଷ କେନ୍ଦ୍ରରେ ଶାଢି ଜାଆଁଳ ଉତ୍ପାଦନ।

(୨) [illegible] ପୋଖରୀରେ ପଙ୍କୋଦ୍ଧାର ଓ ଉନ୍ନତର ପଦ୍ଧତିର [illegible] ପାଇଁ ରିହାତି ସୂତ୍ରରେ ଋଣଦାନ ବ୍ୟବସ୍ଥା।

(୩) ଉନ୍ନତ ମାଛ ଚାଷ କ୍ଷେତ୍ରରେ ଅଧିକ ମାଛ ଉତ୍ପାଦନ ପାଇଁ ମାଛ ଚାଷୀମାନଙ୍କୁ ତାଲିମ ପ୍ରଦାନ।

## ମାଛ ଜାଆଁଳ ଉତ୍ପାଦନ :

[illegible] ମାଛ ଚାଷ ପାଇଁ ଶାଢି ଜାଆଁଳ ଯୋଗାଣ ଅତ୍ୟାବଶ୍ୟକ, ଏ ଉଦ୍ଦେଶ୍ୟ ଆଧାରରେ ଲକ୍ଷ୍ୟ ଓଡ଼ିଶା ମାଛ ଜାଆଁଳ ଉନ୍ନୟନ ନିଗମ [illegible]ରେ ସଂଗଠିତ କରାଗଲା। ଏହା ଓଡ଼ିଶା [illegible] ଏବଂ ବିଶ୍ୱବ୍ୟାଙ୍କ ସାହାଯ୍ୟରେ ସଂଗଠିତ। [illegible] ଜିଲ୍ଲାର [illegible], ସମ୍ବଲପୁର ଜିଲ୍ଲାର ହିରାକୁଦ, ଭଦ୍ରକ ଜିଲ୍ଲାର ସରମଙ୍ଗ, ଗଞ୍ଜାମ ଜିଲ୍ଲାର ଭଞ୍ଜନଗର ଓ କଳାହାଣ୍ଡି ଜିଲ୍ଲାର ହାବାସପୁରଠାରେ ଏପରି ପାଞ୍ଚଗୋଟି ମତ୍ସ୍ୟ ଜାଆଁଳ ଉତ୍ପାଦନ କେନ୍ଦ୍ର ଏହି ସଂସ୍ଥା ଅଧୀନରେ ଅଛି। ୧୯୯୨-୯୩ ସାଲରେ ଓଡ଼ିଶା ପ୍ରଦେଶର ଜାଆଁଳ ଚାହିଦା ଥିଲା ୨,୨୦୦ ଲକ୍ଷ। ଏହି ବର୍ଷ ଓଡ଼ିଶା ମତ୍ସ୍ୟ ବିଭାଗରୁ ୬୫୩, ଲକ୍ଷ ଓଡ଼ିଶା ମାଛ ଜାଆଁଳ ଉନ୍ନୟନ ନିଗମରୁ ୭୨୦ ଲକ୍ଷ ଓ ବ୍ୟକ୍ତିଗତ ଚାଷୀମାନଙ୍କଠାରୁ ୪୨୮ ଲକ୍ଷ ଜାଆଁଳ ମାଛ ଚାଷୀମାନଙ୍କୁ ଯୋଗାଇ ଦିଆଯାଇଥିଲା। ତେଣୁ ସେ ବର୍ଷରେ ୩୦୦ ଲକ୍ଷ ଜାଆଁଳ ଯୋଗାଣ ହୋଇ ପାରିଲା ନାହିଁ। ଯେ ହେତୁ ପ୍ରତିବର୍ଷ ମତ୍ସ୍ୟଚାଷୀ ଉନ୍ନୟନ ସଂସ୍ଥା ଦ୍ୱାରା ଅଧିକରୁ ଅଧିକ ଜଳାଶୟକୁ ମାଛ ଚାଷ ଉପଯୋଗୀ କରାଯାଉଅଛି। ୪୧ଗୋଟି ଜଳଭଣ୍ଡାରକୁ ବିଶ୍ୱବ୍ୟାଙ୍କ ସହାୟତାରେ ମାଛ ଚାଷ ପାଇଁ ବହୁପାର୍ଶ୍ୱ ନିର୍ଦ୍ଦିଷ୍ଟ ପଦକ୍ଷେପ ନିଆଗଲାଣି। ଏକ ଅଟକଳରୁ ଜଣାଯାଏ, ଯେ ଅଷ୍ଟମ ପଞ୍ଚ ବାର୍ଷିକ ଶେଷ ବେଳକୁ ଜାଆଁଳ ଚାହିଦାର ପରିମାଣ ୩,୦୦୦ ଲକ୍ଷ ହେବ। ଏ ପ୍ରଦେଶରେ ମାଛ ଚାଷ ପାଇଁ ନିୟୋଜିତ ସମସ୍ତ ସଂସ୍ଥାକୁ ଏହା ଏକ ବିରାଟ ଆହ୍ୱାନ।

## ନିଗମର ଜାଆଁଳ ଉତ୍ପାଦନର ବର୍ତ୍ତମାନ ଅବସ୍ଥା :

୧୯୮୮-୮୯ ସାଲରୁ ପାଞ୍ଚଗୋଟି ହାଚେରୀ ମଧ୍ୟରୁ ତିନିଗୋଟିରେ ଜାଆଁଳ ଉତ୍ପାଦନ ଆରମ୍ଭ ହେଲା। ହାବାସପୁରଠାରେ ଏ ବର୍ଷ ପଞ୍ଚମ ହାଚେରୀ ସମ୍ପୂର୍ଣ୍ଣ କାର୍ଯ୍ୟକ୍ଷମ ହେବାକୁ ଯାଉଛି। ୧୯୮୮-୮୯ଠାରୁ ଏ ପର୍ଯ୍ୟନ୍ତ ନିଗମର ହାଚେରୀମାନଙ୍କରୁ ନିମ୍ନଲିଖିତ ପରିମାଣର ଶାଢି ମାଛ ଜାଆଁଳ ଉତ୍ପାଦନ ହୋଇଅଛି।

([illegible])

| | ୧୯୮୮-୮୯ | ୧୯୮୯-୯୦ | ୧୯୯୦-୯୧ | ୧୯୯୨-୯୩ | ୧୯୯୩-୯୪ |
|---|---|---|---|---|---|
| (କ) [illegible] | [illegible] | [illegible] | [illegible] | [illegible] | [illegible] |
| (ଖ) [illegible] | [illegible] | [illegible] | [illegible] | [illegible] | [illegible] |
| (ଗ) [illegible] | [illegible] | [illegible] | [illegible] | [illegible] | [illegible] |
| (ଘ) [illegible] | [illegible] | [illegible] | [illegible] | [illegible] | [illegible] |
| (ଙ) [illegible] | — | — | — | — | [illegible] |

ନିଗମ ତା'ର ଅଧୀନରେ ଥିବା ସମସ୍ତ ଜାଆଁଳ ଉତ୍ପାଦନ କେନ୍ଦ୍ରରେ ଖାଣ୍ଟି ଜାଆଁଳ ଉତ୍ପାଦନ କରେ । ଆଗରୁ ମାଛ ଚାଷୀ ଖାଣ୍ଟି ମାଛ ଜାଆଁଳ ନେବାକୁ ବେଶୀ ଆଗ୍ରହ ପ୍ରକାଶ କରୁନଥିଲେ, କିନ୍ତୁ ମାଛ ଚାଷରୁ ଲାଭକୁ ଆଖିରେ ରଖି ଏବେ ଖାଣ୍ଟି ଜାଁଳ କିଣିବା ପାଇଁ ବିଶେଷ ଆଗ୍ରହି ହେଲେଣି । ତେଣୁ ନିଗମର ହାଚେରୀସବୁରୁ ମାଛ ଚାଷୀଙ୍କୁ ବର୍ଷ ପରେ ବର୍ଷ ବେଶୀ ପରିମାଣରେ ଜାଆଁଳ ଯୋଗାଣ ବଢ଼ିଛି । ଉପରୋକ୍ତ ଜାଆଁଳ ସରବରାହ ତାଲିକାରେ ଏ ଅବସ୍ଥା ସ୍ପଷ୍ଟ ହୋଇ ଯାଉଅଛି ।

**ଭବିଷ୍ୟତ କର୍ମପନ୍ଥା :**

ବିଶ୍ୱ ବ୍ୟାଙ୍କର ସହାୟତାରେ ନିର୍ମିତ ଏହି ପାଞ୍ଚଗୋଟି ହାଚେରୀରେ ପୃଥିବୀର ସର୍ବାଧୁନିକ ଚୀନା ମଡେଲ ଗୋଲାକାର ହାଚେରୀ ଏ ନିଗମର ତିନୋଟି ପ୍ରକଳ୍ପ ଯଥା– ଭଞ୍ଜନଗର, ଚିପ୍ଲିମା ଓ ବାୟା ସାଗରରେ ନିର୍ମିତ ହୋଇଅଛି । ଅନ୍ୟ ଦୁଇଗୋଟି ପ୍ରକଳ୍ପ ଯଥା ବିନିକା ଓ ସରମଣୀଠାରେ ଏ ବର୍ଷ ଏହି ଧରଣର ହାଚେରୀ ନିର୍ମାଣ କରାଯିବ । ତେଣୁ ୧୯୯୪ ଋତୁରେ ପ୍ରଚୁର ପରିମାଣରେ ବିଶୁଦ୍ଧ ଓ ଖାଣ୍ଟି ଚାଷୋପଯୋଗୀ ମାଛ ଜାଆଁଳ ଉତ୍ପାଦନ କରାଯିବ । ଏହି ପାଞ୍ଚଗୋଟି ପ୍ରକଳ୍ପର ଜଳାୟତନ ୮୭ ହେକ୍ଟର ଯେଉଁଥିରୁ ୭ ହେକ୍ଟର ହେଉଛି ପାଣିଯିବା ନାଳ । ବାକି ୮୦ ହେକ୍ଟରରୁ ୨୬ ହେକ୍ଟର ପ୍ରଜନନ କ୍ଷମ ମାଛ ଉତ୍ପାଦନ ଓ ରକ୍ଷଣାବେକ୍ଷଣ ପାଇଁ ସଂରକ୍ଷିତ । ତେଣୁ ଜାଆଁଳ ଉତ୍ପାଦନ ପାଇଁ ଅବଶିଷ୍ଟ ୫୪ ହେକ୍ଟର ଜଳାୟତନ ଅଛି । ଏହି ଜଳାୟତନରେ ଜାଆଁଳ ଚାଷ କରାଯାଇ ଖାଣ୍ଟି ଜାଆଁଳ ଉତ୍ପାଦନ କଲେ ଅତିବେଶୀରେ ୧,୨୦୦ ଲକ୍ଷ ଜାଆଁଳ ଉତ୍ପାଦନ ସମ୍ଭବ ହେବ ।

**ପର୍ଯ୍ୟାଲୋଚନା :**

୧୯୯୨-୯୩ ସାଲରେ ଓଡ଼ିଶାର ୨,୨୦୦ ଲକ୍ଷ ଜାଆଁଳର ଚାହିଦାରୁ ବିଭାଗୀୟ ନିଗମ ଓ ବ୍ୟକ୍ତିଗତ ଜାଆଁଳ ଉତ୍ପାଦନ କେନ୍ଦ୍ରରୁ ମତ୍ସ୍ୟଚାଷୀଙ୍କୁ କେବଳ ୧,୯୦୦ ଲକ୍ଷ ଜାଆଁଳ ଯୋଗାଇ ଦିଆ ଯାଇଥିଲା । ଆଶା କରାଯାଏ ଯେ ଅଷ୍ଟମ ପଞ୍ଚବାର୍ଷିକ ଯୋଜନା ଶେଷ ବେଳକୁ ଅଧିକ ମାଛ ଚାଷ କ୍ଷେତ୍ର ବଢ଼ିବ ଏବଂ ଏହି ଜାଆଁଳର ଚାହିଦା କମ ପକ୍ଷରେ ୩,୦୦୦ ଲକ୍ଷ ହେବାର ସମ୍ଭାବନା ଅଛି ।

ଏଣୁ ନିମ୍ନଲିଖିତ ପଦକ୍ଷେପଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ସବୁସ୍ତରରେ ପ୍ରଚେଷ୍ଟା ହେବା ଆବଶ୍ୟକ ।

- ବିଭାଗୀୟ ଜାଆଁଳ ପାଳନ ପୋଖରୀ ପଙ୍କୋଦ୍ଧାର ବ୍ୟବସ୍ଥା
- ବିଶୁଦ୍ଧ ଗୁଣ ଜାଆଁଳ ଉତ୍ପାଦନ ପାଇଁ ଚୀନ ଦେଶୀୟ ଗୋଲାକାର ହାଚେରୀ ଆବଶ୍ୟକ ପରିମାଣରେ ନିର୍ମାଣ ।
- ଆଗ୍ରହୀ ମାଛ ଚାଷୀମାନଙ୍କୁ ମାଛ ଜାଆଁଳ ଉତ୍ପାଦନ ଓ ମାଛ ପ୍ରଜନନ ବିଷୟରେ ବୈଷୟିକ ତାଲିମ୍ ।
- ଜାଆଁଳ ପାଳନ ପୋଖରୀ ସବୁରେ ଗୁଣ୍ଡ ଜାଆଁଳରୁ ଜାଆଁଳ ହେବାରେ କମପକ୍ଷରେ ଶତକଡ଼ା ୨୦ ଭାଗ ଆଦାୟ ପାଇଁ ବିହିତ ପଦକ୍ଷେପ ।
- ସମ୍ପ୍ରସାରଣ ଜରିଆରେ ମାଛ ଚାଷୀମାନଙ୍କ ସହିତ ଅଧିକ ସମ୍ପର୍କ ସ୍ଥାପନ ଓ ମାଛର ଉଚିତ ବିକ୍ରିବଟା ପାଇଁ ବ୍ୟବସ୍ଥା ।
- ନିଗମର ବର୍ତ୍ତମାନ ପ୍ରକଳ୍ପର ଅବସ୍ଥାର ଉନ୍ନତି ବିଧାନ କରି ୧,୮୬୦ ଲକ୍ଷ ଜାଆଁଳ ଉତ୍ପାଦନ ଓ ବଣ୍ଟନ ପାଇଁ ପଦକ୍ଷେପ ।

ପରିଯୋଜନା ନିର୍ଦ୍ଦେଶକ,
ଓଡ଼ିଶା ମାଛ ଜାଆଁଳ ଉନ୍ନୟନ ନିଗମ,
ଭୁବନେଶ୍ୱର–୭୫୧୦୧୪ ।



ତେରାବିନ୍ଧାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ, ତେରାବିନ୍ଧ ମହାବିଦ୍ୟାଳୟର ୟୁନିୟନର ବାର୍ଷିକୋତ୍ସବକୁ ଉଦ୍‌ଘାଟନ କରୁଛନ୍ତି ।

# ଚରିତ୍ରବତ୍ତା ବିଶ୍ୱନାଥ ଦାସ

ଶ୍ରୀ ବିଜୟ ଚନ୍ଦ୍ର ମହାପାତ୍ର

**ଜନ୍ମ :**

ବିଶ୍ୱନାଥ ଦାସ ୮-୩-୧୮୮୯ରେ ତତ୍କାଳୀନ ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ ଗଞ୍ଜାମ ଜିଲ୍ଲାର ପୋଲସରା ନିକଟବର୍ତ୍ତୀ ବେଲଗାଁରେ ଜନ୍ମ ଗ୍ରହଣ କରିଥିଲେ । ସେ ବ୍ରହ୍ମପୁରରେ ନିମ୍ନ ମାଧ୍ୟମିକ ଶିକ୍ଷା ଶେଷକରି ତତ୍କାଳୀନ ବଙ୍ଗ ପ୍ରଦେଶ ଅନ୍ତର୍ଭୁକ୍ତ କଟକର ଭିକ୍ଟୋରିଆ ହାଇ ସ୍କୁଲରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଉକ୍ତ ହାଇସ୍କୁଲର ସାମ୍ପ୍ରତିକ ନାମ ଭକ୍ତମଧୁ ବିଦ୍ୟାପୀଠ । ସେ ରେଭେନ୍ସା କଲେଜରେ ବି: ଏ: ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ କଲିକତା ବିଶ୍ୱବିଦ୍ୟାଳୟରେ ୧୯୧୪ରେ ବି: ଏଲ୍: ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।

**ଓଡ଼ିଶା ଗଠନ :**

ପଣ୍ଡିତ ଗୋପବନ୍ଧୁଙ୍କ ପ୍ରଭାବରେ ସେ ଜାତୀୟ କଂଗ୍ରେସରେ ଯୋଗ ଦେଲେ । ଜାତୀୟ କଂଗ୍ରେସ ସାଇମନ କମିଶନଙ୍କୁ ବର୍ଜନ କରିଥିବା ସତ୍ତ୍ୱେ ଉତ୍କଳ-ସମ୍ମିଳନୀ ସ୍ୱାଗତ କଲା, ସୁତରାଂ ୧୯୨୮ରେ କଲିକତା ଅଧିବେଶନରେ କଂଗ୍ରେସ ସଭାପତି ପଣ୍ଡିତ ମୋତିଲାଲ ନେହେରୁ ଓଡ଼ିଆ ଲୋକଙ୍କ ପ୍ରତି କଟୁ ମନ୍ତବ୍ୟ ପ୍ରୟୋଗ କଲେ । ମାତ୍ର ବିଶ୍ୱନାଥ ଦାସ ଅତି ଦକ୍ଷତାର ସହିତ ମୋତିଲାଲଙ୍କ ମନ୍ତବ୍ୟର ବିରୋଧ କରିଥିଲେ ।

ଓଡ଼ନେଲ୍ କମିଟି ସମୟରେ ସେ ଜେଲରେ ଥିବାରୁ କମିଟି ଆଗରେ ସାକ୍ଷ୍ୟ ଦେଇ ପାରିଲେ ନାହିଁ । ସୁତରାଂ କମିଟି ଦକ୍ଷିଣାଞ୍ଚଳ ବିଷୟରେ ସବିଶେଷ ତଥ୍ୟ ପାଇନପାରି ପାରଳାଖେମୁଣ୍ଡିକୁ ବାଦଦେଇ ଓଡ଼ିଶା ଗଠନ ନିମନ୍ତେ ସୁପାରିଶ କଲେ । ଏହାର ପ୍ରତିବାଦରେ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ସହିତ ବିଶ୍ୱନାଥ ଦାସ ଓ ଲିଙ୍ଗରାଜ ପାଣିଗ୍ରାହୀ ସିମଲାରେ ବଡ଼ଲାଟଙ୍କୁ ଭେଟି ପାରଳାଖେମୁଣ୍ଡି ଦାବୀ କଲେ । ପ୍ରସ୍ତାବିତ ଓଡ଼ିଶା ଏକ ନିଅଣ୍ଟିଆ ପ୍ରଦେଶ ହେବ ବୋଲି ପ୍ରବଳ ପ୍ରଚାର ଚାଲିଥିଲା । ବିଶ୍ୱନାଥ ଦାସ ଗଭର୍ଣ୍ଣର ଜେନେରାଲଙ୍କୁ ପ୍ରସ୍ତାବିତ ଓଡ଼ିଶାର ରାଜସ୍ୱ ବିଷୟ ସ୍ପଷ୍ଟ ରୂପେ ବୁଝାଇଥିଲେ । ଏହିପରି ନାନା ପ୍ରକାର ଉତ୍ଥାନ ପତନ ଦେଇ ୨୬ଟି ଗଡ଼ଜାତ ବ୍ୟତୀତ ୧-୪-୧୯୩୬ରେ ଓଡ଼ିଶା ପ୍ରଦେଶ ଗଠିତ ହେଲା ।

**ନେତା :**

ବିଲାତ ସଂସଦରେ ୧୯୩୫ ଆଇନାନୁସାରେ ୬ଟି ଜିଲ୍ଲାକୁ ନେଇ କ୍ଷୁଦ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ୧୯୩୬ରେ ସାଧାରଣ ନିର୍ବାଚନ ହେଲା । ଅବଶ୍ୟ ସବୁଲୋକ ଭୋଟ ଅଧିକାର ପାଇନଥିଲେ । ସେତେବେଳେ ପଣ୍ଡିତ ଜବାହରଲାଲ ନେହେରୁ ଓ ପଣ୍ଡିତ ନୀଳକଣ୍ଠ ଦାସ ଯଥାକ୍ରମେ ଭାରତ ଓ ଓଡ଼ିଶା କଂଗ୍ରେସର ସଭାପତି ହୋଇଥାନ୍ତି । ସେମାନେ ନିର୍ବାଚନରେ ଠିଆ ହେଲେ ନିଜ ନିଜ ନିର୍ବାଚନ ମଣ୍ଡଳୀରେ ଆବଦ୍ଧ ହୋଇଯିବେ ; ତାହାହେଲେ ସାରା ଭାରତ ଓ ଓଡ଼ିଶା କଂଗ୍ରେସର କ୍ଷତି ହେବା ଆଶଙ୍କାରେ ଠିଆ ହୋଇନଥିଲେ । ଓଡ଼ିଶାରେ କଂଗ୍ରେସ ୬୦ଟି ଆସନରୁ ୩୬ଟି ଆସନରେ ପ୍ରାର୍ଥୀ ଦେଇ ୩୪ଟି ଆସନରେ ଜୟ ଲାଭ କଲା । ମାତ୍ର ପଣ୍ଡିତ ନୀଳକଣ୍ଠ ବିଧାନ ସଭାର ସଭ୍ୟ ହୋଇନଥିବାରୁ ପ୍ରଧାନମନ୍ତ୍ରୀ ହୋଇ ପାରିଲେ ନାହିଁ । ମାନ୍ଦ୍ରାଜ ସଭାରେ ବରେଣ୍ୟ ନେତା ବିଶ୍ୱନାଥ ଦାସଙ୍କର ଅଭିଜ୍ଞତା ଥିଲା । ସଭାବୃନ୍ଦ ନିଃସ୍ୱାର୍ଥ, ନିଷ୍ଠାପର ଓ କ୍ଷମତାନିର୍ଲୋଭ ଦାସଙ୍କୁ ଓଡ଼ିଶାର ପ୍ରଧାନମନ୍ତ୍ରୀ ଆସନରେ ବସାଇଲେ । ଅବଶ୍ୟ ତା'ପୂର୍ବରୁ ପାରଳା-ଗଜପତିଙ୍କ ନେତୃତ୍ୱରେ ରାଜ୍ୟପାଳ ସାର୍ ଜନ୍ ଅଷ୍ଟିନ୍ ହବାକ୍ ତତ୍ତ୍ୱାବଧାନରେ ସରକାର ଗଢ଼ିଥିଲେ । ଦାସ-ସରକାର ଗଠିତ ହେବା ପରେ ଓଡ଼ିଶାରେ ୧୯-୭-୧୯୩୭ଠାରୁ ସଂସଦୀୟ ଗଣତନ୍ତ୍ର ଶାସନ ଶୁଭାରମ୍ଭ ହେଲା । ସେତେବେଳେ ବୋଧରାମ ଦୁବେ ଓଡ଼ିଶାର ଶିକ୍ଷା ମନ୍ତ୍ରୀ ହୋଇଥିଲେ । ଦାସ-ସରକାର ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ପଣ୍ଡିତ ନୀଳକଣ୍ଠଙ୍କ ନେତୃତ୍ୱରେ କମିଟି ବସାଇଥିଲେ ।

ରାଜ୍ୟପାଳ ନିଜର ଘରୋଇ କାମରେ ଛୁଟିରେ ଯିବାକୁ ନିଷ୍ପତ୍ତି କଲେ । ତାଙ୍କର ଅନୁପସ୍ଥିତିରେ ରାଜସ୍ୱ ପର୍ଷଦର ସଭ୍ୟ ଡେନ୍ ସାହେବ ରାଜ୍ୟପାଳ ଦାୟିତ୍ୱ ତୁଲାଇବେ ବୋଲି ଆଦେଶ ଆସିଲା । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଙ୍କର ଜଣେ ଅଧସ୍ତନ କର୍ମଚାରୀ ରାଜ୍ୟପାଳ ହେବା ଆଦେଶକୁ ଦାସ ଘୋର ଆପତ୍ତି କଲେ । ଏପରିକି ଡେନ୍ ସାହେବ ତାଙ୍କର ଉପରିସ୍ଥ ଆସନ ଗ୍ରହଣ କଲେ ସେ ଇସ୍ତଫା ଦେଇଦେବେ ବୋଲି ଜଣାଇ ଦେଲେ । ସ୍ୱାଭିମାନୀ ଦାସଙ୍କର ଦୃଢ଼ତା ଯୋଗୁଁ ଉକ୍ତ ନାପସନ୍ଦ ଆଦେଶ ରଦ୍ଦ ହେଲା ।

ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଥରେ ଗୋରା ଅଫିସରମାନଙ୍କୁ ନିଜ ବାସଭବନରେ ଭୋଜି ଦେଲେ । ସେହି ଭୋଜିରେ ଓଡ଼ିଆ-ଖାଦ୍ୟ ପରଷା ଯାଇଥିଲା ଓ ସମସ୍ତେ ତାକୁ ଭୋଜନ କରିଥିଲେ । ଏହିପରି ଦାସ ଓଡ଼ିଶୀ ସଂସ୍କୃତିକୁ

ଗଢ଼ିଥିଲେ। ୧୯୩୯ରେ ପ୍ରତିଭାବାନ୍ ଦାସ–ସରକାର ପ୍ରତିଭା ପୁରୀ ସଭାରେ ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁରଙ୍କୁ ଆମନ୍ତ୍ରଣ ଥିଲେ। ଠାକୁର ଆମ ଓଡ଼ିଶାର ସର୍ବପ୍ରଥମ ସରକାରୀ ଅତିଥି। ସେ ମାସାଧିକ କାଳ ଓଡ଼ିଶାରେ ଆତିଥ୍ୟ ଗ୍ରହଣ କଲେ। ପୁରୀରେ ତାଙ୍କୁ ସରକାର ଅଭ୍ୟର୍ଥନାକରି ଓଡ଼ିଶାର ଗୌରବ ବଢ଼ାଇଲେ। ରାଜାଙ୍କ ଅତ୍ୟାଚାର ଯୋଗୁଁ ଢେଙ୍କାନାଳର ପ୍ରାୟ ୩୦,୦୦୦ ଲୋକ ରାଜ୍ୟ ଛାଡ଼ି ଅନୁଗୁଳରେ ଆଶ୍ରୟ ନେଲେ। ସେତେବେଳେ ଓଡ଼ିଶାର ଆୟ ମାତ୍ର ଏକ କୋଟି ବାସ୍ତରି ଲକ୍ଷ ଟଙ୍କା, ଯାହାକି ଗୋଟିଏ ନିଗମର ଆୟଠାରୁ ମଧ କମ୍। ତଥାପି ଦୟାପରାୟଣ ଦାସ–ସରକାର ଏତେ ଆଶ୍ରିତ ପ୍ରାଣୀଙ୍କୁ ସମ୍ଭାଳି ଥିଲେ।

ଦ୍ୱିତୀୟ ପୃଥିବୀ ମହାସମରରେ ଭାରତର ଯୋଗଦାନକୁ ସମର୍ଥନ କରିନପାରି ପ୍ରତିବାଦ ସ୍ୱରୂପ ୬–୧୧–୧୯୩୯ରେ ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେଲେ। ୧୯୫୦ରେ ସେ ଓଡ଼ିଶା କଂଗ୍ରେସର ସଭାପତି ହୋଇଥିଲେ। ପ୍ରଥମ ସାଧାରଣ ନିର୍ବାଚନରେ ଉତ୍ତର–ଗଞ୍ଜାମରେ ସେ ଲୋକସଭାକୁ ପ୍ରାର୍ଥୀ ହେଲେ। ମାତ୍ର ନିଜ ନିର୍ବାଚନ ମଣ୍ଡଳୀ ପ୍ରତି ବିଶେଷ ଦୃଷ୍ଟି ନଦେଇ ସାରା ଓଡ଼ିଶା ପ୍ରତି ଦୃଷ୍ଟି ଦେବାରୁ ସ୍ୱାଧୀନ ପ୍ରାର୍ଥୀ ଉମାଚରଣ ପଟ୍ଟନାୟକଙ୍କ ଦ୍ୱାରା ପରାଜିତ ହେଲେ। ପୁଣିଥରେ ସେ ପି: ସି: ସି: ସଭାପତି ପଦରୁ ଇସ୍ତଫା ଦେଇଥିଲେ: ମାତ୍ର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଓ ଆଉ କେତେଙ୍କ ଅନୁରୋଧରେ ସେ ତାହା ପ୍ରତ୍ୟାହାର କଲେ। ସେ ସାମ୍ବିଧାନିକ ସଭାର ସଭ୍ୟ ହୋଇଥିଲେ ଓ ୧୯୫୨ରେ ରାଜ୍ୟ ସଭାର ସଭ୍ୟ ହେଲେ। ପଣ୍ଡିତ ନେହେରୁ କ୍ୟାବିନେଟରେ ଡଃ ହରେକୃଷ୍ଣ ମହତାବଙ୍କୁ ସ୍ଥାନ ଦେଲେ ନାହିଁ। ଆଶାଥିଲା ୧୯୫୭ରେ ପଣ୍ଡିତ ନେହେରୁ ସତ୍ୟବାଦୀ ବିଶ୍ୱନାଥ ଦାସଙ୍କୁ କ୍ୟାବିନେଟରେ ନେବେ, କିନ୍ତୁ ଦାସ କ୍ୟାବିନେଟରେ ସ୍ଥାନ ପାଇଲେ ନାହିଁ।

୧୯୫୪ରେ ଇଲାହାବାଦରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ବସିଥିଲା। ହିନ୍ଦୁ କୋଡ଼ ବିଲ୍‌କୁ ସମର୍ଥନ କରିବା ସଭାରେ କଂଗ୍ରେସ–ସଭାପତି ପଣ୍ଡିତ ନେହେରୁ ଅନୁରୋଧ କଲେ। ବମ୍ବେର ମୁଖ୍ୟମନ୍ତ୍ରୀ ମାନ୍ୟବର ମୋରାରଜୀ ଦେଶାଇ ସମର୍ଥନ କଲେ। ବିନା ବିଚାରରେ ଅନ୍ଧ ଭାବରେ ସେହି ବିଲ୍‌କୁ ସମର୍ଥନ କରିବା ଉଚିତ ନୁହେଁ ବୋଲି ସତ୍ୟବାଦୀ ବିଶ୍ୱନାଥ ଦାସ ମତପ୍ରଦାନ କଲେ। ପ୍ରଥମ ସାଧାରଣ ନିର୍ବାଚନ ଇସ୍ତାହାରରେ ଏହା ସ୍ଥାନ ପାଇ ଜାତିର ସମର୍ଥନ ଲାଭକରିଛି ବୋଲି ନେହେରୁ ଉତ୍ତର ଦେବା ସଙ୍ଗେ ସଙ୍ଗେ ଏପରି ଲୋକ କଂଗ୍ରେସ ଛାଡ଼ି ଯିବା ଉଚିତ ବୋଲି ଉତ୍କ୍ଷିପ୍ତ ହୋଇ କହିପକାଇଲେ। ସେ ସମୟରେ ପଣ୍ଡିତ ନେହେରୁଙ୍କର ଯେକୌଣସି କଥାକୁ ବିରୋଧ କରିବାକୁ ସତ୍ୟନିଷ୍ଠ ଦାସଙ୍କ ବ୍ୟତୀତ କଂଗ୍ରେସରେ ଆଉ କେହି ନଥିଲେ। ପରେ ବିଶ୍ୱନାଥ ଦାସ ମୋରାରଜୀ ଦେଶାଇଙ୍କୁ ଉକ୍ତ ଇସ୍ତାହାର ଦେଖାଇଲେ ଯେଉଁଥିରେ ହିନ୍ଦୁକୋଡ଼ ବିଲ୍ କଥା ଆଦୌ ନଥିଲା। ସୁତରାଂ ଦେଶାଇ ଦୁଃଖ ପ୍ରକାଶ କଲେ।

୧୯୬୨ରେ ଚୀନ୍ ଭାରତ ଆକ୍ରମଣ କଲା। ବିଶ୍ୱନାଥ ଦାସ ଉତ୍ତର ପ୍ରଦେଶର ରାଜ୍ୟପାଳ ଥାଇ ମଧ ତିବ୍ବତ ଉପରେ ଚୀନର ସାର୍ବଭୌମତ୍ୱକୁ ସ୍ୱୀକୃତି ପ୍ରଦାନ କରି ଭାରତ ଭୁଲକରିଛି ବୋଲି ସ୍ପଷ୍ଟ ମତପ୍ରଦାନ କରିଥିଲେ। ସେ ହେଉଛନ୍ତି ଦ୍ୱିତୀୟ ଓଡ଼ିଆ ରାଜ୍ୟପାଳ। ଲକ୍ଷ୍ନୌର ରାଜଭବନରେ ଓଡ଼ିଆ ଜାତିର ସ୍ୱତନ୍ତ୍ର ଖାଦ୍ୟ କାଞ୍ଜି ରନ୍ଧନ ଓ ପରିବେଷଣର ବ୍ୟବସ୍ଥାକରି ଓଡ଼ିଶୀ ସଂସ୍କୃତିର ଗୌରବ ବଢ଼ାଇଥିଲେ।

## ମାନବ ସେବା :

ମୁଖ୍ୟମନ୍ତ୍ରୀ ପଦପାଇଁ ନିର୍ବାଚନ ପୂର୍ବରୁ ପ୍ରସ୍ତୁତି, ପରିଶ୍ରମ, ସଙ୍ଗଠନ, ପ୍ରତିଶ୍ରୁତି, କୂଟନୀତି ଓ ପ୍ରଲୋଭନର ଆଶ୍ରୟ ନେବାକୁ ପଡ଼େ। ମାତ୍ର ୩–୪–୧୯୭୧ରେ ଉତ୍କଳ କଂଗ୍ରେସ, ସ୍ୱତନ୍ତ୍ର ଓ ଝାଡ଼ଖଣ୍ଡ ଦଳ ନିର୍ଦ୍ଦଳୀୟ ଦାସଙ୍କୁ ମୁଖ୍ୟମନ୍ତ୍ରୀ ଆସନରେ ବସାଇଲେ। ସେହି ବର୍ଷ ଓଡ଼ିଶାରେ ଭୟଙ୍କର ବନ୍ୟା ଓ ବାତ୍ୟା ହୋଇ ସମୁଦ୍ର କୂଳ ଲଙ୍ଘନକଲା ଓ ଯୋଗାଯୋଗ ବିଚ୍ଛିନ୍ନ ହୋଇଗଲା। ୧୯୭୧ ଅକ୍ଟୋବର ଶେଷ ସପ୍ତାହରେ ଓଡ଼ିଶାରେ ବାତ୍ୟା ହେବ ବୋଲି ବିଶାଖାପାଟଣାର ରାଡ଼ର ବାତ୍ୟାର ଗତି ନିର୍ଣ୍ଣୟ କରିପାରିଥିଲା। ମାତ୍ର ଦୁର୍ଭାଗ୍ୟ କଥା–ରାଡ଼ର ବିହୀନ ଓଡ଼ିଶାକୁ ଏହି ସମ୍ବାଦ ଦିଆଗଲାନାହିଁ। ସେହି ଝଡ଼ ବର୍ଷାରେ ମୁଖ୍ୟମନ୍ତ୍ରୀ ଦାସ କଟକ ରେଡ଼ିଓ ଷ୍ଟେସନରେ ଉପସ୍ଥିତ ହୋଇ ରେଡ଼ିଓ ମାଧ୍ୟମରେ ଅର୍ଥ ମଞ୍ଜୁରିକୁ ଅପେକ୍ଷା ନକରି ଟ୍ରେଜେରିରୁ ଟଙ୍କା ନେଇ ଖର୍ଚ୍ଚକରି ଲୋକଙ୍କୁ ଆଗେ ଉଦ୍ଧାର କରିବାକୁ କଲେକ୍ଟରମାନଙ୍କୁ ବାରମ୍ବାର ଅନୁରୋଧ କଲେ। ଓଡ଼ିଶାରେ ଥିଲେ ମଧ ଏହାର ମୁଖ୍ୟ କାର୍ଯ୍ୟାଳୟ କଲିକତାରେ ଅବସ୍ଥିତ। କଲିକତା ନଗରୀ ସହିତ ଏହି ରେଳପଥର କୌଣସି ସମ୍ପର୍କ ନାହିଁ। ଏହାର ମୁଖ୍ୟ କାର୍ଯ୍ୟାଳୟ ଓଡ଼ିଶାକୁ ଆସୁ ବୋଲି ୬–୪–୧୯୭୨ରେ ଓଡ଼ିଶା ବିଧାନ ସଭାରେ ପ୍ରସ୍ତାବ ଗୃହୀତ ହେଲା। ମୁଖ୍ୟମନ୍ତ୍ରୀ ଦାସ ଏହି କାର୍ଯ୍ୟାଳୟ ନିମନ୍ତେ ଜମି ଯୋଗାଇ ଦେବେ ବୋଲି ଜଣାଇଥିଲେ ଓ ରେଳବାଇ ମନ୍ତ୍ରୀଙ୍କର ସହାନୁଭୂତି ଆକର୍ଷଣ କରିଥିଲେ।

୧୯୭୧ରେ ବିଶ୍ୱନାଥ ଦାସ ବିଧାନ ସଭାର ସଭ୍ୟନଥାଇ ମୁଖ୍ୟମନ୍ତ୍ରୀ ହୋଇଥିଲେ। ସେ ପ୍ରସ୍ତାବ ଦେଇଥିଲେ ଯେ ନଦୀରେ ପୋଲ ତିଆରି ବେଳେ ଏପରି ପୋଲନିର୍ମିତ ହେଉ, ଯେପରି ପୋଲ ସହ ଆନିକଟ ମଧ ତିଆରି ହୋଇ ପାରିବ ଓ ଜଳ ସେଚନର ସୁବିଧା ହେବ। କିନ୍ତୁ ଆଜି ପର୍ଯ୍ୟନ୍ତ ଯନ୍ତ୍ରୀମାନେ ଏପରି ଗବେଷଣା କରିନାହାନ୍ତି। ଏହା ସମ୍ଭବ ହେଲେ ଅଳ୍ପ ଖର୍ଚ୍ଚରେ ଆନିକଟ ନିର୍ମିତ ହୋଇ ଜଳ ସେଚନର ସୁବିଧା ମିଳନ୍ତା।

ସେ ଉତ୍ତର ପ୍ରଦେଶର ରାଜ୍ୟପାଳ ଥିଲାବେଳେ ହିନ୍ଦୀରେ ଭାଷଣ ପାଠ କରିବାକୁ ସଭ୍ୟବୃନ୍ଦ ପ୍ରବଳ ଦାବୀ କଲେ। ଇଂରାଜୀରେ ମୁଦ୍ରିତ ଅଭିଭାଷଣର ଗୋଟିଏ ମାତ୍ର ଅନୁଚ୍ଛେଦ ରାଜ୍ୟପାଳ ଦାସ ହିନ୍ଦୀରେ ପାଠକରି ଟେବୁଲ ଉପରେ ରଖିଦେଇ ବାଚସ୍ପତିଙ୍କ ନିକଟରେ ରାଜ୍ୟପାଳଙ୍କ ପ୍ରତି ଉଦ୍ଦିଷ୍ଟ ଆସନରେ ବସି ପଡ଼ିଲେ ଓ ପରେ ଗୃହଛାଡ଼ି ଚାଲିଗଲେ।

ସେ ଭାରତର ଲୋକ ସେବକ ମଣ୍ଡଳର ଅଧ୍ୟକ୍ଷ ହୋଇଥିଲେ। ପୁରୀରେ ବେଦଭବନର ସେ ପ୍ରତିଷ୍ଠାତା। ତାଙ୍କର ବ୍ରତ ଥିଲା–ମାନବ ସେବା ହିଁ ମାଧବ ସେବା। ସେ ୧୯୮୪ ମସିହାରେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ।

ଅବସରପ୍ରାପ୍ତ ସ୍କୁଲ ସମୂହର ଅନୁନିରୀକ୍ଷକ,
କୃଷ୍ଣାକୁଞ୍ଜପଡ଼ା–୧୧, ପୁରୀଧାମ–୭୫୨୦୦୧।

# ଗ୍ରାମ ପ୍ରଶାସନ : ପଞ୍ଚାୟତିରାଜ

ରମାକାନ୍ତ ରାଉତ

ସ୍ଥାନୀୟ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ଅର୍ବାଚୀନ ନୁହେଁ । ଏହା ଭିନ୍ନ ରୂପରେ ହେଲେ ହେଁ ଭାରତରେ ପ୍ରଚଳିତ ଥିଲା । ପଞ୍ଚାୟତ ପ୍ରଥା ବା ଗାଉଁଲି ସରକାର ବ୍ୟବସ୍ଥା ଖୁବ୍ ପୁରୁଣା । ବହୁ ଝଡ଼ ଝଞ୍ଜା ସତ୍ତ୍ୱେ ବି ତାହା ତିଷ୍ଠି ରହିଛି । ସବୁ କାଳରେ ଗ୍ରାମ ଅବହେଳିତ ହୋଇ ଗ୍ରାମ୍ୟ ସମାଜ, ଗ୍ରାମ୍ୟ ଅର୍ଥନୀତି ଓ ଗ୍ରାମ୍ୟ ଜୀବନ ବିଭିନ୍ନ ଭାବେ ନିଷ୍ପେଷଣରେ ଶରବ୍ୟ ହୋଇଛି । ଆଲେକ୍‌ଜାଣ୍ଡାର, ସେଲ୍ୟୁକସ୍, ଦେରାୟସ, ମାମୁଦ, ମହମ୍ମଦ, ତୈମୁର ଓ ଚେଙ୍ଗିସ୍ ଏବଂ ପରିଶେଷରେ ଫରାସୀ ଓ ଇଂରେଜ ଏ ଦେଶର ଲୋକଙ୍କ ଉପରେ କମ୍ ଜୁଲମ କରିନାହାନ୍ତି । କୃଷକର କ୍ଷେତ ଉଜୁଡ଼ିଛି ଗାଁଗଣ୍ଡା ପୋଡ଼ି ଛାରଖାର ହୋଇଛି । ହତ୍ୟା, ଲୁଣ୍ଠନ, ଧର୍ଷଣ ଓ ରକ୍ତପାତରେ ଗ୍ରାମ୍ୟ ଜୀବନ ବାରମ୍ବାର ଉଚ୍ଛନ୍ନ ହୋଇଛି । ଏପରିକି ମରହଟ୍ଟା ବର୍ଗୀ ଓ ଭାସ୍କର ପଣ୍ଡିତଙ୍କ ନାଁ ଶୁଣିଲେ ଓଡ଼ିଶାର ପୁରପଲ୍ଲୀରେ ତାଟିକବାଟ ପଡ଼ି ଯାଉଥିଲା । ସୈନ୍ୟମାନଙ୍କର ଅଶ୍ୱଙ୍କ ଚଢ଼ାଉ ଓ ପୈଶାଚିକ ତାଣ୍ଡବଲୀଳାଦି ଗ୍ରାମକୁ ଅନ୍ତଃସାର ଶୂନ୍ୟ କରି ଦେଉଥିଲା । ବାବର ଗାଁ ଲୋକଙ୍କ ବିଷୟରେ କହିଛନ୍ତି : "Peasants and people of low standing go about naked ସେହିପରି Ralph Fitch ୧୬ଶ ଶତାବ୍ଦୀରେ ବନାରସର ଜଣେ ଗାଉଁଲି କୃଷକକୁ ଦେଖି ମନ୍ତବ୍ୟ କରିଛନ୍ତି : The people go naked save a little cloth bound about their middle body " କୌପିନୀ ପରି କମରରେ କନା ଲୁଗା ବାନ୍ଧିଥିବା ଲୋକଟିଏ ଦେଖିଲେ ଲଙ୍ଗଳା ବୋଲି ଆଉ କ'ଣ କୁହାଯିବ ? ଏସବୁ ଦୁର୍ଦ୍ଦିନ, ଦୁର୍ବିପାକ ଓ ଦାରିଦ୍ର୍ୟ ସତ୍ତ୍ୱେ ଗ୍ରାମ୍ୟ ଜୀବନ ତିଷ୍ଠି ରହିଛି; ଗ୍ରାମ୍ୟ ସଂସ୍କୃତି ଗ୍ରାମ୍ୟ ପରମ୍ପରା ବଞ୍ଚି ରହିଛି ।

ଭାରତୀୟ ଗ୍ରାମ୍ୟ ଜୀବନ, ତା' ଅର୍ଥନୀତି, ସମାଜନୀତି ଓ ଶାସନ ବ୍ୟବସ୍ଥାର ଅଦଳ ବଦଳ, ଉତ୍ଥାନ ପତନ ସେମିତି ନିରବଧି ଚାଲିଛି । ଉତ୍ପତ୍ ମଧ୍ୟରେ ପଞ୍ଚାୟତ ବ୍ୟବସ୍ଥା ଅଧାମରା, ଅଧାଜୀବନ୍ତ ହୋଇ ବଞ୍ଚିଛି । ବୈଦିକ ଯୁଗରୁ ଧର୍ମୀୟ ପୌରାଣିକ ଯୁଗ ଏବଂ ତତ୍‌ପରେ ମୌର୍ଯ୍ୟଗୁପ୍ତ ଶାସନରୁ ଶେରସାହ, ଆକବର ଓ ଶିବାଜୀଙ୍କ ଶାସନରେ ଗ୍ରାମ୍ୟ ସଭା, ଗ୍ରାମ ପଞ୍ଚାୟତ କାର୍ଯ୍ୟ କରିବାର ନଜିର ଇତିହାସରେ ଅଛି । କିନ୍ତୁ ଏବେ ଯେଉଁ ଚେହେରା ଧରି ସେ ଦେଖା ଦେଇଛି ତା'ର ଅସମାରମ୍ଭ ବୋଧହୁଏ ବ୍ରିଟିଶ୍ ଶାସନ କାଳରେ ଘଟିଛି । ଗ୍ରାମ୍ୟ ସ୍ୱାୟତ୍ତ ଶାସନ ବା ନଗର ପ୍ରଶାସନ ପ୍ରାକ୍ ବ୍ରିଟିଶ୍ ଯୁଗରେ ବୋଧହୁଏ ଏପରି ଭାବେ ନଥିଲା । ତାହା ମଧ୍ୟ ଖୁବ୍ ବେଶୀ ଦିନର ନୁହେଁ । ୧୯୩୦ ମସିହାରେ "The Indian Statutory Commission"ଙ୍କ ରିପୋର୍ଟରେ ଉଲ୍ଲେଖ କରାଯାଇଛି : "Local self Government in India, in the sence of a representative organization and taxation and functioning both as a school for training in responsibility and as a vital link in the chain of organism that make up Government of the country is British Creation."

ପୁରାତନ ଭାରତୀୟ ଗ୍ରାମ ପ୍ରଶାସନ ବଂଶାନୁକ୍ରମିକତା ଓ ଜାତି ତଥା ବର୍ଣ୍ଣବୈଷମ୍ୟ ସଂକୀର୍ଣ୍ଣତାରେ କ୍ରମେ ଅଥର୍ବ ହୋଇଯାଇଥିଲା । ସମାଜର ଉଚ୍ଚ ସୋପାନରେ ଅଧିଷ୍ଠିତ ଏ ପଞ୍ଚପୁରୁଷ ବା ପ୍ରତିନିଧିମାନେ ଆଧୁନିକ ରାଜନୀତିଜ୍ଞ ବା ପ୍ରଶାସନିକ ପଦ୍ଧତିର ସତର୍କ ନାଗରିକ ନଥିଲେ । ଧର୍ମ ଓ ନୈତିକତାର ମାନଦଣ୍ଡରେ ଏହା ପର୍ଯ୍ୟବସିତ ଥିଲା । ୧୬୮୭ ମସିହାରେ ଏହା ମାନ୍ଦ୍ରାଜରେ ଆରମ୍ଭ ହେଲା । ସେତେବେଳେ ଏହାକୁ ବ୍ରିଟିଶ୍ କମ୍ପାନୀର ଏକ ଉପନିବେଶିକ ଆୟୁଧ ବୋଲି କେହି କେହି ମନେ କରିଥିଲେ । ଲର୍ଡ଼ ରିପନଙ୍କ ଅବଦାନ ସ୍ୱାୟତ୍ତ ଶାସନ ଇତିହାସରେ ଅନନ୍ୟ ସାଧାରଣ । କିନ୍ତୁ ବିଳମ୍ବରେ ଏହା ଗ୍ରାମାଭିମୁଖୀ ହେଲା ।

୧୯୦୭ ମସିହାରେ "Royal Commission"ଙ୍କ ସୁପାରିଶ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏଥିରେ ସ୍ପଷ୍ଟ ଭାବେ ଉଲ୍ଲେଖ କରାଯାଇଥିଲା ଯେ, ସ୍ୱାୟତ୍ତଶାସନର ସହର ଶାଖା ହେଉଛି ପୌର ସଂସ୍ଥା ବା ମ୍ୟୁନିସିପାଲିଟି । ମ୍ୟୁନିସିପାଲିଟି ନିର୍ବାଚିତ ସଭ୍ୟ ରହିବେ ଯଦିଓ ଜିଲ୍ଲା ବୋର୍ଡ଼ର ଅଧ୍ୟକ୍ଷ ଭାବେ ଜିଲ୍ଲା କଲେକ୍ଟର ଅବସ୍ଥାପିତ ହେବେ । ଗ୍ରାମ ସ୍ୱାୟତ୍ତ ଶାସନ ସଂସ୍ଥାର ନାମ ପଞ୍ଚାୟତ ରଖାଯାଇଥିଲା । ସୁପାରିଶରେ ସେଇ ପ୍ରସଙ୍ଗରେ କୁହାଯାଇଛି :

"The village should be regaded as the basic unit of local self Government institutions and every village should have a Panchayat." ଭାରତ ସରକାରଙ୍କ ୧୯୧୯ ମସିହାର ଐତିହାସିକ ଆଇନ୍ ବଳରେ ପ୍ରତିନିଧି ମୂଳକ ସରକାର ଗଠନର ମାର୍ଗ ସୁଗମ ହେଲା । ସ୍ୱାୟତ୍ତଶାସନର ନୂଆ ଅଧ୍ୟାୟ ଆରମ୍ଭ ହେଲା । ପୁନଶ୍ଚ ଭାରତ ସରକାରଙ୍କ ୧୯୩୫ ଓ ୧୯୪୭ ଆଇନ୍‌ରେ ଏହାର ଆଉ କେତେକ ସଂସ୍କାର କରାଗଲା । ଏହି ଭାବେ ପ୍ରତିନିଧି ମୂଳକ ଶାସନ ବ୍ୟବସ୍ଥାକୁ ବଳବତ୍ତର କରାଯାଇ

ପରୋକ୍ଷ ଭାବେ ଭାରତୀୟମାନଙ୍କୁ କେତେକ ରାଜନୈତିକ ଅଧିକାର ମିଳିଲା ଯଦିଓ ସେ ସବୁର ଅଙ୍କୁଶ ବ୍ରିଟିଶ୍ ପାର୍ଲାମେଣ୍ଟ ହାତରେ ଥିଲା ।

ଭାରତ ସ୍ୱାଧୀନ ହେବା ପରେ ସ୍ୱାୟତ୍ତଶାସନ ବ୍ୟବସ୍ଥା ନୂଆ ମୋଡ଼ ନେଲା । ୧୯୪୮ ମସିହାରେ ଆୟୋଜିତ ଏକ ଜାତୀୟ ସମ୍ମେଳନରେ ଅଧ୍ୟକ୍ଷତା ତଥା ତତ୍କାଳୀନ କେନ୍ଦ୍ର ସ୍ୱାସ୍ଥ୍ୟ ମନ୍ତ୍ରୀ ଅମୃତ କୁମାର ଏହାକୁ ପ୍ରଥମ ଜାତୀୟ ସମ୍ମେଳନ ନାମରେ ଅଭିହିତ କରିଥିଲେ । ଶାସନ ବିକେନ୍ଦ୍ରୀକରଣର ମୂଳାଧାର ସ୍ୱାୟତ୍ତଶାସନ, ଯାହା ଗଣତନ୍ତ୍ରର ସଫଳତା ନିମନ୍ତେ ଭିତ୍ତି ସ୍ଥାପନ କରେ । ଏହି ନୂତନ ବ୍ୟବସ୍ଥାର ନିର୍ମାଣ ରୂପେ ତତ୍କାଳୀନ ସ୍ୱାୟତ୍ତଶାସନ ମନ୍ତ୍ରୀ ଡି. ପି. ମିଶ୍ରଙ୍କ ଅବଦାନ ଅବିସ୍ମରଣୀୟ । ୧୯୫୬ ମସିହାରେ ଭାରତ ସରକାର ଗୋଷ୍ଠୀ ଉନ୍ନୟନ ମନ୍ତ୍ରଣାଳୟ ବା Ministry of Community Development ଗଠନ କଲେ । ଏଥି ସଙ୍ଗେ ପଞ୍ଚାୟତ ରାଜିନାମାରେ ଏକ ନୂଆ ବିଭାଗ ରହିଲା । ପରେ ସମବାୟକୁ ମଧ୍ୟ ଏଥିରେ ସାମିଲ କରାଗଲା । ପରାମର୍ଶ ନିମନ୍ତେ ଏକ ଉଚ୍ଚସ୍ତରୀୟ Consultative Committee ଗଢ଼ାଗଲା ।

ଭାରତ ସମ୍ବିଧାନ ୪୦ ଧାରାରେ ଲେଖା ଯାଇଛି : ''The State shall take steps to organise village Panchayats and endow them with such powers and authority as may be necessary to enable them to function as *units of Self Government*'' ତେଣୁ ପୁରୁଣା ଜିଲ୍ଲା ବୋର୍ଡ଼ ସ୍ଥାନରେ ଗ୍ରାମ ସ୍ୱାୟତ୍ତ ଶାସନ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରାଗଲା । ଗାନ୍ଧିଜୀ ତାଙ୍କ ଭାଷାରେ ଏହାକୁ "ଗ୍ରାମ ସ୍ୱରାଜ" ବୋଲି ନାମିତ କରିଥିଲେ । "ଗ୍ରାମ ସ୍ୱରାଜ"ର ଅର୍ଥ ଗ୍ରାମର ସର୍ବାଙ୍ଗୀନ ଉନ୍ନତି । ଏହାର ଲକ୍ଷ୍ୟ ଥିଲା ସ୍ୱାୟତ୍ତ ଶାସନ ବ୍ୟବସ୍ଥାକୁ ସର୍ବନିମ୍ନ ସ୍ତରରେ କାର୍ଯ୍ୟକାରୀ କରି ଶାସନର ବିକେନ୍ଦ୍ରୀକରଣ ଘଟାଇବା । ଗ୍ରାମ ପଞ୍ଚାୟତ ଏହି ବ୍ୟବସ୍ଥାର ସର୍ବନିମ୍ନ ପ୍ରତିଷ୍ଠାନ । ପଞ୍ଚାୟତ ବ୍ୟବସ୍ଥା ହିଁ ଗ୍ରାମ ବିକାଶ କାର୍ଯ୍ୟକ୍ରମ । ସମନ୍ୱିତ ଗ୍ରାମ ବିକାଶରେ ପଞ୍ଚାୟତର ଭୂମିକା, ଲୋକଙ୍କ ଉପରେ ତା'ର ପ୍ରଭାବ, ଯୋଜନା, ଅର୍ଥ ବିନିଯୋଗ ବ୍ୟବସ୍ଥା ଓ ଏ ଦିଗରେ ନେତୃତ୍ୱର ପ୍ରଭାବ ଇତ୍ୟାଦି ସାମ୍ପ୍ରତିକ ଭାରତରେ କି ପ୍ରଭାବ ପକାଇଛି ସେ ସବୁ ସମୀକ୍ଷାର ବିଷୟ । ସ୍ୱାଧୀନତା ପରେ ପ୍ରଥମେ ୧୯୪୯ ମସିହାରେ ଉତ୍ତର ପ୍ରଦେଶ ପଞ୍ଚାୟତିରାଜ ବ୍ୟବସ୍ଥାକୁ କାର୍ଯ୍ୟକାରୀ କଲେ । ଏହା ଗ୍ରାମ ପଞ୍ଚାୟତ, କ୍ଷେତ୍ର ସମିତି ଓ ଜିଲ୍ଲା ପରିଷଦ – ଏଇ ତିନି ଥାକିଆ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ରୂପେ କାର୍ଯ୍ୟ କଲା । ଗ୍ରାମ ହେଉଛି ଗୋଷ୍ଠୀ ଜୀବନର ସର୍ବପ୍ରାଚୀନ ଓ ସର୍ବନିମ୍ନ ପ୍ରଶାସନିକ ବିଭାଗ । ଶତାବ୍ଦୀ ଶତାବ୍ଦୀ ଧରି ତାହା ବହୁ ଘାତ ପ୍ରତିଘାତ ମଧ୍ୟରେ ଗତିକରି ଜୀବନ୍ମୃତ ଅବସ୍ଥାରେ ତିଷ୍ଠି ରହିଛି । ତେଣୁ ଭାରତୀୟ ଗଣତନ୍ତ୍ରର ଯେକୌଣସି ମୂଳଦୁଆ ପକାଇବାକୁ ହେଲେ ଗାଁକୁ ଅଗ୍ରାଧିକାର ଦିଆଯିବ । ଗାନ୍ଧିଜୀ ତେଣୁ ଗ୍ରାମୋଦ୍ୟୋଗ ଓ ଖଦୀ ପ୍ରସଙ୍ଗରେ କହିଥିଲେ ''If we want 'Swaraj' to be built on non-violence we will have to give the villages their proper share.'' ତେଣୁ ଏଇ ଶାସନ ବିକେନ୍ଦ୍ରୀକରଣ ବ୍ୟବସ୍ଥାର ପୁରୋଭାଗରେ ଜନସାଧାରଣଙ୍କୁ ସାମିଲ କରି ସେମାନଙ୍କ ସକ୍ରିୟ ସହଯୋଗରେ ଗ୍ରାମ ପୁନର୍ଗଠନ ଓ ଗ୍ରାମ ସଂଗଠନକୁ ସଫଳ କରିବାକୁ ହେବ ।

ଜାତୀୟ ସମ୍ପ୍ରସାରଣ ଓ ଗ୍ରାମ ଗୋଷ୍ଠୀ ଉନ୍ନୟନ ଯୋଜନାର କାର୍ଯ୍ୟକଳାପ ଅଧ୍ୟୟନ କରି ରିପୋର୍ଟ ପେସ୍ କରିବା ସକାଶେ ଭାରତ ସରକାର ୧୯୫୬ ମସିହାରେ ଏକ ଅନୁଧ୍ୟାନକାରୀ ଦଳ ଗଠନ କରିଥିଲେ । ବଳବନ୍ତ ରାୟ ମେହେଟ୍ଟା ଉକ୍ତ କମିଟିର ଚେୟାରମେନ୍ ଥିଲେ । ତେଣୁ ଏହି କମିଟିର ନାମ ଥିଲା ବଳବନ୍ତ ରାୟ ମେହେଟା କମିଟି ବା ସଂକ୍ଷେପରେ "ମେହେଟ୍ଟା କମିଟି" । ଉକ୍ତ କମିଟି ବାସ୍ତବରେ ଆଧୁନିକ ସ୍ୱାୟତ୍ତ ଶାସନ ବା ପଞ୍ଚାୟତ ପ୍ରଥାର ଆଦିପ୍ରବକ୍ତା କମିଟି ଗଠନର ମୂଳ ଲକ୍ଷ୍ୟ ଥିଲା : ଗ୍ରାମ ଗୋଷ୍ଠୀ ଯୋଜନା ଓ ସମ୍ପ୍ରସାରଣ ସେବାର ଅର୍ଥନୀତିକ ବ୍ୟବସ୍ଥା ତଥା ଅନ୍ୟାନ୍ୟ କାର୍ଯ୍ୟକ୍ରମ ସମ୍ପାଦନରେ ଏହାର ଦକ୍ଷତା ଏବଂ ବିବିଧ କ୍ଷେତ୍ରୀୟ କାର୍ଯ୍ୟକଳାପ ଯଥା, କୃଷି ଉତ୍ପାଦନ, ବିଭିନ୍ନ ମନ୍ତ୍ରଣାଳୟ ମଧ୍ୟରେ ସମନ୍ୱୟ ସଂସ୍ଥାପନ, ରାଜ୍ୟ ସରକାର ତଥା ସେମାନଙ୍କ ଅଭିକର୍ତ୍ତୃକ ସଂସ୍ଥା ମଧ୍ୟରେ ସଂହତି ସ୍ଥାପନ ଓ ତତ୍ତୁଲ୍ୟ କାର୍ଯ୍ୟାବଳିର ସମୀକ୍ଷାଦି । ଏସବୁ ଅନୁଧ୍ୟାନ କରି ଉକ୍ତ କମିଟି ୧୯୫୭ ମସିହାରେ ଏକ ରିପୋର୍ଟ ଦାଖଲ କଲେ । ଏହି ରିପୋର୍ଟକୁ ଭାରତ ସରକାର ଗ୍ରହଣ କରି ସମଗ୍ର ଦେଶରେ ପଞ୍ଚାୟତିରାଜ ବ୍ୟବସ୍ଥାକୁ ଲାଗୁ କଲେ । ପଞ୍ଚାୟତିରାଜ ଏକ ତ୍ରିମୁଖୀ ବ୍ୟବସ୍ଥା ବା ଗ୍ରାମ ସ୍ୱାୟତ୍ତଶାସନ ପ୍ରତିଷ୍ଠାନ । ଗ୍ରାମ ସ୍ତରରେ ପଞ୍ଚାୟତ ବ୍ଲକ୍ ବା ଥାନା ସ୍ତରରେ ପଞ୍ଚାୟତ ସମିତି ଓ ଜିଲ୍ଲା ସ୍ତରରେ ଜିଲ୍ଲାପରିଷଦ କାର୍ଯ୍ୟକରେ । ନିର୍ବାଚିତ ପ୍ରତିନିଧିମାନେ ଏଥିରେ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି ଗ୍ରାମ ନେତୃତ୍ୱ ବିକାଶ ଓ ସମନ୍ୱିତ ଗ୍ରାମ ଉନ୍ନୟନ ବ୍ୟବସ୍ଥାକୁ ଅଧିକ ସକ୍ରିୟ କରିବାରେ ପଞ୍ଚାୟତିରାଜ ଅଗ୍ରଭୂମିକା ଗ୍ରହଣ କରିବ ବୋଲି ଲକ୍ଷ୍ୟ ରଖାଯାଇଥିଲା । ୧୯୭୬ ମସିହାରେ ଆଇ.ଆର୍.ଡି.କୁ ଏକ କେନ୍ଦ୍ରୀୟ ବିଷୟ ରୂପେ ଗ୍ରହଣ କରାଗଲା ।

୧୯୭୮ ମସିହାରେ ପୂର୍ବତନ ଯୋଜନା ବୋର୍ଡ଼ ଉପାଧ୍ୟକ୍ଷ ଅଶୋକ ମେହେଟାଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରାଗଲା । ପଞ୍ଚାୟତିରାଜର କାର୍ଯ୍ୟକଳାପ ଅନୁଧ୍ୟାନ ଉକ୍ତ କମିଟିର ଲକ୍ଷ୍ୟ ଥିଲା । କମିଟିଙ୍କ ସୁପାରିଶ ଅନୁଯାୟୀ ଗ୍ରାମ ବିକାଶରେ ଏକ ସଫଳ ଭୂମିକା ଗ୍ରହଣ ନିମନ୍ତେ ପଞ୍ଚାୟତିରାଜକୁ ସ୍ୱୀକୃତି ମିଳିଲା । ମେହେଟା କମିଟି ପଞ୍ଚାୟତିରାଜକୁ ପୁନରୁଜ୍ଜୀବିତ କରିବା ନିମନ୍ତେ ୧୩୨ଟି ଅନୁମୋଦନ କରିଥିଲେ । ଉକ୍ତ ଅନୁମୋଦନଗୁଡ଼ିକ ଅତି ଉପାଦେୟ । ଏହା ଦ୍ୱାରା ପଞ୍ଚାୟତ ବ୍ୟବସ୍ଥାର ଅର୍ଥନୈତିକ ଉନ୍ନତି ନିମନ୍ତେ କେତେକ ଗଠନ ମୂଳକ ପ୍ରସ୍ତାବ ଦିଆଯାଇଥିଲା ଓ ଏହା ଯେପରି ଜନସେବାରେ ନିୟୋଜିତ ହୋଇ ଆଇ.ଆର୍.ଡି.ର ସଫଳତା ଓ ଗ୍ରାମ ନେତୃତ୍ୱ ବିକାଶରେ ସକ୍ରିୟ ଭୂମିକା ଗ୍ରହଣ କରିପାରିବ ସେ ଦିଗରେ ସତର୍କ ଦୃଷ୍ଟି ରଖାଯାଇଥିଲା ।

ଗୋଟିଏ ବଡ଼ ଗ୍ରାମ ବା ଏକାଧିକ ଛୋଟ ଛୋଟ ଗ୍ରାମକୁ ନେଇ ସର୍ବନିମ୍ନ ୫,୦୦୦ ଲୋକ ବାସ କରୁଥିବା ଅଞ୍ଚଳରେ ଏକ ଗ୍ରାମ ପଞ୍ଚାୟତ ଗଠନ କରାଯାଇଥାଏ । ସରପଞ୍ଚ ପଞ୍ଚାୟତ ମୁଖ୍ୟ ଓ ତାଙ୍କ ତଳକୁ ନାଏବ ସରପଞ୍ଚ । ଉଭୟ ଲୋକ ପ୍ରତିନିଧି ଓ ଜନସାଧାରଣଙ୍କ ପ୍ରତ୍ୟକ୍ଷ ଭୋଟରେ ନିର୍ବାଚିତ ହୋଇଥାନ୍ତି । ନାଏବ ସରପଞ୍ଚ ଅଦାଲତ ପଞ୍ଚରେ ବିଚାର ମାମଲା ତଦାରଖ କରନ୍ତି । କିନ୍ତୁ ସରପଞ୍ଚଙ୍କ କାର୍ଯ୍ୟ ବହୁବିଧ । ପଞ୍ଚାୟତର ବିକାଶ, ପ୍ରଶାସନ ଆଦି ସକଳ କାର୍ଯ୍ୟ ତାଙ୍କ ଦ୍ୱାରା ସମାହିତ ହୋଇଥାଏ । ଅଫିସ କାର୍ଯ୍ୟନିର୍ବାହ ନିମନ୍ତେ ଜଣେ ବେତନଭୋଗୀ ସମ୍ପାଦକ ଥାନ୍ତି । ତାଛଡ଼ା ବିଭିନ୍ନ ନିର୍ବାଚିତ

ୱାର୍ଡ଼ ମେମ୍ବରମାନେ ପଞ୍ଚାୟତର ନିୟମିତ ସଭ୍ୟ । ପଞ୍ଚାୟତ ଜରିଆରେ ରାସ୍ତାଘାଟ ବନ୍ଧବାଡ଼ ନିର୍ମାଣ; ଆଲୋକ, ପାନୀୟଜଳ ବ୍ୟବସ୍ଥା, ପ୍ରୌଢ଼ଶିକ୍ଷା କାର୍ଯ୍ୟ ତଦାରଖ, ଦୁର୍ଗତ ଅଞ୍ଚଳ ନିମନ୍ତେ ରିଲିଫ ଯୋଗାଣ, ଆଞ୍ଚଳିକ ଶିକ୍ଷା ଓ ସ୍ୱାସ୍ଥ୍ୟ ବ୍ୟବସ୍ଥାଦି ସମାହିତ ହୁଏ । ସ୍ଥାନୀୟ ହାଟ, ବଜାର, ସର୍ବସାଧାରଣ ପୋଖରୀ, କାଞ୍ଜିଆ ହାଉସ୍ ତୋଟା ଆଦି ନିଲାମ ପଞ୍ଚାୟତ ଜରିଆରେ ହୁଏ । ହଳର, ଗ୍ରାମ୍ୟ ଶିଳ୍ପ, ଶଗଡ଼, ଟ୍ରାକ୍ଟର ଆଦିରେ ଟିକସ ଧାର୍ଯ୍ୟ ପଞ୍ଚାୟତ କରନ୍ତି । ଏତଦ୍‌ଭିନ୍ନ ସରକାରଙ୍କଠାରୁ ଅନୁଦାନ ମଧ୍ୟ ମିଳିଥାଏ । ଟୋଲ ଲାଇସେନ୍‌ସ ମଧ୍ୟ ପଞ୍ଚାୟତର ଆୟ ପରିସର ଭୁକ୍ତ ଅନ୍ୟୁନ ୮ଟି ଗ୍ରାମପଞ୍ଚାୟତକୁ ନେଇ ପଞ୍ଚାୟତ ସମିତି ଗଠିତ ହୋଇଥାଏ । ଏହା ପଞ୍ଚାୟତିରାଜର ମଧ୍ୟମ ଓ ଶକ୍ତିଶାଳୀ ସଂସ୍ଥା । ଏହାର ମୁଖ୍ୟ ଚେୟାରମେନ । ସ୍ଥାନୀୟ ବିଧାୟକ ପଞ୍ଚାୟତ ସମିତିର ଆନୁଷ୍ଠାନିକ ସଭ୍ୟ । ପ୍ରତି ପଞ୍ଚାୟତରୁ ଜଣେ ମହିଳା ଓ ଆଉଜଣେ ପୁରୁଷ ପ୍ରତିନିଧି ନିର୍ବାଚିତ ହେବାର ବ୍ୟବସ୍ଥା ଅଛି । ଆଦିବାସୀ ହରିଜନ ସଭ୍ୟଙ୍କ ନିମନ୍ତେ ସ୍ଥାନ ସଂରକ୍ଷଣ ବ୍ୟତୀତ ମହିଳାଙ୍କ ସକାଶେ ୩୦ ପ୍ରତିଶତ ସଂରକ୍ଷଣ ବ୍ୟବସ୍ଥା କରାଯାଇଛି । ଯଦି ଚେୟାରମେନ ପୁରୁଷଥିବେ ତେବେ ଭାଇସ୍ ଚେୟାରମେନ ନିମନ୍ତେ ମହିଳା ସଭ୍ୟାଙ୍କୁ ମନୋ ନୟନ କରାଯିବ । ପଞ୍ଚାୟତ ସମିତିର କାର୍ଯ୍ୟ ବହୁବିଧ । ଆଗେ ପ୍ରାଥମିକ ଶିକ୍ଷା ପରିଚାଳନା ପଞ୍ଚାୟତ ସମିତି ଦ୍ୱାରା ହେଉଥିଲା । ପୁନଶ୍ଚ ତାହାକୁ ହସ୍ତାନ୍ତର କରିବା ନିମନ୍ତେ ସରକାର ଚିନ୍ତା କରୁଛନ୍ତି । ବ୍ଲକସ୍ତରରେ ଶିକ୍ଷା ଅଧିକାରୀ ଯୋଗ୍ୟ ସୃଷ୍ଟିକରି ଏହାକୁ ପଞ୍ଚାୟତ ସମିତି ଦ୍ୱାରା ପରିଚାଳନା କରିବାର ପ୍ରସ୍ତାବ ଅଛି । ରାସ୍ତାଘାଟ, ଶିକ୍ଷା, ସ୍ୱାସ୍ଥ୍ୟ, ବନ୍ଧ, ପର, ରିଲିଫ ଓ ସର୍ବୋପରି ଉନ୍ନୟନ ବ୍ୟବସ୍ଥା ପଞ୍ଚାୟତ ସମିତିର କାର୍ଯ୍ୟ । ଗ୍ରାମ ଉନ୍ନୟନ କାର୍ଯ୍ୟକ୍ରମ ପଞ୍ଚାୟତ ସମିତି ପରିଚାଳନା କରନ୍ତି । ଗ୍ରାମ ନିଯୁକ୍ତି, ଗ୍ରାମ ପୁନର୍ଗଠନ ଓ ବିକାଶ ବି ପଞ୍ଚାୟତ ସମିତି କର୍ତ୍ତୃକ ହୋଇଥାଏ । ଗଣଶିକ୍ଷା ପ୍ରସାର ଓ ସମାଜ ମଙ୍ଗଳ କାର୍ଯ୍ୟରେ ପଞ୍ଚାୟତ ସମିତି ମୁଖ୍ୟ ଭୂମିକା ଗ୍ରହଣ କରେ । ଏବେ ଓଡ଼ିଶାରେ ଜିଲ୍ଲା ପରିଷଦ ଗଠନ ହୋଇନାହିଁ । ପୂର୍ବେ ତାହା କାର୍ଯ୍ୟ କରୁଥିଲା । ଜିଲ୍ଲା ସଦର ମହକୁମାରେ ପରିଷଦ କାର୍ଯ୍ୟାଳୟ ଥାଏ । ପ୍ରତି ପଞ୍ଚାୟତ ସମିତିର ନିର୍ବାଚିତ ସଭ୍ୟମାନେ ଜଣେ ଚେୟାରମେନ୍ ଓ ଭାଇସ୍-ଚେୟାରମେନ୍ ବାଛନ୍ତି । ସେ ପରିଷଦର ସଭାପତି । ଜିଲ୍ଲା ପରିଷଦ ଦ୍ୱାରା ସମସ୍ତ ଉନ୍ନୟନ କାର୍ଯ୍ୟ ସମାହିତ ହୁଏ । ଆଦିବାସୀ, ହରିଜନ ଓ ମହିଳା ସଦସ୍ୟାଙ୍କ ନିମନ୍ତେ ସଂରକ୍ଷଣ ବ୍ୟବସ୍ଥା ଅଛି ।

୧୯୯୨ ମସିହାରେ ସମ୍ବିଧାନର ୭୨ତମ ସଂଶୋଧନ କରାଯାଇ ପଞ୍ଚାୟତି ରାଜ ବ୍ୟବସ୍ଥାକୁ ବଳବତ୍ତର କରାଗଲା । ଏହି ନୂତନ ବ୍ୟବସ୍ଥାନୁଯାୟୀ ପ୍ରତି ଗ୍ରାମରେ ଗ୍ରାମସଭା, ବଡ଼ଗ୍ରାମ ବା କେତେକ ଗ୍ରାମକୁ ନେଇ ଗ୍ରାମ ପଞ୍ଚାୟତ, ବ୍ଲକ୍ ସ୍ତରରେ ପଞ୍ଚାୟତ ସମିତି ଏବଂ ଜିଲ୍ଲା ସ୍ତରରେ ଜିଲ୍ଲା ପରିଷଦ ଗଠନ କରାଯିବ । ଆଦିବାସୀ, ହରିଜନ, ଲଘୁସମ୍ପ୍ରଦାୟ ଓ ମହିଳାମାନଙ୍କ ସକାଶେ-ସଂରକ୍ଷଣ ବ୍ୟବସ୍ଥାକୁ ପ୍ରାଧାନ୍ୟ ଦିଆଯାଇଛି । ଏହାକୁ ଆର୍ଥିକ ଦିଗରୁ ଅଧିକ ସ୍ୱଚ୍ଛଳ ଓ ସ୍ୱାବଲମ୍ବୀ କରିବା ଅଭିପ୍ରାୟରେ ଅର୍ଥନିଗମ ଶୀଘ୍ର ଏକ ବିଲ୍ ଆଗତ କରୁଛନ୍ତି ।

ପଞ୍ଚାୟତିରାଜ ପ୍ରାୟ ସବୁ ପ୍ରଦେଶରେ କାର୍ଯ୍ୟକାରୀ ହୋଇଛି । ଦେଶର ୧୪ଟି ପ୍ରଦେଶରେ ତିନିଥାକିଆ ୪ଟି ରାଜ୍ୟରେ ଦୁଇ ଥାକିଆ ଏବଂ ଅବଶିଷ୍ଟ ୯ଟି ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳରେ ଏକ ଥାକିଆ ପଞ୍ଚାୟତ ପ୍ରଥା ପ୍ରଚଳିତ ଅଛି । ଅରୁଣାଚଳ ପ୍ରଦେଶ, ନାଗାଲ୍ୟାଣ୍ଡ, ମଣିପୁର ଓ ମିଜୋରାମରେ ଏବଂ ଉତ୍ତରାଞ୍ଚଳ ପ୍ରଦେଶମାନଙ୍କରେ ପୁରୁଣା ଢଙ୍ଗରେ ପଞ୍ଚାୟତ ଏବେ ବି ଚଳି ଆସୁଛି । ଏହାର କାର୍ଯ୍ୟକାଳ କେତେକ ଜାଗାରେ ୩ ବର୍ଷ ଥିବା ସ୍ଥଳେ, ଅନ୍ୟ କେତେକ ସ୍ଥାନରେ ୫ ବର୍ଷ ରଖା ଯାଇଛି ।

ସମ୍ପ୍ରତି ଭାରତ ସରକାର ଗ୍ରାମବିକାଶର ଯେଉଁ ବିଶେଷ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି ସେଥି ସକାଶେ ଉତ୍ତର ପ୍ରଦେଶ ଓ ପଶ୍ଚିମ ବଙ୍ଗଳା ସମେତ ଯେଉଁ ୭ଟି ରାଜ୍ୟକୁ ତାଲିକାଭୁକ୍ତ କରିଛନ୍ତି, ଓଡ଼ିଶା ତନ୍ମଧ୍ୟରେ ଅନ୍ୟତମ । ଅଷ୍ଟମ ଯୋଜନାରେ ଓଡ଼ିଶା ପୂର୍ବବର୍ଷ ତୁଳନାରେ ଅଧିକ ଅର୍ଥ ଅନୁଦାନ ଲାଭର ସୁଯୋଗ ପାଇଛି । ରାଜ୍ୟ ଯୋଜନା ଚିଠାରେ ଜଳସେଚନ, ବିଦ୍ୟୁତ୍ ଉତ୍ପାଦନ ଓ ଗ୍ରାମ ନିଯୁକ୍ତିକୁ ସର୍ବାଧିକ ଗୁରୁତ୍ୱ ଆରୋପ କରାଯାଇଛି । ଏସବୁ ପଞ୍ଚାୟତର ପରିସର ମଧ୍ୟରେ କାର୍ଯ୍ୟକାରୀ ହେବ । ପଞ୍ଚାୟତ ହାତରେ ପ୍ରଭୂତ କ୍ଷମତା ନ୍ୟସ୍ତ କରିବା ସକାଶେ ସରକାର ଅଙ୍ଗୀକାରବଦ୍ଧ । ପ୍ରାଥମିକ ଶିକ୍ଷା, ଜନଶିକ୍ଷା, ସ୍ୱାସ୍ଥ୍ୟସେବା, ପରିବାର ଯୋଜନା ଓ ପରିବାର କଲ୍ୟାଣ, ଶିଶୁ ଓ ମାତୃ ମଙ୍ଗଳ, ଗୋଷ୍ଠୀ ଉନ୍ନୟନ, ଆଦିବାସୀ, ହରିଜନ ଉନ୍ନୟନ, ଅକ୍ଷମ, ଅଥର୍ବ, ନିରାଶ୍ରୟ ଓ ଅନାଥଙ୍କ ଥଇଥାନ ନିମନ୍ତେ କାର୍ଯ୍ୟ କରିବା ପଞ୍ଚାୟତର ନୈତିକ ଦାୟିତ୍ୱ । ୧୯୮୯ ମସିହାରେ ସର୍ବଭାରତୀୟ ପଞ୍ଚାୟତିରାଜ ସମ୍ମିଳନୀ ଆୟୋଜିତ ହୋଇଥିଲା । ମାର୍ଚ୍ଚ ମାସ ୫ ତାରିଖ ୧୯୯୩ ମସିହାରେ ଓଡ଼ିଶା ସରକାର ରାଜ୍ୟସ୍ତରୀୟ ପଞ୍ଚାୟତ ସମ୍ମିଳନୀ ଭୁବନେଶ୍ୱରଠାରେ ଡକାଇଥିଲେ । ଉକ୍ତ ଦିନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଜନ୍ମତିଥି । ସରକାର ମାର୍ଚ୍ଚ ୫ ତାରିଖକୁ ପଞ୍ଚାୟତିରାଜ ଦିବସ ରୂପେ ଘୋଷଣା କରିଛନ୍ତି । ଓଡ଼ିଶା ସରକାର ପଞ୍ଚାୟତ ବ୍ୟବସ୍ଥାରେ କେତେକ ସଂସ୍କାର ଆଣିଛନ୍ତି । ଏହାକୁ ଶୀଘ୍ର ପୂର୍ଣ୍ଣାଙ୍ଗ କରି ଜିଲ୍ଲା ପରିଷଦ ଗଠନ ନିମନ୍ତେ ଲକ୍ଷ୍ୟ ରଖିଛନ୍ତି । ତଦ୍ୱାରା ଏହା ପୂର୍ବ ପରି ତିନି ଥାକିଆ ସଂସ୍ଥାରେ ପରିଣତ ହେବ । ପ୍ରାଥମିକ ଶିକ୍ଷାଭାର ପୁନଶ୍ଚ ପଞ୍ଚାୟତ କର୍ତ୍ତୃତ୍ୱାଧୀନ ରଖିବାକୁ ସରକାରଙ୍କର ମସୁଧା ଅଛି । ଏତଦ୍ୱାରା ସ୍ଥାନୀୟ ଲୋକେ ଗଣତାନ୍ତ୍ରିକ ଅଧିକାରର ବିନିଯୋଗ ନିମନ୍ତେ ଯଥେଷ୍ଟ ସୁଯୋଗ ପାଇବେ । ମହିଳା ଆଦିବାସୀ ହରିଜନ, ପଛୁଆ ବର୍ଗଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ଯଥେଷ୍ଟ ଧ୍ୟାନ ଦିଆଯାଉଛି । ପଞ୍ଚାୟତ ଗ୍ରାମ୍ୟ ସରକାର । ତେଣୁ ଆଞ୍ଚଳିକ ଲୋକଙ୍କର ଛୋଟ ଛୋଟ ସମସ୍ୟାର ସମାଧାନ ପଞ୍ଚାୟତ ଜରିଆରେ ହୋଇ ପାରିଲେ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ କାର୍ଯ୍ୟ ଭାର ହ୍ରାସ ପାଇବ ଓ ମଫସଲ ଲୋକଙ୍କ ଗଣତାନ୍ତ୍ରିକ ପ୍ରଶାସନ ଅଭିଜ୍ଞତାର ପରିପ୍ରସାର ଘଟିବ । ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟ, ପରିବହନ, ରାସ୍ତାଘାଟ, ଆଲୋକ, ଜଳ ଯୋଗାଣ, ପରିବାର କଲ୍ୟାଣ, ଜନ ଶିକ୍ଷା ପ୍ରସାର ଆଦି ପଞ୍ଚାୟତିରାଜ ଦ୍ୱାରା ନିର୍ବାହିତ ହେଲେ ଶାସନ ବିକେନ୍ଦ୍ରୀକରଣ ସଫଳ ରୂପ ଗ୍ରହଣ କରି ଯୋଜନା ସଫଳ ହେବ ।

ଘର ନଂ ୩-ଆର୍, ୫/୪ କଳ୍ପନାଞ୍ଚଳ,
ଭୁବନେଶ୍ୱର-୧୪ ।



ସମ୍ବଲପୁର ଜିଲ୍ଲାର ରେଙ୍ଗାଲି ପଞ୍ଚାୟତ ସମିତି ଅନ୍ତର୍ଗତ କୁଲ୍ଲା ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ଗର୍ମେଲା କଲୋନୀ ଗ୍ରାମର ଶ୍ରୀ ପବିତ୍ର କୁମାର ସାହୁ ଜଣେ ଉଦ୍ୟମୀ ବ୍ୟବସାୟୀ ଯୁବକ । ତାଙ୍କର ଶିକ୍ଷାଗତ ଯୋଗ୍ୟତା ମାଟ୍ରିକ୍ ପାଶ୍ । ମାଟ୍ରିକ୍ ପାଶ୍ କରିବା ପରେ ସେ ରୋଜଗାର ପନ୍ଥା ଖୋଜିଲେ । ଜିଲ୍ଲା ଶିଳ୍ପ କେନ୍ଦ୍ର, ସମ୍ବଲପୁରକୁ ବି: ଡ଼ି: ଓ:, ରେଙ୍ଗାଲିଙ୍କ ଜରିଆରେ ୧୯୯୦ ମସିହାରେ ଆବେଦନ କରିଥିଲେ । ଉକ୍ତ ଋଣ ୨୫,୦୦୦ ଟଙ୍କା (ପଚିଶ ହଜାର ଟଙ୍କା) ମୂଲ୍ୟର ୧୯୯୧ ମସିହାରେ ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆ, ରେଙ୍ଗାଲିଙ୍କ ଜରିଆରେ ଟେଲିଭିଜନ୍ ଏବଂ ଭି: ସି: ପି: ଭଡ଼ାରେ ଚଳାଇବା ପାଇଁ ପାଇଥିଲେ ।

ବିଭିନ୍ନ ଗ୍ରାମରେ ଟେଲିଭିଜନ୍ ଓ ଭି: ସି: ପି: ଚଳାଇ ଭଡ଼ା ବାବଦକୁ ମାସକୁ ସେ ୧,୦୦୦ ଟଙ୍କା (ଏକ ହଜାର ଟଙ୍କା) ପର୍ଯ୍ୟନ୍ତ ରୋଜଗାର ସକ୍ଷମ ହୋଇଛନ୍ତି । ତହିଁର କିଛି ଅଂଶ ସେ ପରିଶୋଧ କରିସାରିଲେଣି । ପରିବାରରେ ତାଙ୍କର ବାପା, ମା', ଭାଇ ଭଉଣୀଙ୍କ ସମେତ ସ୍ତ୍ରୀ ଓ ଗୋଟିଏ ପୁଅ ଅଛନ୍ତି । ଆଜି କାଲି ଖୁବ୍ ଭଲରେ ପରିବାର ତାଙ୍କର ଚଳୁଛି ।

ସେ ସାକ୍ଷାତକାରରେ କହନ୍ତି ଯେ, ସରକାରଙ୍କ ଏହି ଯୋଜନା ଜରିଆରେ ମୁଁ ମୋର ଜୀବନର ଗତିପଥ ବଦଳାଇ ପାରିଛି । ଏହି ଯୋଜନା ଫଳପ୍ରଦ । ସରକାରଙ୍କ ଏହି ଯୋଜନାରୁ ଅନ୍ୟ ଶିକ୍ଷିତ ବେକାରୀ ଯୁବକମାନେ ଜିଲ୍ଲା ଶିଳ୍ପ କେନ୍ଦ୍ରରୁ ଋଣ ନେଇ ତାହା ଠିକ୍ ଭାବରେ ବିନିଯୋଗ କଲେ ନିଶ୍ଚିତ ଭାବରେ ଉପକୃତ ହୋଇ ପାରିବେ ବୋଲି ମୋର ଦୃଢ଼ ବିଶ୍ୱାସ ।

ଶମ୍ଭୁ ଚରଣ ଗୋସ୍ୱାମୀ,
ମଣ୍ଡଳ ସଙ୍ଗଠକ, ପଲ୍ଲୀଶ୍ରୋତା ମଣ୍ଡଳୀ ସମୂହ,
ସମ୍ବଲପୁର ।



ଭୁବନେଶ୍ୱରଠାରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନା ଆୟୁର୍ବେଦିକ ଡାକ୍ତରମାନଙ୍କ ସାଧାରଣ ଅଧିବେଶନକୁ ଉଦ୍‌ଘାଟନ କରୁଛନ୍ତି ।

# ସମ୍ବାଦ ପରିକ୍ରମା




## ଅପୂର୍ବ ବର୍ଣ୍ଣାଢ୍ୟ ପରିବେଶ ଓ ଲୋକାରଣ୍ୟରେ–
## 'ଚିନ୍ତା ଓ ଚେତନା'ର ସାରସ୍ୱତ ସମାରୋହ ଓ ରାମାୟଣ ଦର୍ଶନ ଉନ୍ମୋଚନ

"ଯୁଗେ ଯୁଗେ ନାରୀ ଜାତି ନିର୍ଯ୍ୟାତିତା"
—ବିଜୁ ପଟ୍ଟନାୟକ

ଯୁଗେ ଯୁଗେ ନାରୀ ଜାତି ପ୍ରତି ନିର୍ଯ୍ୟାତନା ଏବଂ ନାରୀକୁ ଏକ ନିମ୍ନ ଶ୍ରେଣୀଭୁକ୍ତ କରାଯାଇ ନାରୀ ପ୍ରତିଷ୍ଠା ତଥା ମର୍ଯ୍ୟାଦାକୁ କ୍ଷୁଣ୍ଣ କରାଯାଇ ଆସିଛି ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଦୃଢ ମତବ୍ୟକ୍ତ କରିଛନ୍ତି ଏବଂ ଏଣିକି ସେସବୁର ମୂଳୋତ୍ପାଟନ କରାଯାଇ ନାରୀ ଜାତିକୁ ଏକ ବାସ୍ତବ ତଥା ଅଗ୍ରଗଣ୍ୟ ଆଦର୍ଶ ଭାବେ ଗଢ଼ି ତୋଳିବାକୁ ରାଜ୍ୟ ସରକାର ଦୃଢ ସଂକଳ୍ପବଦ୍ଧ ବୋଲି କହିଥିଲେ ।

ଫେବୃୟାରୀ ମାସ ୪ ତାରିଖ ସନ୍ଧ୍ୟାରେ ରାଜ୍ୟ ସୂଚନା ଭବନଠାରେ ରାଜ୍ୟର ପ୍ରମୁଖ ଅନୁଷ୍ଠାନ ଚିନ୍ତା ଓ ଚେତନାର ଅଧ୍ୟକ୍ଷ ତଥା ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ଅନୁଷ୍ଠିତ ସାରସ୍ୱତ ସମାରୋହରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଶ୍ରୀ ଜଗନ୍ନାଥ ମଲ୍ଲିକଙ୍କ ରଚିତ ଏବଂ ଚିନ୍ତା ଓ ଚେତନା ଦ୍ୱାରା ପ୍ରକାଶିତ "ରାମାୟଣ ଦର୍ଶନ" ପୁସ୍ତକ ଉନ୍ମୋଚନ କରି ମୁଖ୍ୟମନ୍ତ୍ରୀ କହିଲେ ଯେ ଶ୍ରୀରାମଚନ୍ଦ୍ରଙ୍କ ରାମରାଜ୍ୟରେ ମଧ୍ୟ ନାରୀ ପ୍ରତି ନିର୍ଯ୍ୟାତନା ଥିଲା । ସୀତାଙ୍କ ଅଗ୍ନିପରୀକ୍ଷା ହେଉଛି ତା'ର ଜ୍ୱଳନ୍ତ ପ୍ରତୀକ । ନାରୀକୁ ସର୍ବଂସହା କୁହାଯାଇ ତାଙ୍କୁ ଦୟା, କ୍ଷମା, ମାତୃତ୍ୱର ଅପୂର୍ବ ଅପରୂପ ବୋଲି ପୁରୁଷମାନେ ବର୍ଣ୍ଣନା କରି ପୁରୁଷ ଜାତି ଯଥେଚ୍ଛାଚାର କରି ତା'ର ଫାଇଦା ଉଠାଉଛନ୍ତି । ବର୍ତ୍ତମାନ ସେସବୁର ମୂଳୋଚ୍ଛେଦ ଟାଣି ନାରୀ ଜାତିର ଜାଗରଣ କରାଇବାକୁ ହେବ । ମୁଖ୍ୟମନ୍ତ୍ରୀ ଚିନ୍ତା ଓ ଚେତନାର ବିଭିନ୍ନ ଅଭିନବ ପଦକ୍ଷେପ ଓ ବ୍ୟାପକ ଜନହିତକର କାର୍ଯ୍ୟକ୍ରମର ଉଚ୍ଚ ପ୍ରଶଂସା କରିଥିଲେ ।

ଶ୍ରୀ ଜଗନ୍ନାଥଙ୍କ ପ୍ରତିମୂର୍ତ୍ତି ଠାରେ ପ୍ରଦୀପ ପ୍ରଜ୍ୱଳନ କରି ମାନ୍ୟବର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ· ରେଡ୍ଡୀ ସାରସ୍ୱତ ସମାରୋହକୁ ଉଦ୍‌ଘାଟନ କରି କହିଲେ ଯେ, ବର୍ତ୍ତମାନର ସନ୍ଧିସନ୍ଧି ମୁହୂର୍ତ୍ତରେ ଦେଶ ଓ ଜାତି ଯେତେବେଳେ ବିଭେଦକାରୀ ଶକ୍ତିମାନଙ୍କର ହୀନ ସାଂପ୍ରଦାୟିକତା, ଧାର୍ମିକ ଅପବ୍ୟାଖ୍ୟା ତଥା ଜାତୀୟ ସଂହତିର ଉତ୍କଟ ସଂକଟ ଦେଇ ବିପନ୍ନ ଆଡ଼କୁ ଅଗ୍ରସର ସେଇ ସମୟରେ ଶ୍ରୀ ଜଗନ୍ନାଥ ମଲ୍ଲିକଙ୍କ "ରାମାୟଣ ଦର୍ଶନ" ପରି ପୁସ୍ତକ ଏବଂ "ଅମିନୁଲ ଇସ୍‌ଲାମଙ୍କ ଜୀବନୀ" ପୁସ୍ତକର

ଉନ୍ମୋଚନ କରାଇ ଚିନ୍ତା ଓ ଚେତନା ଏକ ଯଥାର୍ଥ ପ୍ରକାଶ ଏବଂ ପଦକ୍ଷେପ ଗ୍ରହଣ କରିଛନ୍ତି । ମାନ୍ୟବର ରାଜ୍ୟପାଳ "ଅମିନୁଲ୍ ଇସଲାମ ଏ ପିପଲ ଅଫ୍ ନାସନାଲ ଇଣ୍ଟିଗ୍ରେସନ୍" ଇଂରାଜୀ ପୁସ୍ତକଟି ଉନ୍ମୋଚନ କରିଥିଲେ । ଚିନ୍ତା ଓ ଚେତନା ବିଜୁବାବୁଙ୍କ ଯୋଗ୍ୟ ନେତୃତ୍ୱ ଓ ଅଧ୍ୟକ୍ଷତାରେ ରାଜ୍ୟରେ ଗଣଚେତନା, ଗୋଷ୍ଠୀ ଉନ୍ନୟନ, ସାହିତ୍ୟ ସଂସ୍କୃତିର ବିକାଶ ତଥା ବ୍ୟାପକ ଜନହିତକର କାର୍ଯ୍ୟକ୍ରମକୁ ଅଧିକ ଫଳପ୍ରଦ କରିପାରିବ ବୋଲି ସେ ଦୃଢ଼ ଆଶାପୋଷଣ କରି ଥିଲେ । ସୂଚନା ଭବନ ଲୋକାରଣ୍ୟରେ ମୁଖରିତ ହୋଇ ଉଠିଥିଲା ।

ପ୍ରାରମ୍ଭରେ ଚିନ୍ତା ଓ ଚେତନାର ରାଜ୍ୟ ସାଧାରଣ ସମ୍ପାଦକ ଶ୍ରୀ ସୁରେନ୍ଦ୍ର ଦାସ ସ୍ୱାଗତ ଅଭିଭାଷଣରେ ଅତିଥି ତଥା ସମବେତ ସହସ୍ରାଧିକ ସୁଧୀବୃନ୍ଦଙ୍କୁ ଅଭିନନ୍ଦନ ଜଣାଇ ଚିନ୍ତା ଓ ଚେତନାର ୯୪ ଗୋଟି ଶାଖା ମାଧ୍ୟମରେ ରାଜ୍ୟର ପ୍ରତି କୋଣରେ ବିଭିନ୍ନ ଜନହିତକର ତଥା ଜନସଚେତନତା କାର୍ଯ୍ୟକ୍ରମର ଆବଶ୍ୟକତା ସମ୍ପର୍କରେ ଆଲୋକପାତ କରିଥିଲେ ।

ଅନ୍ୟତମ ବରେଣ୍ୟ ଅତିଥି ପଦ୍ମକେଶରୀ ଡ଼ଃ ଶ୍ରୀମତୀ ପ୍ରତିଭା ରାୟ କହିଲେ ଯେ, ରାମାୟଣର କଥାବସ୍ତୁ ଆଦି କେବଳ କୌଣସି ଏକ ଧାର୍ମିକ ଗୋଷ୍ଠୀ ବା ଅଞ୍ଚଳ ତଥା ଭାଷାଭାଷୀ ଅଞ୍ଚଳରେ ସୀମାବଦ୍ଧ ନୁହେଁ । ଏହାକୁ ସମଗ୍ର ବିଶ୍ୱର ବହୁ ରାଷ୍ଟ୍ର ଅତି ଆଗ୍ରହରସହ ଗ୍ରହଣ କରିଛନ୍ତି । ଶ୍ରୀ ଜଗନ୍ନାଥ ମଲ୍ଲିକଙ୍କ "ରାମାୟଣ ଦର୍ଶନ"ରେ କଥାବସ୍ତୁ ଅତୁଟ ରହିବା ସଙ୍ଗେ ସଙ୍ଗେ ଯେଉଁ ଅତ୍ୟାଧୁନିକ ଯୁକ୍ତିଯୁକ୍ତ ମନ୍ତବ୍ୟ ଏବଂ ଦୃଷ୍ଟିଭଙ୍ଗୀ ଉପସ୍ଥାପିତ ହୋଇଛି ତାହା ପାଠକ ମହଲରେ ଏବଂ ବିଶେଷ କରି ବୁଦ୍ଧିଜୀବୀ ମହଲରେ ଆଲୋଚିତ ହେବା ଉଚିତ । ଅନ୍ୟତମ ଇଂରାଜୀ ପୁସ୍ତକ ସମ୍ପର୍କରେ ମତବ୍ୟକ୍ତ କରି କହିଲେ ଯେ, ଅମିନୁଲ ଇସଲାମ ଜଣେ ଉଚ୍ଚାଙ୍ଗ ଜାତୀୟ ସଂହତି ସାଧକ ।

"ରାମାୟଣ ଦର୍ଶନ" ପୁସ୍ତକ ରଚୟିତା ତଥା ଚିନ୍ତା ଓ ଚେତନାର କେନ୍ଦ୍ରୀୟ କାର୍ଯ୍ୟକାରୀ ମୁଖ୍ୟ ଶ୍ରୀ ଜଗନ୍ନାଥ ମଲ୍ଲିକ୍ ରାମାୟଣ ଦର୍ଶନ ପୁସ୍ତକରେ ସନ୍ନିବେଶିତ ନୂତନ ଚିନ୍ତା, ଦିଗନ୍ତ ତଥା ବାସ୍ତବତା ଉପରେ ଆଲୋକପାତ କରି ପୁସ୍ତକରେ ସନ୍ନିବେଶିତ ଭାବକୁ ଉଦାରଭାବରେ ବିଚାର କରିବାକୁ ' ନିବେଦନ କରି ପୁସ୍ତକର ଉଦାହରଣମାନ ଉପସ୍ଥାପନ କରିଥିଲେ ।

ସଭାପତି ଅଭିଭାଷଣ ଦେଇ କେନ୍ଦ୍ରୀୟ ସଭାପତି ମନ୍ତ୍ରୀ ଡ଼ଃ ପ୍ରସନ୍ନ ପାଟଶାଣୀ କହିଲେ ଯେ ଚିନ୍ତା ଓ ଚେତନା "ଚେତନା ପ୍ରକାଶନୀ"ର ଏହି ଦୁଇଗୋଟି ପୁସ୍ତକ ୩୭ତମ ଓ ୩୮ତମ ପୁସ୍ତକ ପ୍ରକାଶନ । ରାମାୟଣ ଉପରେ ଡି: ଲିଟ୍: କରି ମଧ୍ୟ ସେ ଏଭଳି ଗୋଟିଏ ଅଭିନବ ଗ୍ରନ୍ଥ ରଚନା କରିବାର ସାହସ କରିପାରି ନାହାନ୍ତି, ଯାହାକି ରାଜନୈତିକ ଜୀବନର ବ୍ୟସ୍ତତା ଭିତରେ ଶ୍ରୀ ଜଗନ୍ନାଥ ମଲ୍ଲିକ୍ କରି ପାରିଛନ୍ତି । ହାସ୍ୟ ରସାତ୍ମକ ଭାଷଣ ଦେଇ, ସେ ଶ୍ରୋତାଙ୍କୁ ମୁଗ୍ଧ କରିଥିଲେ । ଚିନ୍ତା ଓ ଚେତନାର ଗୌରବମଣ୍ଡିତ ଇତିହାସ ଓ ପ୍ରଗାଢ଼ ଉଦ୍ୟମ ମୂଳରେ ଏହି ଯଜ୍ଞବେଦୀରେ ଏହାର ରାଜ୍ୟ ସାଧାରଣ ସଂପାଦକ ଶ୍ରୀ ସୁରେନ୍ଦ୍ର ଦାସଙ୍କର ଏକନିଷ୍ଠ ଉହର୍ଗ ସାଧନାର ସେ ପ୍ରଶଂସା କରିଥିଲେ । ଧନ୍ୟବାଦ୍ ଦେଇଥିଲେ ଅନୁଷ୍ଠାନର କାର୍ଯ୍ୟନିର୍ବାହୀ ସଭାପତି ଶ୍ରୀ ଶିବାନନ୍ଦ ରାୟ ।

ପ୍ରାରମ୍ଭରେ ମୁଖ୍ୟ ଗାନ୍ଧାରୁ ସୂଚନା ଭବନ ଯାଏ ମାନ୍ୟବର ରାଜ୍ୟପାଳ ଓ ମୁଖ୍ୟମନ୍ତ୍ରୀ ଓ ଅନ୍ୟାନ୍ୟ ଅତିଥିବୃନ୍ଦଙ୍କୁ ଏକ ବିରାଟ ପଟୁଆରରେ ଏକଗହ ଶଙ୍ଖଧ୍ୱନି, ଶୁଭ ସାହାନାଇ ବାଦନ, ବେଦଧ୍ୱନି, ହୁଳହୁଳି, ଛତ୍ର, ଚାମର, ଗୁମର, ଆଲଟ ଏବଂ ତୂରୀ ଧ୍ୱନି ପୁଷ୍ପ ବୃଷ୍ଟି ସହ ସୂଚନା ଭବନ ମଧ୍ୟକୁ ପାଛୋଟି ନିଆଯାଇଥିଲା । ଚିନ୍ତା ଓ ଚେତନାର କଣ୍ଠଶିଳ୍ପୀମାନେ "ବନ୍ଦେ ଉତ୍କଳ ଜନନୀ" ସ୍ୱାଗତ ସଙ୍ଗୀତ ଗାନ କରିଥିଲେ ।

## ଜିଲ୍ଲା ଶିଳ୍ପ କେନ୍ଦ୍ର ଦ୍ୱାରା କାର୍ଯ୍ୟକାରୀ ହୋଇଥିବା ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମର ସମୀକ୍ଷା

ସମ୍ପ୍ରତି ରାଜ୍ୟ ସଚିବାଳୟଠାରେ ଶିଳ୍ପ ବିଭାଗ ଶାସନ ସଚିବ ଶ୍ରୀ ଇନ୍ଦ୍ରଜିତ ସିଂ ଖୁରାନାଙ୍କ ଅଧ୍ୟକ୍ଷତାରେ ଜିଲ୍ଲା ଶିଳ୍ପ କେନ୍ଦ୍ରଗୁଡ଼ିକ ଜରିଆରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମର ଅଗ୍ରଗତି ସମ୍ପର୍କରେ ଏକ ସମୀକ୍ଷା ବୈଠକ ଅନୁଷ୍ଠିତ ହୋଇଥିଲା । ଏଥିରେ ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନା, ବେକାର ଶିକ୍ଷିତ ଯୁବକ ଯୁବତୀଙ୍କ ପାଇଁ ଆତ୍ମ ନିଯୁକ୍ତି ଯୋଜନା, କ୍ଷୁଦ୍ର ଶିଳ୍ପର ବିକାଶ ଏବଂ ଶିଳ୍ପ ଉନ୍ନୟନ ସମ୍ବନ୍ଧୀୟ କାର୍ଯ୍ୟକ୍ରମଗୁଡ଼ିକୁ ତ୍ୱରାନ୍ୱିତ କରିବା ପାଇଁ ଆବଶ୍ୟକ ପଦକ୍ଷେପ ସମ୍ପର୍କରେ ବିଶଦ ଭାବେ ଆଲୋଚନା କରାଯାଇଥିଲା ।

୧୯୯୩ ମସିହା ଅକ୍ଟୋବର ୨ ତାରିଖରୁ କାର୍ଯ୍ୟକାରୀ ହେଉଥିବା 'ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନା'ରେ ୧୯୯୩-୯୪ ଆର୍ଥିକ ବର୍ଷରେ ଓଡ଼ିଶା ପାଇଁ ୧,୦୩୫ ଜଣ ହିତାଧିକାରୀଙ୍କୁ ଅନ୍ତର୍ଭୁକ୍ତ କରାଯିବାର ଲକ୍ଷ୍ୟ ଧାର୍ଯ୍ୟ ଥିବା ସ୍ଥଳେ ୧,୬୫୦ ଜଣ ହିତାଧିକାରୀଙ୍କ ଦରଖାସ୍ତ ଗ୍ରହଣ କରାଯାଇ ଋଣ ମଞ୍ଜୁର ନିମନ୍ତେ ବିଭିନ୍ନ ବ୍ୟାଙ୍କକୁ ସୁପାରିଶ କରାଯାଇଥିବାର ଏହି ସମୀକ୍ଷାରୁ ଜଣାଯାଇଛି । ଏହି ଯୋଜନାର ସଫଳ ଯେପରି ଜନସାଧାରଣ ପାଇପାରିବେ, ସେଥିନିମନ୍ତେ ବିହିତ ପଦକ୍ଷେପ ନେବା ପାଇଁ ଏହି ବୈଠକରେ ସ୍ଥିର ହୋଇଥିଲା ।

ସେହିପରି ବେକାର ଶିକ୍ଷିତ ଯୁବକ ଯୁବତୀଙ୍କ ପାଇଁ ଆତ୍ମ ନିଯୁକ୍ତି ଯୋଜନାରେ ୧୯୯୨-୯୩ ଆର୍ଥିକ ବର୍ଷରେ ୩,୫୦୦ ଜଣ ହିତାଧିକାରୀଙ୍କୁ ଅନ୍ତର୍ଭୁକ୍ତ କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ଗତ ଡିସେମ୍ବର ମାସ ସୁଦ୍ଧା ବିଭିନ୍ନ ବ୍ୟାଙ୍କ୍ ୩,୨୨୪ ଜଣ ହିତାଧିକାରୀଙ୍କୁ ଋଣ ମଞ୍ଜୁର କରିଛନ୍ତି ଏବଂ ୧,୩୭୮ ଜଣ ହିତାଧିକାରୀଙ୍କୁ ଆର୍ଥିକ ଋଣ ସାହାଯ୍ୟ ବଣ୍ଟନ କରାଯାଇଛି । ୧୯୯୩-୯୪ ଆର୍ଥିକ ବର୍ଷରେ ଏହି ଯୋଜନାରେ ୪,୯୦୦ ଜଣ ହିତାଧିକାରୀଙ୍କୁ ଅନ୍ତର୍ଭୁକ୍ତ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ ଥିବା ବେଳେ ଗତ ଡିସେମ୍ବର ମାସ ସୁଦ୍ଧା ୧,୨୭୭ ଜଣ ହିତାଧିକାରୀଙ୍କ ଦରଖାସ୍ତ ଋଣ ମଞ୍ଜୁର ପାଇଁ ବିଭିନ୍ନ ବ୍ୟାଙ୍କମାନଙ୍କୁ ସୁପାରିଶ କରାଯାଇଛି ।

୧୯୯୩-୯୪ ଆର୍ଥିକ ବର୍ଷରେ ୨,୨୨୫ଟି କ୍ଷୁଦ୍ର ଶିଳ୍ପକୁ ଉନ୍ନୀତ କରାଯିବାର ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ଗତ ଡିସେମ୍ବର ସୁଦ୍ଧା

୧,୨୭୪ଟି କ୍ଷୁଦ୍ର ଶିଳ୍ପକୁ ଉନ୍ନୀତ କରାଯାଇ ପାରିଛି ବୋଲି ସମୀକ୍ଷାରୁ ଜଣାଯାଇଛି ।

ଆସନ୍ତା ଆର୍ଥିକ ବର୍ଷ (୧୯୯୪-୯୫)ରେ ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନା ସମେତ ବିଭିନ୍ନ ଯୋଜନା ଓ କାର୍ଯ୍ୟକ୍ରମଗୁଡ଼ିକୁ ସୁଷ୍ଠୁ ରୂପେ ଓ ତ୍ୱରାନ୍ୱିତ ଭାବେ କାର୍ଯ୍ୟକାରୀ କରାଯାଇ ନିର୍ଦ୍ଧାରିତ ସମୟ ସୀମା ମଧ୍ୟରେ କିପରି ଧାର୍ଯ୍ୟ ଲକ୍ଷ୍ୟ ହାସଲ କରାଯାଇ ପାରିବ, ତା' ଉପରେ ଶିଳ୍ପ ବିଭାଗ ଶାସନ ସଚିବ ଗୁରୁତ୍ୱ ଆରୋପ କରିବା ସଙ୍ଗେ ସଙ୍ଗେ ନିଷ୍ଠାପର ଭାବେ ଦାୟିତ୍ୱ ତୁଲାଇବା ପାଇଁ ଜେନେରାଲ ମ୍ୟାନେଜର ଓ ପ୍ରୋଜେକ୍ଟ ମ୍ୟାନେଜରମାନଙ୍କୁ ପରାମର୍ଶ ଦେଇଥିଲେ ।

ଏହି ବୈଠକରେ ଶିଳ୍ପ ବିଭାଗ ଅତିରିକ୍ତ ଶାସନ ସଚିବ ଶ୍ରୀ ଗୋକୁଳ ଚନ୍ଦ୍ର ପତି, ଶିଳ୍ପ ନିର୍ଦ୍ଦେଶକ ଶ୍ରୀ ଟି: ରାମଚନ୍ଦ୍ର, ଯୁଗ୍ମ ଶାସନ ସଚିବ ଶ୍ରୀ ବି: ସି: ଦାସ ଓ ଶ୍ରୀ ଏନ୍: ଏନ୍: ମିଶ୍ର, ଅତିରିକ୍ତ ନିର୍ଦ୍ଦେଶକ ଶ୍ରୀ ଜଗବନ୍ଧୁ ଷଡ଼ଙ୍ଗୀ, ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ପି: କେ: ଦାସ ପ୍ରମୁଖ ଅଧିକାରୀଙ୍କ ସମେତ ବିଭିନ୍ନ ଜିଲ୍ଲାର ଜେନେରାଲ ମ୍ୟାନେଜର ଓ ପ୍ରୋଜେକ୍ଟ ମ୍ୟାନେଜରବୃନ୍ଦ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ରାଜ୍ୟରେ ପ୍ରଥମ ଥର ପାଇଁ ମାଣ୍ଡିଆ ସଂଗ୍ରହ ବ୍ୟବସ୍ଥା

ଚଳିତ ବର୍ଷ ରାଜ୍ୟରେ ପ୍ରଥମ ଥର ପାଇଁ ସରକାରୀ ସ୍ତରରେ ମାଣ୍ଡିଆ ସଂଗ୍ରହ କରିବା ପାଇଁ ବ୍ୟବସ୍ଥା ଗ୍ରହଣ କରାଯାଇଛି । ଭାରତୀୟ ଖାଦ୍ୟ ନିଗମ ଜରିଆରେ ବି: ଡ଼ି: ସି: ସି: ଓ ମାର୍କଫେଡ଼ ଏହି ମାଣ୍ଡିଆ ଗଜପତି, ମାଲକାନଗିରି, ରାୟଗଡ଼ା, କଳାହାଣ୍ଡି, କୋରାପୁଟ ଓ ନବରଙ୍ଗପୁର ଜିଲ୍ଲାମାନଙ୍କରେ ସଂଗ୍ରହ କରିବେ । ଚଳିତ ବର୍ଷ ୨,୫୦୦ ମେଟ୍ରିକ୍ ଟନ୍ ମାଣ୍ଡିଆ ସଂଗ୍ରହ କରିବାର ଲକ୍ଷ୍ୟ ରଖାଯାଇଛି ଓ ଏହାର ସଂଗ୍ରହ ଦର କୁଇଣ୍ଟାଲ ପ୍ରତି ୨୨୦ ଟଙ୍କା ଧାର୍ଯ୍ୟ କରାଯାଇଛି । ରାଜ୍ୟରୁ ସଂଗ୍ରହୀତ ଏହି ମାଣ୍ଡିଆ ସାଧାରଣ ବଣ୍ଟନ ପ୍ରଣାଳୀ ମାଧ୍ୟମରେ ଖାଉଟିମାନଙ୍କୁ ରିହାତି ମୂଲ୍ୟରେ ଯୋଗାଇ ଦେବା ପାଇଁ ସ୍ଥିର କରାଯାଇଛି ।

## ନିସ୍ତୁତ କୂପ ଯୋଜନାରେ ୧୨,୭୨୭ଟି ସେଚକୂପ ଖନନ

ଚଳିତ ଆର୍ଥିକ ବର୍ଷର ଗତ ଡିସେମ୍ବର ମାସ ଶେଷ ସୁଦ୍ଧା ନିସ୍ତୁତ କୂପ ଯୋଜନାରେ ୧୭୩୪.୨୧ ଲକ୍ଷ ଟଙ୍କା ବିନିଯୋଗରେ ସର୍ବମୋଟ ୧୨,୭୨୭ଟି ସେଚକୂପ ଖନନ କରାଯାଇ ପାରିଛି ଏବଂ ୮,୨୦୭ଟି ସେଚକୂପର ଖନନ କାର୍ଯ୍ୟ ଚାଲୁ ରହିଛି । ଏହି ଯୋଜନାରେ କେବଳ ଗତ ଡିସେମ୍ବର ମାସରେ ୨୨୨.୭୫ ଲକ୍ଷ ଟଙ୍କା ବିନିଯୋଗ କରାଯାଇ ୬୧୭ଟି ସେଚକୂପ ଖନନ କରାଯାଇଛି ବୋଲି ପଞ୍ଚାୟତିରାଜ ବିଭାଗ ସୂତ୍ରରୁ ଜଣାଯାଇଛି ।

## କଟକ ସହରରେ ତୁରନ୍ତ ପଡ଼ିକାର୍ଡ଼ ବଣ୍ଟନ ବ୍ୟବସ୍ଥା

ସମ୍ପ୍ରତି ସଚିବାଳୟଠାରେ ଖାଦ୍ୟ ଯୋଗାଣ ଓ ଖାଉଟୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ଭାଗବତ ବେହେରାଙ୍କ ଅଧ୍ୟକ୍ଷତାରେ ଏକ ଉଚ୍ଚସ୍ତରୀୟ ବୈଠକ ଅନୁଷ୍ଠିତ ହୋଇ କଟକ ସହରର ଖାଉଟୀମାନଙ୍କୁ ପଡ଼ିକାର୍ଡ଼ ବଣ୍ଟନ ବ୍ୟବସ୍ଥା ତ୍ୱରାନ୍ୱିତ କରିବା ସମ୍ପର୍କରେ ଆଲୋଚନା କରାଯାଇଥିଲା । ସରକାରୀ ପ୍ରେସ୍ ଆସନ୍ତା ସାତଦିନ ମଧ୍ୟରେ କଟକ ସହର ପାଇଁ ଏକ ଲକ୍ଷ ପଡ଼ିକାର୍ଡ଼ ଛପାଇ ଦେବେ ଓ ତାହା ସାମ୍ପ୍ରତିକ ପ୍ରଗଣନ ଅନୁସାରେ ଲେଖାଯାଇ ମାର୍ଚ୍ଚ ମାସ ୧ ତାରିଖରୁ ସହରବାସୀଙ୍କ ମଧ୍ୟରେ ଘର ଘର ବୁଲି ବଣ୍ଟନ କରାଯିବ ବୋଲି ଏହି ଆଲୋଚନା ବୈଠକରେ ସ୍ଥିର ହୋଇଛି । ଏହି ବଣ୍ଟନ ବ୍ୟବସ୍ଥାକୁ ତ୍ୱରାନ୍ୱିତ କରି ଯଥାଶୀଘ୍ର ଶେଷ କରିବା ପାଇଁ ସମ୍ପୃକ୍ତ ଜିଲ୍ଲାପାଳ ଓ ଯୋଗାଣ ଅଧିକାରୀଙ୍କୁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଛି ।

ଏହି ଉଚ୍ଚସ୍ତରୀୟ ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ ସୟଦ୍ ମୁସ୍ତାଫିଜ୍ ଅହମ୍ମଦ୍, ବିଭାଗୀୟ ଶାସନ ସଚିବ ଶ୍ରୀ ଅଶୋକ କୁମାର ମିଶ୍ର ଓ ଅତିରିକ୍ତ ଶାସନ ସଚିବ ଶ୍ରୀ ମଦନ ମୋହନ ପଣ୍ଡା ଏବଂ କଟକ ଜିଲ୍ଲାପାଳ ଶ୍ରୀ ରବୀନ୍ଦ୍ର ନାଥ ରଥ ପ୍ରମୁଖ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ରାଜ୍ୟରେ ସବାଇ ଘାସ ଉନ୍ନୟନ ନିଗମ ଗଠନ ପ୍ରସ୍ତାବକୁ ମୁଖ୍ୟମନ୍ତ୍ରୀଙ୍କ ଅନୁମୋଦନ

ରାଜ୍ୟରେ ଏକ ସବାଇ ଘାସ ଉନ୍ନୟନ ନିଗମ ଗଠନ କରାଯିବାପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଏହି ନିଗମ ଦ୍ୱାରା ଆଦିବାସୀମାନଙ୍କୁ ଉନ୍ନତ କିସମର ମଞ୍ଜି ଓ ଉପକରଣ ଯୋଗାଇ ଦିଆଯାଇ ଉତ୍କୃଷ୍ଟ ଧରଣର ସବାଇଘାସ ଉତ୍ପାଦନ କରିବାକୁ ପଦକ୍ଷେପ ନିଆଯିବ । ଆଦିବାସୀ ଓ ହରିଜନ ସମ୍ପ୍ରଦାୟର ମହିଳାମାନଙ୍କୁ ଉପଯୁକ୍ତ ତାଲିମ ଦିଆଯାଇ ସେମାନଙ୍କର କର୍ମକୁଶଳତା ବଢ଼ାଇବା ସଙ୍ଗେ ସଙ୍ଗେ ଉତ୍ପାଦନ ମଧ୍ୟ ବୃଦ୍ଧି କରାଯାଇପାରିବ । ସବାଇଘାସ ବିକ୍ରୀବଟା ଦିଗରେ ଅସାଧୁ ଓ ମୁନାଫାଖୋର ବ୍ୟବସାୟୀଙ୍କ ଏକଚାଟିଆ କାରବାରକୁ ପ୍ରତିହତ କରାଯାଇ ନିଗମ ମାଧ୍ୟମରେ ଏହାର ବିକ୍ରୀବଟା ପାଇଁ ବ୍ୟବସ୍ଥା ରହିବ । ଏହାଦ୍ୱାରା ଉତ୍ପାଦନକାରୀ ଉଚିତ ମୂଲ୍ୟ ପାଇପାରିବେ । ଆନ୍ତର୍ଜାତୀୟ ସ୍ୱେଚ୍ଛାସେବୀ ସଂସ୍ଥା 'ୟୁଥ୍ ଏଗେଂ ହଙ୍ଗର' ଓ ରାଜ୍ୟ ସରକାରଙ୍କ ମୃତ୍ତିକା ସଂରକ୍ଷଣ ବିଭାଗକୁ ଏହି ନିଗମର କାର୍ଯ୍ୟକ୍ରମରେ ସମ୍ପୃକ୍ତ କରାଯିବା ପାଇଁ ନିଷ୍ପତ୍ତି ନିଆଯାଇଛି ।

ନିଗମ ସ୍ଥାପନ କରାଯିବାରେ ଓଡ଼ିଶା କୃଷିଶିଳ୍ପ ନିଗମ ମୁଖ୍ୟ ଅଂଶଧନ ବିନିଯୋଗକାରୀ ରହିବେ । ଏହାଛଡ଼ା ଓଡ଼ିଶା ଜଙ୍ଗଲ ଉନ୍ନୟନ ନିଗମ, ମହିଳା ବିକାଶ ନିଗମ, ଆଦିବାସୀ ସମବାୟ ନିଗମ ଏଥିରେ ଅଂଶଧନ ଖଟାଇବେ । ଗୋ

ଆଦିବାସୀ ହରିଜନ ସମବାୟ ଅର୍ଥ ନିଗମ ଗୋଦାମ, ପ୍ଲାର୍କସେଟ୍ ଓ ହୋଟେଲ କମ୍ପ୍ଲେକ୍ସ ମାଧ୍ୟମରେ ଏହାର ଅଂଶଧନ ଖଟାଇବା ପାଇଁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି ।

ଏହି ନିଗମ ପାଇଁ ବିସ୍ତୃତ ପ୍ରୋଜେକ୍ଟ ରିପୋର୍ଟ ଆସନ୍ତା ୧୫ ତାରିଖ ଭିତରେ ଚୂଡ଼ାନ୍ତ କରାଯିବ ।

## ସରକାରୀ କର୍ମଚାରୀଙ୍କ ଅଭିଯୋଗ ଶୁଣାଣି ପାଇଁ ଷ୍ଟାଣ୍ଡିଂ କମିଟି ଗଠିତ ।

କର୍ମଚାରୀଙ୍କ ଅଭିଯୋଗ ଶୁଣାଣି ପାଇଁ ରାଜ୍ୟ ମୁଖ୍ୟ ଶାସନ ସଚିବଙ୍କ ଅଧ୍ୟକ୍ଷତାରେ ଏକ ଉଚ୍ଚସ୍ତରୀୟ ଷ୍ଟାଣ୍ଡିଂ କମିଟି ଗଠନ କରାଯାଇଛି । ରାଜ୍ୟ ଅଣ–ଗେଜେଟେଡ୍ ସରକାରୀ କର୍ମଚାରୀମାନେ ସେମାନଙ୍କର ସ୍ୱୀକୃତିପ୍ରାପ୍ତ ରାଜ୍ୟସ୍ତରୀୟ ସେବା ସଙ୍ଘ ଜରିଆରେ କରୁଥିବା ଅଭିଯୋଗଗୁଡ଼ିକ ଏହି କମିଟିରେ ବିଚାର କରାଯିବ । ଏହି କମିଟିରେ ସ୍ୱରାଷ୍ଟ୍ର, ଅର୍ଥ, ରାଜସ୍ୱ ଓ ଆଇନ ବିଭାଗର ଶାସନ ସଚିବ ବୃନ୍ଦ ଏବଂ ସାଧାରଣ ପ୍ରଶାସନ ବିଭାଗର ଅତିରିକ୍ତ ଶାସନ ସଚିବ ସଭ୍ୟ ରହିଛନ୍ତି । ଏହାର କୌଣସି ବୈଠକରେ ଯୋଗ ଦେବା ପାଇଁ ଯେକୌଣସି ବିଭାଗର ଶାସନ ସଚିବ, ବିଭାଗୀୟ ମୁଖ୍ୟ ଏବଂ ରାଜ୍ୟସ୍ତରୀୟ ସ୍ୱୀକୃତିପ୍ରାପ୍ତ ସଙ୍ଘର ପ୍ରତିନିଧିଙ୍କୁ ମଧ୍ୟ ଡକାଯାଇ ପାରିବ । ଷ୍ଟାଣ୍ଡିଂ କମିଟି ଆବେଦନଗୁଡ଼ିକୁ ପରୀକ୍ଷା ନିରୀକ୍ଷା କରି ବିଚାର ନିମନ୍ତେ ତାଙ୍କର ସମୁଚିତ ସୁପାରିଶ ସରକାରଙ୍କ ନିକଟରେ ଦାଖଲ କରିବେ ।

ଏହି କମିଟିର କାର୍ଯ୍ୟ ଆସନ୍ତା ଅପ୍ରେଲ ମାସରୁ ଆରମ୍ଭ ହୋଇ ଏହାର ବୈଠକ ପ୍ରତି ତିନିମାସରେ ଥରେ ବସିବ ଏବଂ ଏଥିରେ ରାଜ୍ୟସ୍ତରୀୟ ଅଣ–ଗେଜେଟେଡ୍ କର୍ମଚାରୀ ସେବା ସଙ୍ଘର ଆବେଦନଗୁଡ଼ିକ ବିଚାର କରାଯିବ ।

ଏହି ଷ୍ଟାଣ୍ଡିଂ କମିଟି ଜରିଆରେ ଅଣ–ଗେଜେଟେଡ୍ କର୍ମଚାରୀମାନଙ୍କର ଅସଲ ସମସ୍ୟାଗୁଡ଼ିକର ସମାଧାନ ହୋଇପାରିବ ବୋଲି ଆଶା କରାଯାଉଛି ।

## ମହିଳା କର୍ମଚାରୀଙ୍କ ପାଇଁ ୩୦ ଭାଗ ସରକାରୀ ଘର ସଂରକ୍ଷିତ ରହିବ ।

ପ୍ରଚଳିତ ଇଂ ଓ: ସର୍କୁଲାର ୧୨ ଅନୁଯାୟୀ ରାଜ୍ୟ ସଚିବାଳୟ, ବିଭାଗୀୟ ମୁଖ୍ୟ କାର୍ଯ୍ୟାଳୟ ଏବଂ ଭୁବନେଶ୍ୱରସ୍ଥିତ ଅନ୍ୟ କାର୍ଯ୍ୟାଳୟ ଓ ସରକାରୀ ଶିକ୍ଷାନୁଷ୍ଠାନରେ କାର୍ଯ୍ୟ କରୁଥିବା ତୃତୀୟ ଓ ଚତୁର୍ଥ ଶ୍ରେଣୀ କର୍ମଚାରୀମାନଙ୍କୁ ପୃଥକ ଭାବେ ପ୍ରସ୍ତୁତ କରାଯାଉଥିବା ଡିମାଣ୍ଡସ୍ ତାଲିକା ଅନୁଯାୟୀ ୩ : ୨ : ଅନୁପାତରେ ସରକାରୀ ବାସଗୃହ ଯୋଗାଇ ଦିଆଯାଉଛି । ଏହା ବ୍ୟତୀତ ଇଂ ଓ: ସର୍କୁଲାର୍ ଅନୁଯାୟୀ ନିତାନ୍ତ ଅସହାୟ ଓ ବିଧବା ମହିଳା କର୍ମଚାରୀମାନଙ୍କୁ ମଧ୍ୟ ଅଗ୍ରାଧିକାର ଭିତ୍ତିରେ ସରକାରୀ ବାସଗୃହ ଯୋଗାଣ ନିମନ୍ତେ ନିର୍ଦ୍ଦେଶନାମା ଦିଆଯାଇଛି । ପ୍ରସ୍ତୁତି କରାଯାଉଥିବା ଡିମାଣ୍ଡସ୍ ତାଲିକାଭୁକ୍ତ ବହୁ ମହିଳା କର୍ମଚାରୀ ଆସନ୍ତା କେତେବର୍ଷ ମଧ୍ୟରେ ସରକାରୀ ଗୃହ ପାଇବାର ସମ୍ଭାବନା ନ ଥିବାରୁ, ସେମାନେ ବିଭିନ୍ନ ସମସ୍ୟାର ସମ୍ମୁଖୀନ ହେବା ସଙ୍ଗେ ସଙ୍ଗେ ଠିକ୍ ସମୟରେ କାର୍ଯ୍ୟରେ ଯୋଗ ଦେଇ ପାରୁ ନଥିବା ବିଷୟ ସରକାରଙ୍କ ଦୃଷ୍ଟିକୁ ଆସିଛି । ଏହାକୁ ବିଚାରକୁ ନେଇ ଏଣିକି ଖାଲି ହେଉଥିବା ସରକାରୀ ବାସଗୃହର ୩୦ ଶତାଂଶ ଯୋଗ୍ୟ ବିବେଚିତ ସରକାରୀ ମହିଳା କର୍ମଚାରୀମାନଙ୍କ ପାଇଁ ସଂରକ୍ଷିତ ରଖିବାକୁ ନିଷ୍ପତ୍ତି ହୋଇଛି ।

## ଡିସେମ୍ବର ସୁଦ୍ଧା ଜବାହର ରୋଜଗାର ଯୋଜନାରେ ୨୬୦୨୧ ଲକ୍ଷ ଶ୍ରମ ଦିବସ ସୃଷ୍ଟି

ଚଳିତ ଆର୍ଥିକ ବର୍ଷରେ ଗତ ଡିସେମ୍ବର ମାସ ଶେଷ ସୁଦ୍ଧା ଜବାହର ରୋଜଗାର ଯୋଜନାରେ ରାଜ୍ୟରେ ୧୦୯ କୋଟି ୪ ଲକ୍ଷ ୨୦ ହଜାର ଟଙ୍କା ବିନିଯୋଗ କରାଯାଇ ସର୍ବମୋଟ୍ ୨ କୋଟି ୬୦ ଲକ୍ଷ ୨୧ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇ ପାରିଛି । ଏହି ଅର୍ଥ ମଧ୍ୟରେ ଖାଦ୍ୟଶସ୍ୟ ସମେତ ଶ୍ରମିକମାନଙ୍କ ମଜୁରୀ ବାବଦରେ ବ୍ୟୟ ହୋଇଥିବା ୬,୬୪୯·୬୩ ଲକ୍ଷ ଟଙ୍କା ଓ ଅଣ–ମଜୁରୀ ବାବଦରେ ବ୍ୟୟ ହୋଇଥିବା ୪,୨୫୪·୫୭ ଲକ୍ଷ ଟଙ୍କା ଅନ୍ତର୍ଭୁକ୍ତ । ଏହି ଯୋଜନାରେ କେବଳ ଗତ ଡିସେମ୍ବର ମାସରେ ଖାଦ୍ୟଶସ୍ୟ ସମେତ ମଜୁରୀ ବାବଦରେ ୧,୬୯୫·୧୨ ଲକ୍ଷ ଟଙ୍କା ଏବଂ ଅଣ–ମଜୁରୀ ବାବଦରେ ୧,୦୫୬·୩୫ ଟଙ୍କା, ଏପରି ମୋଟ୍ ୨,୭୫୧·୪୭ ଲକ୍ଷ ଟଙ୍କା ବ୍ୟୟ କରାଯାଇଛି ।

ଏହି ଯୋଜନାରେ ଗତ ଡିସେମ୍ବର ସୁଦ୍ଧା ୨୬୦·୨୧ ଲକ୍ଷ ଶ୍ରମ ଦିବସ ମଧ୍ୟରେ ହରିଜନ ଶ୍ରମିକଙ୍କ ଦ୍ୱାରା ୭୯·୫୪ ଲକ୍ଷ ଓ ଆଦିବାସୀ ଶ୍ରମିକଙ୍କ ଦ୍ୱାରା ସୃଷ୍ଟି ୧୦୬·୪୮ ଲକ୍ଷ ଶ୍ରମ ଦିବସ ଅନ୍ତର୍ଭୁକ୍ତ । ଏହାଦ୍ୱାରା ୪୫·୬୦ ଲକ୍ଷ ଭୂମିହୀନ ଶ୍ରମିକ ଓ ୬୪·୬୩ ଲକ୍ଷ ମହିଳା ଶ୍ରମିକ ଉପକୃତ ହୋଇପାରିଛନ୍ତି । ଏହି ଯୋଜନାରେ କେବଳ ଗତ ଡିସେମ୍ବର ମାସରେ ଆଦିବାସୀ ଶ୍ରମିକଙ୍କ ନିମନ୍ତେ ୨୬·୩୦ ଲକ୍ଷ ଓ ହରିଜନ ଶ୍ରମିକଙ୍କ ନିମନ୍ତେ ୧୮·୯୮ ଲକ୍ଷ ଶ୍ରମ ଦିବସ ସମେତ ମୋଟ୍ ୬୮·୦୮ ଲକ୍ଷ ଶ୍ରମ ଦିବସ ସୃଷ୍ଟି କରାଯାଇ ପାରିଛି । ଏହାଦ୍ୱାରା ଉକ୍ତ ମାସରେ ୧୬·୫୭ ଲକ୍ଷ ମହିଳା ଶ୍ରମିକ ଓ ୮·୨୯ ଲକ୍ଷ ଭୂମିହୀନ ଶ୍ରମିକ ଉପକୃତ ହୋଇପାରିଛନ୍ତି ।

ଏହି ଯୋଜନାରେ ଗତ ଡିସେମ୍ବର ମାସ ସୁଦ୍ଧା ଶ୍ରମିକମାନଙ୍କୁ ସେମାନଙ୍କର ମଜୁରୀ ବାବଦରେ ୫୬୯·୬୩ ଲକ୍ଷ ଟଙ୍କା ମୂଲ୍ୟର ୧୪,୯୩୭·୩୧ ମେଟ୍ରିକ୍ ଟନ୍ ଖାଦ୍ୟଶସ୍ୟ ଯୋଗାଇ ଦିଆଯାଇଛି । ସେଥିମଧ୍ୟରେ ୧୯୪·୩୮ ଲକ୍ଷ ଟଙ୍କା ମୂଲ୍ୟର ୬,୨୦୧·୨୮ ମେଟ୍ରିକ୍ ଟନ୍ ଗହମ ଓ ୩୭୫·୧୫ ଟଙ୍କା ମୂଲ୍ୟର ୮,୭୩୬·୦୩ ମେଟ୍ରିକ୍ ଟନ୍ ଚାଉଳ ଅନ୍ତର୍ଭୁକ୍ତ । କେବଳ ଗତ ଡିସେମ୍ବର ମାସରେ ୬୪·୨୦ ଲକ୍ଷ ଟଙ୍କା ମୂଲ୍ୟର ୨,୩୩୮·୧୫ ମେଟ୍ରିକ୍ ଟନ୍ ଗହମ ଓ ୧୦୮·୮୪ ଲକ୍ଷ ଟଙ୍କା ମୂଲ୍ୟର ୨,୫୭୬·୯୬ ମେଟ୍ରିକ୍ ଟନ୍ ଚାଉଳ ଶ୍ରମିକମାନଙ୍କୁ ମଜୁରୀ ବାବଦରେ ଯୋଗାଇ ଦିଆଯାଇଛି ବୋଲି ପଞ୍ଚାୟତିରାଜ ବିଭାଗ ସୂତ୍ରରୁ ଜଣାଯାଇଛି ।

## ଭୂମିହୀନଙ୍କୁ ସିଲିଂ ବହିର୍ଭୁତ ଜମି ବଣ୍ଟନ

କିଂଶସୂତ୍ରୀ ଅନ୍ତର୍ଭୁକ୍ତ ଭୂମିହୀନଙ୍କୁ ସିଲିଂ ବହିର୍ଭୁତ ଜମିବଣ୍ଟନ କାର୍ଯ୍ୟକ୍ରମରେ ଚଳିତ ଆର୍ଥିକ ବର୍ଷରେ ୨,୬୯୦ ଏକର ସିଲିଂ ବହିର୍ଭୁତ ଜମି ବଣ୍ଟନ କରାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବା ସ୍ଥଳେ ଗତ ଡିସେମ୍ବର ମାସ ସୁଦ୍ଧା, ଅର୍ଥାତ୍ ନଅମାସ ମଧ୍ୟରେ ୧,୭୪୧.୮୭୪ ଏକର ଜମି ଭୂମିହୀନଙ୍କ ମଧ୍ୟରେ ବଣ୍ଟନ କରାଯାଇ ଧାର୍ଯ୍ୟ ଲକ୍ଷ୍ୟର ଶତକଡା ୬୪.୭୫ ଭାଗ ସଫଳତା ହାସଲ କରାଯାଇ ପାରିଛି।

ଏହି କାର୍ଯ୍ୟକ୍ରମରେ କେବଳ ଗତ ଡିସେମ୍ବର ମାସରେ ବଣ୍ଟନ କରାଯାଇଥିବା ୧୨୬.୭୦ ଏକର ସିଲିଂ ବହିର୍ଭୁତ ଜମି ତନ୍ମଧ୍ୟରେ ଅନ୍ତର୍ଭୁକ୍ତ ବୋଲି ଯୋଜନା ଓ ସମନ୍ୱୟ ବିଭାଗ ସୂତ୍ରରୁ ଜଣାଯାଇଛି।

## ଆଇ:ଆର୍:ଡି:ପି:ରେ ୫୩,୬୬୨ଟି ପରିବାର ଉପକୃତ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ସମନ୍ୱିତ ଗ୍ରାମ୍ୟ ଉନ୍ନୟନ କାର୍ଯ୍ୟକ୍ରମ (ଆଇ:ଆର୍:ଡି:ପି:)ରେ ଚଳିତ ଆର୍ଥିକ ବର୍ଷରେ ଗତ ଡିସେମ୍ବର ମାସ ଶେଷ ସୁଦ୍ଧା ୫୩,୬୬୨ଟି ପରିବାର ଉପକୃତ ହୋଇପାରିଛନ୍ତି। ଏହି କାର୍ଯ୍ୟକ୍ରମରେ କେବଳ ଗତ ଡିସେମ୍ବର ମାସରେ ଉପକୃତ ହୋଇଥିବା ୧୧,୯୬୬ଟି ପରିବାର ତନ୍ମଧ୍ୟରେ ଅନ୍ତର୍ଭୁକ୍ତ ବୋଲି ଯୋଜନା ଓ ସମନ୍ୱୟ ବିଭାଗର କିଂଶସୂତ୍ରୀ କାର୍ଯ୍ୟକ୍ରମ ମାସିକ ଅଗ୍ରଗତି ବିବରଣୀରୁ ଜଣାଯାଇଛି।

## ଜବାହର ରୋଜଗାର ଯୋଜନାରେ ୨୭,୦୨୧ ହଜାର ଶ୍ରମ ଦିବସ ସୃଷ୍ଟି

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା ଜବାହର ରୋଜଗାର ଯୋଜନାରେ ଚଳିତ ଆର୍ଥିକ ବର୍ଷର ନଅମାସ ମଧ୍ୟରେ, ଅର୍ଥାତ୍ ଡିସେମ୍ବର ମାସ ଶେଷ ସୁଦ୍ଧା ୨୭,୦୨୧ ହଜାର ଶ୍ରମ ଦିବସ ସୃଷ୍ଟି କରାଯାଇ ଗରିବ ଲୋକମାନଙ୍କୁ ବିଭିନ୍ନ ପ୍ରକାର କାମଧନ୍ଦା ଯୋଗାଇ ଦିଆଯାଇ ପାରିଛି। ଏହି ଯୋଜନାରେ କେବଳ ଗତ ଡିସେମ୍ବର ମାସରେ ସୃଷ୍ଟି ହୋଇଥିବା ୬,୮୦୮ ହଜାର ଶ୍ରମ ଦିବସ ତନ୍ମଧ୍ୟରେ ଅନ୍ତର୍ଭୁକ୍ତ ବୋଲି ଯୋଜନା ଓ ସମନ୍ୱୟ ବିଭାଗର କିଂଶସୂତ୍ରୀ କାର୍ଯ୍ୟକ୍ରମ ମାସିକ ଅଗ୍ରଗତି ବିବରଣୀରୁ ଜଣାଯାଇଛି।

ସେହିପରି ଉକ୍ତ ସମୟ ମଧ୍ୟରେ ରାଜ୍ୟରେ ଗତ ଡିସେମ୍ବର ମାସରେ ପ୍ରତିଷ୍ଠିତ ୨୩୩ଟି କ୍ଷୁଦ୍ର ଶିଳ୍ପ ୟୁନିଟ୍‌କୁ ମିଶାଇ ଚଳିତ ଆର୍ଥିକ ବର୍ଷର ଗତ ଡିସେମ୍ବର ମାସ ସୁଦ୍ଧା ସର୍ବମୋଟ ୧,୦୦୨ଟି କ୍ଷୁଦ୍ର ଶିଳ୍ପ ୟୁନିଟ୍ ସ୍ଥାପନ କରାଯାଇଛି ବୋଲି ଉକ୍ତ ବିବରଣୀରୁ ପ୍ରକାଶ।

## ଗତ ଡିସେମ୍ବର ମାସରେ ଦୁର୍ନୀତି ନିବାରଣ ବିଭାଗ ଦ୍ୱାରା ୭ ଲକ୍ଷ ଟଙ୍କା ମୂଲ୍ୟର ସ୍ୱେରାକାଠ ଜବତ

ଗତ ଡିସେମ୍ବର ମାସରେ ଜଙ୍ଗଲ ବିଭାଗ ସହାୟତାରେ ରାଜ୍ୟ ଦୁର୍ନୀତି ନିବାରଣ ବିଭାଗ ଦ୍ୱାରା ୩୩ କୋଟି ମାମଲା ଧରାଯାଇ ୭ ଲକ୍ଷ ୧୩ ହଜାର ୧୬୨ ଟଙ୍କା ମୂଲ୍ୟର ସ୍ୱେରାକାଠ ଜବତ କରାଯାଇଛି ଏବଂ ୨୬ ଜଣଙ୍କ ବିରୁଦ୍ଧରେ ଜଙ୍ଗଲ ଆଇନରେ କାର୍ଯ୍ୟାନୁଷ୍ଠାନ କରାଯାଇଛି।

ଏହା ବ୍ୟତୀତ ଉକ୍ତ ମାସରେ ୧୦୫ଟି ମାପ ଓଜନ ଠକେଇ, ୨୬ଟି ଖାଦ୍ୟ ଅପମିଶ୍ରଣ ଏବଂ ୫୬ଟି ମଟର ଯାନ ଚଳାଚଳ ଓ ମଟରଟିକସ ଫାଙ୍କି ମାମଲା ଧରାଯାଇ ଏ ବାବଦରେ ୫୫,୨୧୦ ଟଙ୍କା ଜୋରିମାନା ଆଦାୟ ହୋଇଛି।

## ଜିଲ୍ଲାସ୍ତରରେ ଯକ୍ଷ୍ମା ନିବାରଣ ସଙ୍ଘ ଗଠନ କରାଯିବ ବୋଲି ରାଜ୍ୟ ଯକ୍ଷ୍ମା ନିବାରଣ ସଙ୍ଘ କାର୍ଯ୍ୟକାରୀ କମିଟି ଅଧିବେଶନରେ ନିଷ୍ପତ୍ତି

ସମ୍ପ୍ରତି ଫେବୃଆରୀ ଏକ ତାରିଖ ଦିନ ସଚିବାଳୟଠାରେ ସ୍ୱାସ୍ଥ୍ୟମନ୍ତ୍ରୀ ସୟଦ୍ ମୁସ୍ତାଫିଜ୍ ଅହମଦ୍ ସଭାପତିତ୍ୱରେ ରାଜ୍ୟ ଯକ୍ଷ୍ମା ନିବାରଣ ସଙ୍ଘ କାର୍ଯ୍ୟକାରୀ କମିଟିର ଅଧିବେଶନ ଅନୁଷ୍ଠିତ ହୋଇ ଯକ୍ଷ୍ମା ନିବାରଣ ପାଇଁ ସମସ୍ତ ପ୍ରକାର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ନିମନ୍ତେ ପ୍ରତ୍ୟେକ ଜିଲ୍ଲାରେ ଯକ୍ଷ୍ମା ନିବାରଣ ସଙ୍ଘ ଗଠନ କରିବାକୁ ନିଷ୍ପତ୍ତି ନିଆଯାଇଛି। ଏହା ବ୍ୟତୀତ ଯେଉଁ ଜିଲ୍ଲା ସ୍ୱାସ୍ଥ୍ୟ ଅଧିକାରୀ (ସି:ଡି:ଏମ୍:ଓ:) ସଙ୍ଘ ପାଇଁ ଅଧିକ ସଂଖ୍ୟକ ଆଜୀବନ ସଭ୍ୟ ସଂଗ୍ରହ କରିବେ, ରାଜଭବନରେ ଆୟୋଜିତ ଉତ୍ସବରେ ସେମାନଙ୍କୁ ପ୍ରାଦେଶିକ ସ୍ୱାସ୍ଥ୍ୟ ବାର୍ଷିକ ପୁରସ୍କାର ଓ କ୍ରମାନ୍ୱୟରେ ୩ଟି ସ୍ୱତନ୍ତ୍ର ପୁରସ୍କାର ପ୍ରଦାନ କରାଯିବ ବୋଲି ଏଥିରେ ନିଷ୍ପତ୍ତି ହୋଇଛି।

ସେହିପରି ଚଳିତ ମାସ ୨୨ ତାରିଖଠାରୁ ୨୮ ତାରିଖ ପର୍ଯ୍ୟନ୍ତ ଯକ୍ଷ୍ମା ନିବାରଣ ସପ୍ତାହ ପାଳନ ଅବସରରେ ପ୍ରତ୍ୟେକ ଜିଲ୍ଲା ସଦର ମହକୁମା ମୁଖ୍ୟ ଚିକିତ୍ସାଳୟ ପରିସର ମଧ୍ୟରେ ଏକ ଯକ୍ଷ୍ମା ନିରାକରଣ କର୍ମଶାଳା ଆୟୋଜନ କରିବା ପାଇଁ ଏହି ଅଧିବେଶନରେ ସ୍ଥିର ହୋଇଛି। ଏହି କର୍ମଶାଳାକୁ ଜିଲ୍ଲାପାଳ ଉଦ୍‌ଘାଟନ କରିବା ସଙ୍ଗେ ସଙ୍ଗେ ବିଧାୟକ ଓ ପଞ୍ଚାୟତ ସମିତି ଅଧ୍ୟକ୍ଷ ପ୍ରଭୃତି ନିର୍ବାଚିତ ଲୋକ ପ୍ରତିନିଧି, ଜିଲ୍ଲା ସ୍କୁଲ ଇନ୍‌ସପେକ୍ଟର୍, ଡି: ଆଇ: ଏବଂ ସମସ୍ତ ହାଇସ୍କୁଲ ପ୍ରଧାନ ଶିକ୍ଷକଙ୍କ ପ୍ରତିନିଧି ଓ ଜିଲ୍ଲା ଅଧିକାରୀ ବା ଯକ୍ଷ୍ମା ବିଶେଷଜ୍ଞମାନେ ଏଥିରେ ଯୋଗ ଦେବେ। ଜିଲ୍ଲା ମୁଖ୍ୟ ଚିକିତ୍ସାଧିକାରୀ ଏହି କର୍ମଶାଳାର ଆବାହକ ରହିବେ। ଏଥିପାଇଁ ରାଜ୍ୟ ଯକ୍ଷ୍ମା ନିବାରଣ ସଙ୍ଘ ତରଫରୁ ପ୍ରତ୍ୟେକ ଜିଲ୍ଲାକୁ ଏକ ହଜାର ଟଙ୍କା ଲେଖାଏଁ ଅନୁଦାନ ଦିଆଯିବ। ଏହି କର୍ମଶାଳାରେ ଯକ୍ଷ୍ମା ଟିକଟ ବିକ୍ରି ଓ ଆଜୀବନ ସଭ୍ୟ ସଂଗ୍ରହ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ନିମନ୍ତେ ଏହି ଅଧିବେଶନରେ ନିଷ୍ପତ୍ତି ହୋଇଛି।

## ଶାରୀରିକ ଅକ୍ଷମ ଓ ବିକଳାଙ୍ଗ ବ୍ୟକ୍ତିଙ୍କ ନିମନ୍ତେ ଯାତ୍ରୀବାହୀ ବସ୍‌ରେ ରିହାତି ବ୍ୟବସ୍ଥା

ରାଜ୍ୟ ପରିବହନ ବିଭାଗ ଅଧିସୂଚନା ସଂ ୨୧୦୬୫ ଏବଂ ସଂ ୨୧୦୬୦ ୮-୧୨-୧୯୯୨ ଅନୁଯାୟୀ ଶାରୀରିକ

ଅକ୍ଷମ/ବିକଳାଙ୍ଗ ବ୍ୟକ୍ତିମାନଙ୍କୁ ପ୍ରତ୍ୟେକ ଷ୍ଟେଜ୍ କ୍ୟାରେଜ୍ ଯାତ୍ରୀବାହୀ ବସ୍‌ରେ ଯାତାୟାତ ରିହାତି ଦିଆଯିବ ବୋଲି ଓଡ଼ିଶା ସରକାର ନିଷ୍ପତ୍ତି କରିଥିଲେ । କିନ୍ତୁ କେତେକ ବସ୍‌ର କଣ୍ଡକ୍ଟର/କର୍ମଚାରୀ ସେମାନଙ୍କୁ ଆବଶ୍ୟକୀୟ ରିହାତି ଦେଉ ନାହାନ୍ତି ବୋଲି କେତେକ ଶାରୀରିକ ଅକ୍ଷମ ବ୍ୟକ୍ତି ରାଜ୍ୟ ପରିବହନ କମିଶନରଙ୍କ ନିକଟରେ ଅଭିଯୋଗ କରିଛନ୍ତି । ଫଳରେ ସେମାନେ ସରକାରଙ୍କର ଶାରୀରିକ ଅକ୍ଷମ/ବିକଳାଙ୍ଗ ବ୍ୟକ୍ତି ପୋଷିତ ସାହାଯ୍ୟ ସହାନୁଭୂତି କାର୍ଯ୍ୟକ୍ରମକୁ ବିଫଳ କରୁଛନ୍ତି । ଯଦି ଭବିଷ୍ୟତରେ ଏଭଳି କୌଣସି ଅଭିଯୋଗ ଏହି ପ୍ରାଧିକାରୀଙ୍କ ଦୃଷ୍ଟିକୁ ଆସେ ଏବଂ ଅନୁସନ୍ଧାନ ଦ୍ୱାରା ତାହା ପ୍ରମାଣିତ ହୁଏ, ତେବେ ସମ୍ପୃକ୍ତ ବସ୍ ମାଲିକ ଓ କଣ୍ଡକ୍ଟରଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ବୋଲି ସମ୍ପୃକ୍ତ ପ୍ରାଧିକାରୀଙ୍କ ପକ୍ଷରୁ ସତର୍କ କରାଇ ଦିଆଯାଇଛି ।

## ବାଙ୍କୀରେ ଚିନିକଳ ପ୍ରତିଷ୍ଠା ପାଇଁ ରାଜ୍ୟ ସରକାର ବିଜ୍ଞପ୍ତି ଜାରୀ କରିବେ

କଟକ ଜିଲ୍ଲାର ବାଙ୍କୀଠାରେ ଦୈନିକ ୨,୫୦୦ ଟନ୍ ଆଖୁ ପେଡ଼ିବା କ୍ଷମତା ବିଶିଷ୍ଟ ଏକ ଚିନି ଶିଳ୍ପ ପ୍ରତିଷ୍ଠା ପାଇଁ ଆଗ୍ରହୀ ଶିଳ୍ପଗୋଷ୍ଠୀ ମନୋନୟନ କରିବାକୁ ବିଜ୍ଞାପନ ଜାରୀ କରିବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ନିର୍ଦ୍ଦେଶ ପ୍ରଦାନ କରିଛନ୍ତି । ବିରିଡ଼ି ଓ ବାଙ୍କୀରେ ଚିନି କାରଖାନା ବସାଇବା ପାଇଁ କେନ୍ଦ୍ର ସରକାରଙ୍କ ଅନୁମତି ଲୋଡ଼ା ଯାଇଥିଲା । ମାତ୍ର କେନ୍ଦ୍ର ସରକାର ବାଙ୍କୀରେ ଏହି ଚିନିକଳ ବସାଇବା ପାଇଁ ଇପିକଲ୍‌କୁ ଅନୁମତି ପ୍ରଦାନ କରିଛନ୍ତି ।

ରାଜ୍ୟ ସରକାରଙ୍କ ଉଦ୍ୟମରେ ବର୍ତ୍ତମାନ ସହଯୋଗ କ୍ଷେତ୍ରରେ ରାଜ୍ୟରେ ଅନେକଗୁଡ଼ିଏ ଚିନିଶିଳ୍ପ ପ୍ରତିଷ୍ଠା କରାଯାଇଛି । ଢେଙ୍କାନାଳରେ ଶକ୍ତି ସୁଗାର୍ସ ଓ କଳାହାଣ୍ଡିର ଫ୍ରେଣ୍ଡସ୍ କଣ୍ଟିଆ ସୁଗାର୍ସ ଦ୍ୱାରା ସ୍ଥାପିତ ଚିନିକଳ କାର୍ଯ୍ୟକ୍ଷମ ହୋଇଥିଲାବେଳେ ନବରଙ୍ଗପୁରରେ ମୋହନ ବ୍ରିଓ୍ୱେରିଜ, ଭଦ୍ରକରେ ଧରଣୀ ସୁଗାର୍ସ, ବୌଦ୍ଧ ଓ ବଲାଙ୍ଗୀରରେ ପୋନି ସୁଗାର୍ସ ଓ ରଞ୍ଜନଗରରେ ଖୋଦେ ଇଣ୍ଡଷ୍ଟ୍ରିଜ୍ ଦ୍ୱାରା ଶିଳ୍ପମାନ ଗଢ଼ିଉଠୁଛି ।

## ଆତ୍ମ ବିଶ୍ୱାସ, ଆତ୍ମ ନିର୍ଭରଶୀଳତା ଓ କଠୋର ପରିଶ୍ରମ ଦ୍ୱାରା ହିଁ ଜାତିର ପ୍ରଗତି ସମ୍ଭବପର

ଆତ୍ମ ବିଶ୍ୱାସ, ଆତ୍ମ ନିର୍ଭରଶୀଳତା ଓ କଠୋର ପରିଶ୍ରମ ହିଁ ଦେଶ ତଥା ଜାତିକୁ ଉନ୍ନତି ପଥରେ ଆଗେଇ ନେବାରେ ସହାୟକ ହୋଇଥାଏ ବୋଲି ରାଜ୍ୟ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ ମତବ୍ୟକ୍ତ କରିଛନ୍ତି ।

ଗତ ଜାନୁଆରୀ ୨୯ ତାରିଖରେ ପଦ୍ମପୁର ସବ୍‌ଡିଭିଜନ୍ ଅନ୍ତର୍ଗତ ଭେଡ଼ିରିଆ ଆବାଦ୍ କ୍ଲବ୍‌ର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଶ୍ରୀ ଆଚାର୍ଯ୍ୟ କହିଲେ ଯେ ଲକ୍ଷ୍ୟହୀନ ଓ ଆଦର୍ଶହୀନ ଆତ୍ମ କେନ୍ଦ୍ରୀକ ଭାବନା ତଥା କାର୍ଯ୍ୟପନ୍ଥା ନିଜର ଓ ଦେଶର ପ୍ରଗତିରେ ଅନ୍ତରାୟ ହୋଇଥାଏ । ତେଣୁ ଏଭଳି ଭାବନା ଓ କାର୍ଯ୍ୟପନ୍ଥା ପରିହାର କରି ଦେଶ ଗଠନରେ ବ୍ରତୀ ହେବା ସଙ୍ଗେ ସଙ୍ଗେ ପରସ୍ପର ମଧ୍ୟରେ ଏକତା ଓ ସଦ୍‌ଭାବନା ବଜାୟ ରଖିବାକୁ ସେ ଯୁବ ସମାଜକୁ ଆହ୍ୱାନ ଦେଇଥିଲେ । ପଦ୍ମପୁର ଅଞ୍ଚଳର ସମସ୍ୟା ସମ୍ପର୍କରେ ଉଲ୍ଲେଖ କରି ଏହି ଅଞ୍ଚଳର ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ପାଇଁ ବିଗତ ବର୍ଷ ତୁଳନାରେ ଅଧିକ ଅର୍ଥର ବ୍ୟବସ୍ଥା କରାଯାଇଛି ବୋଲି ସେ କହିଥିଲେ । ଭେଡ଼ିରିଆ ଗ୍ରାମକୁ ପାଇପ୍ ଜଳ ଯୋଗାଣର ସମ୍ଭାବନା ସମ୍ପର୍କରେ ଆବଶ୍ୟକ ସର୍ଭେ କରାଯିବ ଏବଂ ପଦ୍ମପୁରଠାରୁ ଭେଡ଼ିରିଆ ପର୍ଯ୍ୟନ୍ତ ରାସ୍ତାର ଉନ୍ନତି ପାଇଁ ପାଣ୍ଠି ଯୋଗାଇ ଦିଆଯିବ ବୋଲି ଶ୍ରୀ ଆଚାର୍ଯ୍ୟ ପ୍ରକାଶ କରିଥିଲେ ।

ଏହାପରେ ମନ୍ତ୍ରୀ ଶ୍ରୀ ଆଚାର୍ଯ୍ୟ ଭେଡ଼ିରିଆଠାରେ ଏକ ହୋମିଓପାଥିକ୍ ଡାକ୍ତରଖାନା ଉଦ୍‌ଘାଟନ କରିଥିଲେ ଏବଂ ସନ୍ଧ୍ୟାରେ ପଦ୍ମପୁର ଟାଉନ୍ ହଲ୍‌ଠାରେ ପ୍ରଜାପିତା ବ୍ରହ୍ମାକୁମାରୀ ଈଶ୍ୱରୀୟ ବିଶ୍ୱବିଦ୍ୟାଳୟ ଦ୍ୱାରା ଆୟୋଜିତ ଏକ ଉତ୍ସବରେ ଯୋଗ ଦେଇ ବିଶ୍ୱ ସଦ୍‌ଭାବନା ସମ୍ପର୍କରେ ଉଦ୍‌ବୋଧନ ଦେଇଥିଲେ ।

ଏହି ସବୁ କାର୍ଯ୍ୟକ୍ରମରେ ପଦ୍ମପୁର ବିଧାୟକ ଶ୍ରୀ ବିଜୟ ରଞ୍ଜନ ସିଂ ବରିହା, ମେଲଛାମୁଣ୍ଡା ବିଧାୟକ ଡଃ ମୁରାରୀ ପ୍ରସାଦ ମିଶ୍ର ଓ ପଦ୍ମପୁର ବ୍ଲକ୍ ଅଧ୍ୟକ୍ଷା ଶ୍ରୀମତୀ ମେନକା ସୁନ୍ଦରୀ ମିଶ୍ର ପ୍ରମୁଖ ଯୋଗ ଦେଇ ଉଦ୍‌ବୋଧନ ଦେଇଥିଲେ ।

ଭେଡ଼ିରିଆଠାରେ ଗ୍ରାମବାସୀଙ୍କ ତରଫରୁ ମନ୍ତ୍ରୀ ଓ ବିଧାୟକମାନଙ୍କୁ ବିପୁଳ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା ।

## ରାଜ୍ୟରେ ଏକ ପଶୁ ସମ୍ପଦ ବିକାଶ ବିଶ୍ୱବିଦ୍ୟାଳୟ ସ୍ଥାପନ ଉପରେ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପାତ୍ରଙ୍କ ଗୁରୁତ୍ୱ ଆରୋପ

ପଶୁ ସମ୍ପଦର ବିକାଶ ଦିଗରେ ଭୁବନେଶ୍ୱରଠାରେ ଥିବା ଓଡ଼ିଶାର ଏକମାତ୍ର ପଶୁ ଚିକିତ୍ସା ମହାବିଦ୍ୟାଳୟ ଯଥେଷ୍ଟ ସହାୟକ ହେଇ ନଥିବାରୁ ପଶୁ ସମ୍ପଦର ଗୁରୁତ୍ୱ ଦୃଷ୍ଟିରୁ ରାଜ୍ୟରେ ଏକ ପଶୁ ସମ୍ପଦ ବିକାଶ ବିଶ୍ୱବିଦ୍ୟାଳୟ ସ୍ଥାପନ କରିବା ଉପରେ ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଗୁରୁତ୍ୱ ଆରୋପ କରିଛନ୍ତି ।

ଜାନୁଆରୀ ୨୯ ତାରିଖ ଦିନ ଭୁବନେଶ୍ୱରଠାରେ ଆୟୋଜିତ ଆନାଟୋମୀ ପ୍ରଫେସର ଓ ଶିକ୍ଷକମାନଙ୍କର ଏକ ତିନିଦିନିଆ ସର୍ବଭାରତୀୟ ସମ୍ମିଳନୀକୁ ଶ୍ରୀ ପାତ୍ର ଉଦ୍‌ଘାଟନ କରି କହିଲେ ଯେ ଓଡ଼ିଶାରେ ୭୦ ପ୍ରତିଶତ ଲୋକ କୃଷି ଓ ଗୋ-ସମ୍ପଦ ଉପରେ ନିର୍ଭର କରନ୍ତି । ତେଣୁ, ଗୋ-ପାଳନ ସହିତ ସାର ପ୍ରୟୋଗ ଓ ନୂତନ କୃଷି ପ୍ରଣାଳୀ ସମ୍ପର୍କରେ ଶିକ୍ଷା ଦେବା ପାଇଁ ସ୍କୁଲ ଓ କଲେଜ ସ୍ତରରେ ପାଠ୍ୟକ୍ରମ ପ୍ରଚଳନ ଉପରେ ଗୁରୁତ୍ୱ

ଦିଆଯାଉଛି । ଏହା ଫଳରେ କୃଷୀମାନେ ଏ ସମ୍ପର୍କରେ ବିଶେଷ ଭାବେ ଜାଣିପାରିବେ ଓ ଉତ୍ପାଦନ ବୃଦ୍ଧି ହୋଇପାରିବ । ଏଥିପାଇଁ ଏହି ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯିବାର ଯଥେଷ୍ଟ ଆବଶ୍ୟକତା ରହିଛି ବୋଲି ମନ୍ତ୍ରୀ ଶ୍ରୀ ପାତ୍ର ଜଣାଇଥିଲେ । ନିକଟରେ କୃଷି ଓ ବୈଷୟିକ ବିଦ୍ୟାଳୟ ପରିସର ମଧ୍ୟରେ ଏକ ଗୋ-ସମ୍ପଦ ବିଜ୍ଞାନ ମହାବିଦ୍ୟାଳୟ (ଡାଏରୀ ସାଇନ୍ସ କଲେଜ) ସ୍ଥାପନ କାର୍ଯ୍ୟକ୍ରମ ହାତକୁ ନିଆଯାଉଛି ବୋଲି ସୂଚନା ଦେଇ ଏହି ପାଠ୍ୟକ୍ରମ ପାଇଁ ଆଇ.ସି.ଏ.ଆର୍. ଜରିଆରେ ସହଯୋଗ ମିଳିପାରିବ ଏବଂ ଏହାଦ୍ୱାରା ରାଜ୍ୟର ନୂତନ ଦୁଗ୍ଧ ଶୀତଳୀକରଣ ପ୍ଲାଣ୍ଟ ଓ ଡାଏରୀ ପ୍ଲାଣ୍ଟଗୁଡ଼ିକୁ ବିଶେଷ ଭାବେ ଉପକୃତ ହୋଇପାରିବେ ବୋଲି ମନ୍ତ୍ରୀ ଶ୍ରୀ ପାତ୍ର ପ୍ରକାଶ କରିଥିଲେ ।

ଓଡ଼ିଶାରେ ପ୍ରଥମ ଥର ପାଇଁ ଆୟୋଜିତ ଏହି ସମ୍ମିଳନୀରେ ଭାରତର ବିଭିନ୍ନ ପ୍ରାନ୍ତରୁ ୨୦୦ ପ୍ରତିନିଧି ଯୋଗ ଦେଇଛନ୍ତି ।

ଏଥିରେ ଓଡ଼ିଶା ରାଜ୍ୟ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ କୁଳପତି ଶ୍ରୀ ଇଶ୍ୱର ଚନ୍ଦ୍ର ମହାପାତ୍ର ଓ ଭାରତୀୟ ଭେଟେରିନାରୀ କାଉନ୍ସିଲର ସଭାପତି ଶ୍ରୀ ସି. ଏନ୍. ସିଂ ପ୍ରମୁଖ ଯୋଗ ଦେଇଥିଲେ ।

## 'ଓଡ଼ିଶାରେ ଆଖୁ ଓ ଚିନି ଉତ୍ପାଦନ ଏବଂ ସାର ପ୍ରୟୋଗ' ସମ୍ପର୍କରେ ଆଲୋଚନାଚକ୍ର

ସମ୍ପ୍ରତି ଗତ ଜାନୁଆରୀ ୨୮ ତାରିଖ ଦିନ ସ୍ଥାନୀୟ ସ୍ୱସ୍ତୀ ହୋଟେଲଠାରେ ଭାରତୀୟ ପଟାସ୍ ଲିମିଟେଡ୍ ଆନୁକୂଲ୍ୟରେ ଆୟୋଜିତ "ଓଡ଼ିଶାର ଆଖୁ ଓ ଚିନି ଉତ୍ପାଦନ ଏବଂ ସାର ପ୍ରୟୋଗ" ଶୀର୍ଷକ ଏକ ଆଲୋଚନା ଚକ୍ରରେ ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର ଯୋଗ ଦେଇ କହିଲେ ଯେ ବର୍ତ୍ତମାନ ରାଜ୍ୟରେ ଚିନି ଉତ୍ପାଦନ ପାଇଁ ଦୈନିକ ୮.୨୦ ଲକ୍ଷ ମେଟ୍ରିକ୍ ଟନ୍ ଆଖୁ ପେଡ଼ା ଯାଉଛି । ଆସନ୍ତା ଦୁଇବର୍ଷ ମଧ୍ୟରେ ଦୈନିକ ୭୬ ଲକ୍ଷ ମେଟ୍ରିକ୍ ଟନ୍ ଆଖୁ ପେଡ଼ିବା ପାଇଁ ଲକ୍ଷ୍ୟ ରଖାଯାଇଛି । ରାଜ୍ୟରେ ବର୍ତ୍ତମାନ ଆସିକା, ବଡ଼ସାହି ଓ ନୟାଗଡ଼ ଚିନିକଳରୁ ଉତ୍ପାଦିତ ଚିନି ରାଜ୍ୟର ଚିନି ଚାହିଦାର ମାତ୍ର ଶତକଡ଼ା ୭ ଭାଗ ହେଉଥିବାରୁ ଏହାକୁ ୮ ଭାଗକୁ ବୃଦ୍ଧି କରିବା ପାଇଁ ପରିକଳ୍ପନା ରହିଛି । ଏଥିନିମନ୍ତେ ଢେଙ୍କାନାଳ, ଧର୍ମଗଡ଼, ଭଞ୍ଜନଗର, ବରଗଡ଼, ଭଦ୍ରକ ଓ ନବରଙ୍ଗପୁରଠାରେ ୨.୫୦ ଲକ୍ଷ ମେଟ୍ରିକ୍ ଟନ୍ କ୍ଷମତା ସମ୍ପନ୍ନ ଗୋଟିଏ ଲେଖାଏଁ ନୂତନ ଚିନିକଳ ପ୍ରତିଷ୍ଠା କରିବା ପାଇଁ ଲାଇସେନ୍ସ ମଞ୍ଜୁର କରାଯାଇଛି ଏବଂ ବାଙ୍କୀ, କିରିଡ଼ି, ପାରଳାଖେମୁଣ୍ଡି, ଦେଓଗଡ଼ ଓ ବଣାଇଠାରେ ପ୍ରତ୍ୟେକ ୨.୫୦ ଲକ୍ଷ ମେଟ୍ରିକ୍ ଟନ୍ କ୍ଷମତା ସମ୍ପନ୍ନ ୫ଟି ନୂତନ ଚିନିକଳ ପ୍ରତିଷ୍ଠା ପାଇଁ ଲାଇସେନ୍ସ ମଞ୍ଜୁର ନିମନ୍ତେ ଭାରତ ସରକାରଙ୍କର ବିଚାରାଧୀନ ଅଛି ବୋଲି ମନ୍ତ୍ରୀ ଶ୍ରୀ ପାତ୍ର ସୂଚନା ଦେଇଥିଲେ । ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡିଠାରେ ମଧ୍ୟ ଏକ ଚିନିକଳ ପ୍ରତିଷ୍ଠା ପାଇଁ ସର୍ଭେ କାର୍ଯ୍ୟ ଚାଲିଛି ବୋଲି ସେ ପ୍ରକାଶ କରି ଏହି ସମସ୍ତ ଚିନିକଳ କାର୍ଯ୍ୟକ୍ଷମ ହେଲେ ରାଜ୍ୟରେ ୭୬ ଲକ୍ଷ ମେଟ୍ରିକ୍ ଟନ୍ ଆଖୁ ପେଡ଼ାଯାଇ ଚିନି ଉତ୍ପାଦନ ହୋଇପାରିବ ଏବଂ ବର୍ତ୍ତମାନ ରାଜ୍ୟର ଚିନି ଚାହିଦା କେତେକାଂଶରେ ପୂରଣ ହୋଇପାରିବ ବୋଲି ଆଶା ପ୍ରକାଶ କରିଥିଲେ ।

ଏହି ଆଲୋଚନା ଚକ୍ରରେ ଓଡ଼ିଶାରେ ଚିନିକଳ ସ୍ଥାପନ ଓ ଚିନି ଉତ୍ପାଦନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଆଖୁ ଚାଷୀମାନଙ୍କୁ ପ୍ରୋତ୍ସାହନ ଯୋଗାଇ ଦେବା, ଆଖୁ ଉତ୍ପାଦନ ପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି ଓ ଜଳ ସମ୍ପଦର ସଦୁପଯୋଗ କରାଯିବା, ପଟାସ ସାର ପ୍ରୟୋଗ ଦ୍ୱାରା ଚାଷୀ କିପରି ଅଧିକ ଆଖୁ ଉତ୍ପାଦନ କରି ଲାଭବାନ ହେବେ, ସେ ସମ୍ପର୍କରେ ବିସ୍ତୃତ ଭାବେ ଆଲୋଚନା କରାଯାଇଥିଲା ।

ଏଥିରେ ଧରଣୀ ସୁଗାର୍ସର ମାଲିକ ଶ୍ରୀ ସି. ଜି. ପେରିଆସ୍ୱାମୀ, କୃଷି ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀ ଈଶ୍ୱର ଚନ୍ଦ୍ର ମହାପାତ୍ର, ଭାରତୀୟ ପଟାସ୍ ଲିମିଟେଡ୍‌ର ଶ୍ରୀ ଜି. ପି. ସୁନ୍ଦରସେନ୍ ଓ ଜର୍ମାନୀରେ ଅବସ୍ଥାପିତ ଶ୍ରୀ ଏ. ଅଭନ୍, ଗୋବିନ୍ଦ ବଲ୍ଲଭ ପନ୍ଥ ବିଶ୍ୱବିଦ୍ୟାଳୟର କୁଳପତି ଡଃ ମହାନ୍ତି, ସାର ଉତ୍ପାଦନକାରୀ ସଂସ୍ଥାର ଡଃ ଏନ୍. ମହାପାତ୍ର ଓ ଡଃ ଯାଜ୍ଞ ନରସିଂହଙ୍କ ସମେତ ବହୁ ଚିନିକଳ ମାଲିକ ଓ କୃଷି ବିଭାଗର ଅଫିସର ବୃନ୍ଦ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ବାଗ୍‌ଦା ଚିଙ୍ଗୁଡ଼ି ଚାଷ ଓ ଜାଆଁଳ ଉତ୍ପାଦନକୁ ଶିଳ୍ପରେ ପରିଗଣିତ କରିବାକୁ ଉଚ୍ଚସ୍ତରୀୟ ବୈଠକରେ ନିଷ୍ପତ୍ତି

ରାଜ୍ୟରେ ଚିଙ୍ଗୁଡ଼ି ଚାଷକୁ ଅଧିକ ପ୍ରୋତ୍ସାହନ ଦେଇ କିପରି ଉତ୍ପାଦନ ବୃଦ୍ଧି କରାଯାଇ ପାରିବ, ସେଥିପାଇଁ ଶିଳ୍ପ ବିଭାଗ ଚିଙ୍ଗୁଡ଼ି ଚାଷ ଓ ବାଗ୍‌ଦା ଜାଆଁଳ ଉତ୍ପାଦନକୁ ଏକ ଶିଳ୍ପ ହିସାବରେ ପରିଗଣିତ କରିବାକୁ ନିଷ୍ପତ୍ତି ହୋଇଛି ।

ସମ୍ପ୍ରତି ରାଜ୍ୟ ସଚିବାଳୟଠାରେ ମତ୍ସ୍ୟ ଓ ପଶୁ ସମ୍ପଦ ବିକାଶ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସୂର୍ଯ୍ୟ ନାରାୟଣ ପାତ୍ରଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏକ ଉଚ୍ଚସ୍ତରୀୟ ବୈଠକରେ ଏହି ନିଷ୍ପତ୍ତି ନିଆଯାଇଛି । ରାଜ୍ୟରେ ବାଗ୍‌ଦା ଚିଙ୍ଗୁଡ଼ି ଉତ୍ପାଦନ ତଥା ରପ୍ତାନୀ ବୃଦ୍ଧି କରିବା ଓ ଚିଙ୍ଗୁଡ଼ି ଚାଷ ନିମନ୍ତେ ଉପକୂଳବର୍ତ୍ତୀ ଜମିର ସଦୁପଯୋଗ କରିବା ସମ୍ପର୍କରେ ଏହି ବୈଠକରେ ଆଲୋଚନା କରାଯାଇଥିଲା । ସଘନ, ଅର୍ଦ୍ଧ-ସଘନ ଓ ବ୍ୟାପକ ଚାଷ ପ୍ରଣାଳୀ ମାଧ୍ୟମରେ ବର୍ତ୍ତମାନ ରାଜ୍ୟରୁ ୨୦୦ କୋଟି ଟଙ୍କାର ବାଗ୍‌ଦା ଚିଙ୍ଗୁଡ଼ି ବିଦେଶକୁ ରପ୍ତାନୀ କରାଯାଉଛି ବୋଲି ଆଲୋଚନା ବେଳେ ପ୍ରକାଶ ପାଇଥିଲା । ଏହି ଚାଷକୁ ଶିଳ୍ପ ହିସାବରେ ପରିଗଣିତ କରାଗଲେ ଅନ୍ୟ ଶିଳ୍ପକୁ ମିଳୁଥିବା ସୁବିଧା ସୁଯୋଗ ମଧ୍ୟ ଏହି ଚାଷ ପାଇଁ ମିଳିପାରିବ ବୋଲି ବୈଠକରେ ଆଶା ପ୍ରକାଶ ପାଇଥିଲା ।

ଏହି ସଘନ, ଅର୍ଦ୍ଧ-ସଘନ ଚିଙ୍ଗୁଡ଼ି ଚାଷର ଉନ୍ନତି ପାଇଁ ବାଣିଜ୍ୟିକ ବ୍ୟାଙ୍କ ଯଥା-ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ, ୟୁନାଇଟେଡ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ, ଓଡ଼ିଶା ରାଜ୍ୟ ଅର୍ଥ ନିଗମ ଓ

ନବାର୍ଡ଼ ପ୍ରଭୃତି ଅର୍ଥ ଲଗାଣକାରୀ ସଂସ୍ଥାମାନେ ଋଣ ଯୋଗାଣ ସମ୍ପର୍କରେ ଏହି ବୈଠକରେ ବିସ୍ତୃତ ଆଲୋଚନା କରାଯାଇଥିଲା । ଏହି ଅର୍ଥ ଲଗାଣକାରୀ ବ୍ୟାଙ୍କମାନେ ଋଣ ଯୋଗାଣ ଦେବାକୁ ନିଷ୍ପତ୍ତି ହୋଇଥିଲା । ଏହି ବ୍ୟାଙ୍କ ସଂସ୍ଥାମାନେ ସେମାନଙ୍କ ଅଧୀନସ୍ଥ ତଳ ସ୍ତରର ବ୍ୟାଙ୍କମାନଙ୍କୁ ଅନୁରୂପ ନିର୍ଦ୍ଦେଶ ଦେବେ ବୋଲି ବୈଠକରେ ସ୍ଥିର ହୋଇଥିଲା ।

ଏହା ବ୍ୟତୀତ ବ୍ୟାପକ ଅଞ୍ଚଳରେ ଚିଙ୍ଗୁଡ଼ି ଚାଷ ଓ ଉତ୍ପାଦନ ବୃଦ୍ଧି କରିବା ଲାଗି ଚାଷୀମାନଙ୍କୁ ଉନ୍ନତ ତାଲିମ ଦେବାର ବ୍ୟବସ୍ଥା କରିବାକୁ ଏହି ବୈଠକରେ ସ୍ଥିର ହୋଇଥିଲା । ଏହାଦ୍ୱାରା ରାଜ୍ୟରେ ଅଧିକ ଚାଷୀ ଚିଙ୍ଗୁଡ଼ି ଚାଷ କରିବାକୁ ଆଗ୍ରହ ପ୍ରକାଶ କରିବା ସଙ୍ଗେ ସଙ୍ଗେ ବିଦେଶକୁ ପ୍ରଚୁର ପରିମାଣରେ ଚିଙ୍ଗୁଡ଼ି ରପ୍ତାନୀ ହୋଇପାରିବ ଏବଂ ବୈଦେଶିକ ମୁଦ୍ରା ଅର୍ଜନ କରାଯାଇପାରିବ ବୋଲି ବୈଠକରେ ଆଶା ପ୍ରକାଶ ପାଇଥିଲା ।

ଏହି ବୈଠକରେ ମୁଖ୍ୟ ଶାସନ ସଚିବ ଶ୍ରୀ ରବି ନାରାୟଣ ସେନ, ଶିଳ୍ପ ବିଭାଗ ଶାସନ ସଚିବ, ମତ୍ସ୍ୟ ବିଭାଗ ଶାସନ ସଚିବ, ରାଜ୍ୟ ଅର୍ଥ ନିଗମର ପରିଚାଳନା ନିର୍ଦ୍ଦେଶକ, ଭାରତୀୟ ଷ୍ଟେଟ୍ ବ୍ୟାଙ୍କ, ୟୁନାଇଟେଡ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆ ଓ ନାବାର୍ଡ଼ର ଉଚ୍ଚ ପଦସ୍ଥ ଅଧିକାରୀ ବୃନ୍ଦ ରାଜ୍ୟ ମତ୍ସ୍ୟ ବିଭାଗ ନିର୍ଦ୍ଦେଶକ ଏବଂ ଅନ୍ୟାନ୍ୟ ସମ୍ପୃକ୍ତ ଉଚ୍ଚ ପଦସ୍ଥ ଅଧିକାରୀ ବୃନ୍ଦ ଯୋଗ ଦେଇଥିଲେ ।

## ଆତ୍ମ ନିଯୁକ୍ତି ସୁଯୋଗ ସୃଷ୍ଟି ଦ୍ୱାରା ବେକାରୀ ସମସ୍ୟା ଦୂର ହୋଇପାରିବ

ଆତ୍ମ ନିଯୁକ୍ତି ସୁଯୋଗ ସୃଷ୍ଟି ଦ୍ୱାରା ବେକାରୀ ସମସ୍ୟା ଦୂର ହୋଇପାରିବ ବୋଲି ଆଶା ପ୍ରକାଶ କରି ଏହି ଯୋଜନାର ସୁଫଳ ସବୁ ଶ୍ରେଣୀର ଲୋକେ ପାଇବା ନିମନ୍ତେ ଯୋଜନାଭୁକ୍ତ ସମ୍ପୃକ୍ତ ହିତାଧିକାରୀଙ୍କ ନାମ କର୍ମ ନିଯୋଜନ ସଂସ୍ଥା ଦ୍ୱାରା ରେଜିଷ୍ଟ୍ରିଭୁକ୍ତ କରିବା ସଙ୍ଗେ ସଙ୍ଗେ ଏଥିପାଇଁ ଗଠିତ ହିତାଧିକାରୀ ତାଲିକା ପ୍ରସ୍ତୁତି କମିଟିରେ ସ୍ଥାନୀୟ କର୍ମ ନିଯୋଜନ ଅଧିକାରୀଙ୍କୁ ସଭ୍ୟ ରଖିବା ପାଇଁ ଶ୍ରମ ଓ ନିଯୋଜନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ସାମଲ ପରାମର୍ଶ ଦେଇଛନ୍ତି ।

ସମ୍ପ୍ରତି ସଚିବାଳୟଠାରେ ପାର୍ଲିଆମେଣ୍ଟ ଓ ବିଧାନ ସଭା ସଦସ୍ୟମାନଙ୍କୁ ନେଇ ଗଠିତ ଶ୍ରମ ଓ ନିଯୋଜନ ବିଭାଗର ଅଣସରକାରୀ ପରାମର୍ଶଦାତା କମିଟି ବୈଠକରେ ଅଧ୍ୟକ୍ଷତା କରି ଶ୍ରୀ ସାମଲ ପୂର୍ବ ବର୍ଷମାନଙ୍କ ତୁଳନାରେ ଗତ ବର୍ଷ ଶ୍ରମ ଓ ନିଯୋଜନ ବିଭାଗ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମ ସନ୍ତୋଷଜନକ ହୋଇପାରିଛି ବୋଲି ମତ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଏହି କାର୍ଯ୍ୟକ୍ରମକୁ ଅଧିକ ତ୍ୱରାନ୍ୱିତ କରିବା ପାଇଁ ନିଷ୍ଠା ସହକାରେ ନିଜ ନିଜର କାର୍ଯ୍ୟ ସମ୍ପାଦନ କରିବାକୁ ପରାମର୍ଶ ଦେଇଥିଲେ । ପ୍ରତି ବ୍ଲକ୍‌ରେ ଗ୍ରାମୀଣ ଶ୍ରମ ନିରୀକ୍ଷକ ନିଯୁକ୍ତି, କର୍ମଚାରୀ ରାଜ୍ୟ ବୀମା ଡାକ୍ତରଖାନାମାନଙ୍କରେ ଖାଲି ରହିଥିବା ଡାକ୍ତର ପଦବୀଗୁଡ଼ିକ ଆସନ୍ତା ଅପ୍ରେଲ ମାସ ପହିଲା ସୁଦ୍ଧା ପୂରଣ କରିବା ନିମନ୍ତେ ସେ ସମ୍ପୃକ୍ତ ବିଭାଗର ନିର୍ଦ୍ଦେଶକଙ୍କୁ ପରାମର୍ଶ ଦେଇଥିଲେ । ବିଭିନ୍ନ କଳକାରଖାନାଗୁଡ଼ିକରେ ଶ୍ରମିକମାନଙ୍କ ସୁରକ୍ଷା ନିମନ୍ତେ ଉପଯୁକ୍ତ ପଦକ୍ଷେପ ନିଆଯାଉଛି କି ନାହିଁ, ତାହା ନିୟମିତ ଭାବେ ତଦାରଖ କରିବାକୁ ମନ୍ତ୍ରୀ ଶ୍ରୀ ସାମଲ ସମ୍ପୃକ୍ତ ଅଧିକାରୀମାନଙ୍କୁ ପରାମର୍ଶ ଦେଇଥିଲେ ।

ଏହି ବୈଠକରେ ବଲାଙ୍ଗୀର ଓ କଳାହାଣ୍ଡି ଜିଲ୍ଲାର ବହୁ ଶ୍ରମିକ ଦାଦନ ଶ୍ରମିକ ଭାବେ ବାହାରକୁ ଚାଲାଣ ହେଉଥିବା ବିଷୟ କଣ୍ଟାବାଞ୍ଜି ବିଧାୟକ ଶ୍ରୀ ପ୍ରସନ୍ନ କୁମାର ପାଲ କମିଟିର ଦୃଷ୍ଟି ଆକର୍ଷଣ କରିଥିଲେ । ସମ୍ପୃକ୍ତ ଜିଲ୍ଲାପାଳ, ଏସ୍. ପି. ଓ ଶ୍ରମ ବିଭାଗର କର୍ମଚାରୀମାନଙ୍କର ମିଳିତ ଉଦ୍ୟମରେ ଏହାକୁ ରୋକିବା ଲାଗି ପଦକ୍ଷେପ ନେବା ପାଇଁ ମନ୍ତ୍ରୀ ଶ୍ରୀ ସାମଲ ଓ ନୀଳଗିରି ବିଧାୟକ ଶ୍ରୀ ଚିତ୍ତରଞ୍ଜନ ଷଡ଼ଙ୍ଗୀ ମତ ପ୍ରକାଶ କରିଥିଲେ ।

ବିଭାଗୀୟ ଶାସନ ସଚିବ ଶ୍ରୀ ଜିତେନ୍ଦ୍ରନାଥ ପୋଦାର ଏହି କମିଟି ବୈଠକର ଆଭିମୁଖ୍ୟ ସମ୍ପର୍କରେ ସୂଚନା ଦେଇଥିଲେ । ଗତ ନଭେମ୍ବର ମାସ ସୁଦ୍ଧା ରାଜ୍ୟରେ ୮ ଲକ୍ଷ ୭୫ ହଜାର ୫୦୭ ଜଣ ନିଯୁକ୍ତି ନିମନ୍ତେ ନାମ ରେଜିଷ୍ଟ୍ରି କରି ତାହା ମଧ୍ୟରୁ ୪,୯୮୪ ଜଣଙ୍କୁ ବିଭିନ୍ନ ସଂସ୍ଥାରେ ନିଯୁକ୍ତି ଦିଆଯାଇଥିବା ବିଷୟରେ ବୈଠକରେ ପ୍ରକାଶ ପାଇଥିଲା ।

ଏହି ବୈଠକରେ ଶ୍ରମ କଲ୍ୟାଣ ଓ ପ୍ରଶାସନ, ଧର୍ମଘଟ, ଶିଳ୍ପ ବିବାଦ, ଆନ୍ତଃରାଜ୍ୟ ପ୍ରବାସିକ ଶ୍ରମ ଆଇନ, ଠିକା ଶ୍ରମିକ ନିୟନ୍ତ୍ରଣ ଆଇନ, ବିଡ଼ି ଶ୍ରମିକ ଆଇନ, ମୋଟର ପରିବହନ ଆଇନ, ସର୍ବନିମ୍ନ ମଜୁରି ପ୍ରଦାନ ଆଇନ, ବିଭିନ୍ନ କଳକାରଖାନାଗୁଡ଼ିକର ରେଜିଷ୍ଟ୍ରିକରଣ ଓ ଏଥିରେ ଘଟୁଥିବା ଦୁର୍ଘଟଣା, କର୍ମଚାରୀ ରାଜ୍ୟ ବୀମା ଯୋଜନା ଦ୍ୱାରା କାର୍ଯ୍ୟକାରୀ ହେଉଥିବା ଯୋଜନା ଓ ବେକାର ଯୁବକ ଯୁବତୀମାନଙ୍କୁ ଆତ୍ମ ନିଯୁକ୍ତି ଦେବା ନିମନ୍ତେ ବୃତ୍ତିଗତ ମାର୍ଗ ପ୍ରଚଳନ ପ୍ରଭୃତି ବିଷୟରେ ଆଲୋଚନା କରାଯାଇଥିଲା ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ରାଜ୍ୟ ଶ୍ରମ କମିଶନର୍ ଶ୍ରୀ ବିନୟ ଭୂଷଣ ମିଶ୍ରଙ୍କ ସମେତ ସମ୍ପୃକ୍ତ ବିଭାଗୀୟ କର୍ମକର୍ତ୍ତାବୃନ୍ଦ ଯୋଗଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## କେଉଁଝରରେ ରାଜ୍ୟସ୍ତରୀୟ ସ୍କୁଲ୍ ଛାତ୍ରଛାତ୍ରୀଙ୍କ ବିଜ୍ଞାନ ପ୍ରଦର୍ଶନୀରେ ରାଜ୍ୟପାଳ

ଓଡ଼ିଶାର ରାଜ୍ୟପାଳ ଶ୍ରୀ ବି. ସତ୍ୟନାରାୟଣ ରେଡ୍ଡୀ ଗତ ଜାନୁଆରୀ ମାସ ୨୮ ତାରିଖ ଅପରାହ୍ନରେ କେଉଁଝରସ୍ଥିତ ଧରଣୀଧର ନାରାୟଣ ହାଇସ୍କୁଲ୍ ପ୍ରାଙ୍ଗଣରେ ଏକ ରାଜ୍ୟସ୍ତରୀୟ ବିଜ୍ଞାନ ମେଳା ଉଦ୍‌ଘାଟନ କରିଥିଲେ । ଏହି ପ୍ରଦର୍ଶନୀରେ ଓଡ଼ିଶାର ବିଭିନ୍ନ ସ୍କୁଲ୍ ମଣ୍ଡଳରୁ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ପ୍ରଦର୍ଶିତ ହୋଇଥିବା ଦର୍ଶନୀୟ ବସ୍ତୁ ...

ବିଜ୍ଞାନ ପ୍ରକଳ୍ପ ବୁଲି ଦେଖିଥିଲେ । ଏହି ଉପଲକ୍ଷେ ଆୟୋଜିତ ଉତ୍ସବରେ ଉଦ୍‌ବୋଧନ ଦେଇ ରାଜ୍ୟପାଳ କହିଥିଲେ ଯେ, ପ୍ରାଚୀନ କାଳରେ ମିଳୁଥିବା ପୁଷ୍ପକ ଯାନର ବର୍ଣ୍ଣନା ଓ ବିଭିନ୍ନ ଅସ୍ତ୍ର ବ୍ୟବହାରରୁ ଜଣାଯାଏ ଯେ ସେ ସମୟରେ ମଧ୍ୟ ଭାରତବର୍ଷର ଲୋକେ ବିଜ୍ଞାନରେ ଉତ୍କର୍ଷତା ଲାଭ କରିଥିଲେ । ତେଣୁ ଜର୍ମାନ୍ ବିଶ୍ୱବିଦ୍ୟାଳୟମାନଙ୍କରେ ପ୍ରାଚୀନ ଭାରତର ସଂସ୍କୃତ ଗ୍ରନ୍ଥ ସବୁ ଉପରେ ଗବେଷଣା କରାଯାଇ ବିଜ୍ଞାନ ସମ୍ପର୍କୀୟ ବହୁ ନୂତନ ତଥ୍ୟ ସେମାନେ ପାଇ ପାରୁଛନ୍ତି । କିନ୍ତୁ ଆମ ନିଜ ଦେଶରେ ସମ୍ପ୍ରତି ଏ ଦିଗରେ କାହାରି ଆଗ୍ରହ ନଥିବାରୁ ଆମେ ଆଜି ପଛରେ ପଡ଼ି ରହିଛୁ । ଏପରିକି ଛୋଟ ଛୋଟ ଦେଶ ମଧ୍ୟ ଆନ୍ତର୍ଜାତିକ କ୍ରୀଡ଼ା କ୍ଷେତ୍ରରେ ଆମ ଦେଶର ଖେଳାଳୀମାନଙ୍କଠାରୁ ଉଚ୍ଚ ମାନର କ୍ରୀଡ଼ା ନୈପୁଣ୍ୟ ପ୍ରଦର୍ଶନ କରିପାରିଛନ୍ତି । ରାଜ୍ୟପାଳ ଶ୍ରୀ ସେଠୀ ଆହୁରି କହିଥିଲେ ଯେ, ବିଦ୍ୟା ମନ୍ଦିରଗୁଡ଼ିକରୁ ଯେପରି ସୁନାଗରିକ ବାହାରିବେ ସେ ଦିଗରେ ଅଧ୍ୟାପକମାନଙ୍କର ଗୁରୁ ଦାୟିତ୍ୱ ରହିଛି ଏବଂ ସେହିପରି ଛାତ୍ରଛାତ୍ରୀମାନେ କଠୋର ପରିଶ୍ରମ ଓ ଅଧ୍ୟୟନ ଦ୍ୱାରା ଜଗଦୀଶଚନ୍ଦ୍ର ବୋଷ, ସି. ଭି. ରମଣ ଓ ରାମାନୁଜଙ୍କ ପରି ବିଶିଷ୍ଟ ବୈଜ୍ଞାନିକ ହୋଇପାରିବେ ବୋଲି ସେ କହିଥିଲେ । ଏହି ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ସ୍କୁଲ ଓ ଜନଶିକ୍ଷା ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ, ହସ୍ତ ଶିଳ୍ପ ଓ କୁଟୀର ଶିଳ୍ପ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଛୋଟରାୟ ମାଝୀ ଏବଂ S C E R T.ର ନିର୍ଦ୍ଦେଶକ ଡକ୍ଟର କେ. କେ. ଦାଶ ପ୍ରମୁଖ ଉଦ୍‌ବୋଧନ ଦେଇଥିଲେ । ଉତ୍ସବ ଶେଷରେ ଧନ୍ୟବାଦ ଅର୍ପଣ କରିଥିଲେ ଡି.ଏ. ହାଇସ୍କୁଲର ପ୍ରଧାନ ଶିକ୍ଷକ ।



ରାଇରଙ୍ଗପୁରଠାରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ସାଂସ୍କୃତିକ ଅନୁଷ୍ଠାନ ଗୃହକୁ ଉଦ୍‌ଘାଟନ କରୁଛନ୍ତି ।

OGP-MP-PTS (I&PR) 69-20,000-28-2-1994



ଓଡ଼ିଶା ବିଧାନ ସଭା ପରିସର ମଧ୍ୟରେ ଆୟୋଜିତ ଏକ ପ୍ରଦର୍ଶନୀକୁ ଲୋକସଭା ବାଚସ୍ପତି ଶ୍ରୀ ଶିବରାଜ ପାଟିଲ୍ ଉଦ୍‌ଘାଟନ କରୁଛନ୍ତି ।





ଭୁବନେଶ୍ୱରଠାରେ ଆୟୋଜିତ ଆନ୍ତର୍ଜାତୀୟ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଜୟନ୍ତୀ ଉତ୍ସବରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ବୈରାଗୀ ଜେନାଙ୍କ ଉଦ୍‌ବୋଧନ ।



ସର୍ବଭାରତୀୟ ବାରଷଠି ଅଧିବେଶନ ଅବସରରେ ଓଡ଼ିଶା ବିଧାନ ସଭା ଗୃହରେ ଆୟୋଜିତ ଏକ ଆଲୋଚନା ଚକ୍ରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅଭିଭାଷଣ ।




କଳିଙ୍ଗ ଅଶୋକା ହୋଟେଲଠାରେ ଆୟୋଜିତ "ସମସ୍ତଙ୍କ ପାଇଁ ଶିକ୍ଷା" ଶୀର୍ଷକ ଜାତୀୟସ୍ତରୀୟ ଆଲୋଚନା ଚକ୍ରରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଅଭିଭାଷଣ ।

Printed at Orissa Government Press, Cuttack-753010

